# ବିଜ୍ଞାନୀର ବିଶ୍ୱ

ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ପ୍ରକାଶକ : 

କଟକ - ୨

**ବିଜ୍ଞାନୀର ବିଶ୍ୱ** ।। ଲେଖକ : ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ ।। ପ୍ରକାଶକ: ଅଗ୍ରଦୂତ, ବାଙ୍କା ବଜାର, କଟକ - ୨ ।। ପ୍ରଥମ ପ୍ରକାଶ : ୨୦୦୦ ।। ଅକ୍ଷର ସଜ୍ଜା : କମ୍ପୋ କେୟାର, ଭରତିଆ ଟାୱାର୍‌ସ, କଟକ-୧୨ ।। ମୁଦ୍ରଣ: ସାଥୀ ଅଫ୍‌ସେଟ୍, କଟକ - ୨ ।।

ମୂଲ୍ୟ : ଟ. ୬୫/-

BIJNANIRA BISWA II Written by : Dr. Nityananda Swain II Published by : Agraduta, Bankabazar, Cuttack - 2 II First Edition : 2000 II DTP : Compo Care, Cuttack-12 II Printed by : Sathi Offset, Cuttack - 2 II

**Price : Rs. 65/-**

**ISBN81-86354-78-6**



ବିଜ୍ଞାନକୁ ଲୋକପ୍ରିୟ କରାଇବାରେ ଯଦ୍‌ରୋନାସ୍ତି ଅବଦାନ ଦେଇଥିବା ଓଡ଼ିଶା ବିଜ୍ଞାନ ପ୍ରଚାର ସମିତିର ସମସ୍ତ ସ୍ୱର୍ଗତ ଏବଂ ଅଧୁନା ଜୀବିତ ସଭ୍ୟଙ୍କ ପ୍ରତି କୃତଜ୍ଞତା ଅର୍ଘ୍ୟ ———

# ମୁଖବନ୍ଧ

ଗପ ଶୁଣିବା ପାଇଁ ସାନମାନଙ୍କଠାରୁ ବଡ଼ମାନଙ୍କ ଯାଏ ଉତ୍ସୁକ ଓ ଉତ୍କଣ୍ଠ । ସେଥିପାଇଁ ତ ପ୍ରତ୍ୟେକ ଅଞ୍ଚଳରେ ପ୍ରଚଳିତ ରହିଆସିଛି ଅନେକ ଲୋକକଥା । ଲୋକକଥାରେ ସ୍ଥାନ ପାଇଛନ୍ତି ଅସୁର ଅସୁରୁଣୀ, ଭୂତଭୂତୁଣୀ, ରାଜାରାଣୀ, ରାଜାପୁଅ ରାଜାଝିଅ ଆଦି କାଳ୍ପନିକ କିମ୍ବା ବାସ୍ତବ ଚରିତ୍ର ।

କିନ୍ତୁ 'ବିଜ୍ଞାନୀର ବିଶ୍ୱ' ଏକ ଭିନ୍ନ ସ୍ୱାଦର କଥାକୃତି । ଏଥିରେ ସନ୍ନିବେଶିତ କଥା ଗୁଡିକର କୁଶୀଲବ ହେଉଛନ୍ତି ବିଜ୍ଞାନୀ । ମାତ୍ର ସେମାଙ୍କର ବୈଜ୍ଞାନିକ କୃତି ଏହାର ବିଷୟବସ୍ତୁ ନୁହେଁ । ଏଥିରେ ବରଂ ସୂଚିତ ହୋଇଛି ସେମାନଙ୍କ ଚରିତ୍ରର କେତେକ ଅଜଣା ଦିଗନ୍ତ । ଆମ ସମସ୍ତଙ୍କ ପରି ବୈଜ୍ଞାନିକର ମଧ୍ୟ ରହିଛି ଏକ ନିଜସ୍ୱ 'ବିଶ୍ୱ' । ସାଧାରଣ ଦୃଷ୍ଟିରେ ତା' ବିଶ୍ୱରେ ସେ ଜଣେ ସଂସାରୀ । କିନ୍ତୁ ତା' ବିଶ୍ୱରେ ସେ କେବଳ ବିଜ୍ଞାନର ତତ୍ତ୍ୱ ଏବଂ ନିୟମର ଅଧୀନ ନୁହେଁ । ସେଠାରେ ସେ ଏକ ଜୀବନ୍ତ ସ୍ଥାପତ୍ୟ ।

ଏ' ପରିପ୍ରେକ୍ଷୀରେ ନୋବେଲ୍ ବିଜେତା ପିଟର୍ ମେଡାଓ୍ୱାର୍‌ଙ୍କର ଉକ୍ତି ପ୍ରଣିଧାନ ଯୋଗ୍ୟ । ସେ କହିଛନ୍ତି, ''ବୈଜ୍ଞାନିକମାନଙ୍କ ମଧ୍ୟରେ ଥାଆନ୍ତି ସଂଗ୍ରାହକ, ଶ୍ରେଣୀବିଭାଗକାରୀ, ଜବରଦସ୍ତିଆ; ସେମାନଙ୍କ ମଧ୍ୟରୁ କେତେକ ଗୋଇନ୍ଦା ସ୍ୱଭାବର ତ ଅନ୍ୟ କେହି ଅନୁସନ୍ଧାନ କ୍ରିୟାରେ ଧୁରନ୍ଧର; ଅନେକ ହେଉଛନ୍ତି ଶିଳ୍ପୀ ଏବଂ କେହି କେହି କାରିଗର । ବୈଜ୍ଞାନିକମାନଙ୍କ ଗୋଷ୍ଠୀରେ ରହିଛନ୍ତି 'କବି-ବୈଜ୍ଞାନିକ', ଏବଂ 'ଦାର୍ଶନିକ-ବୈଜ୍ଞାନିକ' । କେହି କେହି ମଧ୍ୟ ରହସ୍ୟବାଦୀ ..... । ତେଣୁ ଯେଉଁମାନେ ବାସ୍ତବରେ ବିଜ୍ଞାନୀ, ସେମାନେ ବିଜ୍ଞାନ ପରିବର୍ତ୍ତେ ଅନ୍ୟ ଯେ କୌଣସି କ୍ଷେତ୍ରରେ ମଧ୍ୟ ସମଧିକ ବ୍ୟୁତ୍ପତ୍ତି ପ୍ରାପ୍ତ ହୋଇପାରିଥାନ୍ତେ ।

''ଜଣେ ବୈଜ୍ଞାନିକ ବସ୍ତୁତଃ ମୁକ୍ତଭାବରେ କଳ୍ପନାପ୍ରବଣ ଏବଂ ଏକାଧାରରେ ସଂଦିଗ୍‌ଧମନା ମଧ୍ୟ । ସେ ସୃଜନଶୀଳ, ତଥାପି ସମାଲୋଚକ ଏବଂ ଛିଦ୍ରାନ୍ୱେଷୀ । ବେଳେବେଳେ ତାଙ୍କଠାରେ ପ୍ରକାଶପାଏ ଏକ ସ୍ୱାଧୀନ ତଥା ମୁକ୍ତ ଚିନ୍ତାଧାରା ତ ଅନ୍ୟ ସମୟରେ ତାଙ୍କର ଚିନ୍ତାଧାରାରେ ପରିସ୍ଫୁଟ ହୁଏ ଅନେକ ବିଭିନ୍ନତା ଏବଂ ରକ୍ଷଣଶୀଳତା । ବିଜ୍ଞାନରେ ପୁଣି କବିତାର ମଧ୍ୟ ସ୍ଥାନ ରହିଛି ।''

ଏହି ପୁସ୍ତକଟିରେ ସ୍ଥାନ ପାଇଛି ସେମାନଙ୍କର ଦୋଷଦୁର୍ବଳତା, ଚାରିତ୍ରିକ ମହନୀୟତା, ବ୍ୟଙ୍ଗ ଇତ୍ୟାଦି ସାଧାରଣ ମାନୁଷୀଗୁଣ । ଦୁଇଦୁଇଥର ନୋବେଲ୍ ପୁରସ୍କାରର ବିଜେତା ମ୍ୟାଡାମ୍ କ୍ୟୁରୀଙ୍କୁ ଚାକରାଣୀ ରୂପେ ଭ୍ରମରେ ପଡନ୍ତି ଜଣେ ସାମ୍ବାଦିକ ତ ରେଡିଅମ୍ ଉପହାରକୁ ନିଜ ସମ୍ପତ୍ତିରୂପେ ଗ୍ରହଣ ନ କରି ଗବେଷଣାଗାରର ସମ୍ପତ୍ତିରୂପେ

ଗ୍ରହଣ କରିବାକୁ ସର୍ତ୍ତବାଢନ୍ତି କ୍ୟୁରୀ । ଘାତକ ହାତରେ ହଣା ଖାଇବା ପୂର୍ବରୁ ବୃତ୍ତଅଙ୍କା କାମ ସାରିଦେବା ନିମନ୍ତେ ସମୟ ଟିକିଏ ପାଇଁ ଭିକ୍ଷା କରନ୍ତି ମହାନ୍ ବୈଜ୍ଞାନିକ ଗାଲିଲିଓ ।ଗବେଷଣାରେ ମଜ୍ଜି ରହି ବାହାହେବାକୁ ସମୟ ପାଆନ୍ତିନି ଜନ୍ ଡାଲ୍‌ଟନ୍ । ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନ୍‌ଷ୍ଟାନ୍ ସପ୍ତାହକୁ ୭୫ ସେଣ୍ଟ୍ ଫିସ୍ ନେଇ ଗଣିତ ଟିଉସନ୍ କରନ୍ତି ପଡିଶା ଘରର ଜଣେ ଡ୍ରାଇଭର୍‌ର ଲୁନିଝିଅକୁ । ପୁଣି ନିଜର ପ୍ରଥମ ସ୍ତ୍ରୀକୁ ଛାଡ଼ପତ୍ର ଦେବାପାଇଁ ତାଙ୍କଠାରେ ପ୍ରକାଶପାଏ ତୀବ୍ର ବ୍ୟାକୁଳତା । ପଲ୍ ଡିରାକ୍‌ଙ୍କୁ 'ଈଶ୍ୱର'ଙ୍କର ପ୍ରତିଭୂ ରୂପେ ବିବେଚନା କରନ୍ତି ତାଙ୍କର ଗବେଷକ ସହକର୍ମୀଗଣ । ବିଜ୍ଞାନରେ ସତ୍ୟତା ଆଚରଣରେ ନିଜର ଦୃଢନିଷ୍ଠତା ଯୋଗୁ ପାଉଲିଙ୍କୁ କୁହାଯାଏ ' ଈଶ୍ୱରଙ୍କର ଚାବୁକ ' ଏବଂ 'ବିଜ୍ଞାନର ଶ୍ରବଣେନ୍ଦ୍ରିୟ' । ସେହିପରି ସୁରକ୍ଷା କର୍ମଚାରୀଙ୍କୁ ବୋକା ବନେଇବାପାଇଁ ଚିଠିକୁ ଟିକି ଟିକି ଖଣ୍ଡକରି ଚିରି ତାଙ୍କ ନିକଟକୁ ପଠାଇବା ନିମନ୍ତେ ସ୍ତ୍ରୀଙ୍କୁ ନିର୍ଦ୍ଦେଶ ଦିଅନ୍ତି ଫାଇନ୍‌ମ୍ୟାନ୍ ।

କହିବାକୁ ଗଲେ ଏହି ସଙ୍କଳନଟି ହେଉଛି ବୈଜ୍ଞାନିକମାନଙ୍କ ସ୍ୱତନ୍ତ୍ର ଦୁନିଆସହ ଏକ ସମ୍ୟକ ପରିଚିତି, ସମ୍ୟକ ପରିଚିତି ସେମାନଙ୍କ ବ୍ୟକ୍ତିଗତ ବିଶ୍ୱ ସହ ।

ଖୁବ୍ ଗଭୀର ଭାବରେ ଦେଖିଲେ ବୈଜ୍ଞାନିକମାନେ ଅନ୍ୟମାନଙ୍କ ଭଳି ଜଣେ ଜଣେ ଏକକ ଚରିତ୍ର । କିନ୍ତୁ ସେମାନଙ୍କ ମୁଣ୍ଡରେ କି ଚିନ୍ତା ଖେଳୁଥାଏ, ତାହା କେବଳ ସେମାନଙ୍କୁ ହିଁ ଜଣା ।

ତେବେ ଡେରେକ୍ ପ୍ରାଇସ୍ ଥରେ କହିଥିଲେ, ''ଏକଦା ଜୀବିତ ଥିବା ବୈଜ୍ଞାନିକମାନଙ୍କ ମଧ୍ୟରୁ ୮୦ ରୁ ୯୦ ପ୍ରତିଶତ ଏବେ ମଧ୍ୟ ଜୀବିତ ।''

**'ବିଜ୍ଞାନୀର ବିଶ୍ୱ '** ପୁସ୍ତକଟି ସେମାନଙ୍କୁ ପୁନର୍ଜୀବିତ କରି ରଖିବାର ଏକ କ୍ଷୀଣ ପ୍ରୟାସ ।

ପୁସ୍ତକଟିର ପ୍ରକାଶନର ଦାୟିତ୍ୱ ବହନ କରିଥିବାରୁ ଶ୍ରୀମାନ୍ ମନ୍ମଥ ପଟ୍ଟନାୟକ ଏବଂ 'ଅଗ୍ରଦୂତ' ପ୍ରକାଶନ ସଂସ୍ଥାପ୍ରତି ମୁଁ ମୋର ଆନ୍ତରିକ କୃତଜ୍ଞତା ପ୍ରକାଶ କରୁଛି । ପୁସ୍ତକଟିର ପ୍ରଚ୍ଛଦପଟ ଅଙ୍କନ କରିଛନ୍ତି ଶ୍ରୀମାନ୍ ମାନସ ଜେନା, ମୋର ଧନ୍ୟବାଦାର୍ହ ।

**କଟକ** **ନିତ୍ୟାନନ୍ଦ ସ୍ୱାଇଁ**

**୫.୦୨.୨୦୦୦**

# ସୂଚୀ



# ସବୁଠାରୁ ଛୋଟ ଆତ୍ମଜୀବନୀ

ଆଲ୍‌ଫ୍ରେଡ୍ ନୋବେଲ ଉଦ୍‌ଭାବନ କରିଥିଲେ ଡିନାମାଇଟ୍ । ଡିନାମାଇଟ୍ ଏକ ବିସ୍ଫୋରକ ଦ୍ରବ୍ୟ । ଡିନାମାଇଟ୍ ବିକି ସେ ଅଜସ୍ର ଅର୍ଥ ଉପାର୍ଜନ କରିଥିଲେ । ସେହି ଅର୍ଥକୁ ସେ ଦାନ କରିଦେଇଥିଲେ ନୋବେଲ୍ ପୁରସ୍କାରର ବ୍ୟବସ୍ଥା କରିବା ନିମନ୍ତେ । ତେଣୁ ନୋବେଲ୍ ପୁରସ୍କାରର ପ୍ରତିଷ୍ଠାତା ହିସାବରେ ଆଲଫ୍ରେଡ଼ ନୋବେଲ୍ ବିଶ୍ୱବିଖ୍ୟାତ । ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ, ଶରୀର ବିଜ୍ଞାନ, ସାହିତ୍ୟ ଏବଂ ଶାନ୍ତି ସ୍ଥାପନ କ୍ଷେତ୍ରରେ ଯେଉଁ ନୋବେଲ ପୁରସ୍କାର ପ୍ରଦାନ କରାଯାଏ, ତାହାର ବ୍ୟବସ୍ଥା କରିଥିଲେ ନୋବେଲ୍ । ଅର୍ଥନୀତି ବିଜ୍ଞାନରେ ଦିଆଯାଉଥିବା ନୋବେଲ୍ ପୁରସ୍କାରର ବ୍ୟବସ୍ଥା କରିଥିଲେ ବ୍ୟାଙ୍କ୍ ଅଫ୍ ସୁଇଡେନ୍ । ଆଲ୍‌ଫ୍ରେଡ୍ ନୋବେଲ୍‌ଙ୍କ ସ୍ମୃତିରକ୍ଷା ଉଦ୍ଦେଶ୍ୟରେ ଅର୍ଥନୀତି ବିଜ୍ଞାନ ପୁରସ୍କାର ପ୍ରଦତ୍ତ ହୋଇଥାଏ ।

ନିଜର ଏକ ଆତ୍ମଜୀବନୀ ଲେଖିବା ନିମନ୍ତେ ବହୁବ୍ୟକ୍ତି ନୋବେଲ୍‌ଙ୍କୁ ବାଧ କରିଥିଲେ । କିନ୍ତୁ ସେ ପ୍ରଥମେ ଏଥିପାଇଁ ରାଜି ହେଲେନି । ସେ ଯୁକ୍ତି କଲେ ଯେ ତାଙ୍କ ବିଷୟରେ ଯାହାକିଛି ଲେଖିଲେବି ତାହା ଏକ ପୃଷ୍ଠାରୁ ଆଦୌ ବେଶୀ ହେବନି । ହେଲେ ଆତ୍ମଜୀବନୀ ଲେଖିବାପାଇଁ ତାଙ୍କ ଉପରେ ଅଧିକରୁ ଅଧିକ ଚାପ ପଡ଼ିଲା । ତେଣୁ ବାଧ ହୋଇ ସେ ଯେଉଁ ଆତ୍ମ ଜୀବନୀଟି ଲେଖିଥିଲେ, ତାହା ନିମ୍ନରେ ଦିଆଗଲା ।

ବର୍ଣ୍ଣନା - ବଡ଼ ଶୋଚନୀୟ ଅର୍ଦ୍ଧ-ପ୍ରାଣୀଟିଏ । ଭୂମିଷ୍ଠ ହେଲାବେଳକୁ ଡାକ୍ତର ତା'ର ତଣ୍ଟିଚିପି ମାରି ଦେଇଥିଲେ ଖୁବ୍ ଭଲ ହୋଇଥାଆନ୍ତା ।

କୃତିତ୍ୱ - ନଖଗୁଡ଼ିକୁ ସବୁବେଳେ ପରିଷ୍କାର ରଖିଥାଏ । ଅନ୍ୟମାନଙ୍କ ପାଇଁ ସେ କୌଣସି ସମସ୍ୟା ସୃଷ୍ଟି କରେନି ।

ଦୋଷ - ବାହା ହୋଇନି । ମଉଜିଆ ପ୍ରକୃତି । ପେଟ ଗୋଳମାଳ ହୁଏନି ।

ଏକମାତ୍ର ଗୁରୁତ୍ୱପୂର୍ଣ୍ଣ ଅନୁରୋଧ – ଜିଅନ୍ତା କବର ଦିଆଯିବନି । ବାସ୍ ଏତିକି ।

ଆତ୍ମ ଜୀବନୀ ଇତିହାସରେ ଆଲ୍‌ଫ୍ରେଡ୍ ନୋବେଲ୍‌ଙ୍କ ଆତ୍ମଜୀବନୀ କୁଆଡ଼େ ସବୁଠାରୁ ଛୋଟ ।

❑❑❑



# କଥା ଦେଇଛି ତ କଥା ରଖିବି

ସାର୍ ଥୋମାସ୍ ହକ୍ସ୍‌ଲେ ଜଣେ ଶଲ୍ୟ ଚିକିତ୍ସକ ଥିଲେ ମଧ୍ୟ ତାଙ୍କୁ ଊନବିଂଶ ଶତାବ୍ଦୀ ଜୀବବିଜ୍ଞାନର ଅନ୍ୟତମ ଜନକ ରୂପେ ସମ୍ମାନ ଦିଆଯାଏ । ସେ ଥିଲେ ଡ଼ାରଉଇନ୍‌ଙ୍କ ବିବର୍ତ୍ତନବାଦର ପ୍ରଧାନ ସମର୍ଥକ । ତାଙ୍କର ପୁତ୍ର ଥିଲେ ପ୍ରଖ୍ୟାତ ଐତିହାସିକ ଏବଂ ଜୀବନୀ ଲେଖକ ଲିଓନାର୍ଡ଼ ହକ୍ସ୍‌ଲେ । ବିଶିଷ୍ଟ ଜୀବବିଜ୍ଞାନୀ ଏବଂ ମାନବବାଦୀ ସାର୍ ଜୁଲିଆନ୍ ହକ୍ସ୍‌ଲେ ହେଉଛନ୍ତି ତାଙ୍କର ନାତି ।

ଅଷ୍ଟ୍ରେଲିଆର ଉତ୍ତରାଞ୍ଚଳ ସମ୍ବନ୍ଧରେ ସବିଶେଷ ତଥ୍ୟ ଆହରଣ କରିବା ନିମନ୍ତେ ବାହାରିଥିବା 'ରାଟ୍‌ଲ୍‌ସ୍ନେକ୍' ନାମକ ଜାହାଜରେ ଡାକ୍ତରରୂପେ ନିଯୁକ୍ତି ପାଇଲେ ହକ୍ସ୍‌ଲେ । ଅଷ୍ଟ୍ରେଲିଆରେ ଜାହାଜ ଅଟକିଥିଲା ବେଳେ ତାଙ୍କର ସାକ୍ଷାତ ହେଲା ଜଣେ ତରୁଣୀଙ୍କ ସହ । ତରୁଣୀ ଜଣକ ଥିଲେ ଅସାମାନ୍ୟା ସୁନ୍ଦରୀ । ଉଭୟ ପରସ୍ପରକୁ ଭଲ ପାଇ ବସିଲେ । କିନ୍ତୁ ହକ୍ସ୍‌ଲେ ସର୍ତ୍ତ ରଖିଲେ ଯେ ଜଣେ ବୈଜ୍ଞାନିକ ହିସାବରେ ପ୍ରତିଷ୍ଠା ଅର୍ଜନ ନ କରିବା ପର୍ଯ୍ୟନ୍ତ ସେ ତାଙ୍କୁ ବିବାହ କରିପାରିବେନି । ତରୁଣୀ ଜଣକ ମଧ୍ୟ ଏଥିରେ ରାଜି ହେଲେ ।

ଏକଥା ହକ୍ସ୍‌ଲେଙ୍କ ସାଙ୍ଗମାନଙ୍କ କାନରେ ପଡ଼ିଲା । ସେମାନେ ପରାମର୍ଶ ଦେଲେ ଯେ ତୁରନ୍ତ ପ୍ରଖ୍ୟାତ ହୋଇଉଠିବାର ଏକମାତ୍ର ପନ୍ଥା ହେଉଛି ନିଜ ଢୋଲ ନିଜେ ବଜେଇ ଚାଲିବା । ହକ୍ସ୍‌ଲେ ଥିଲେ ବଡ଼ ଲାଜକୁଳା । ସଭାସମିତିରେ ଭାଷଣ ଦେବାକୁ ତାଙ୍କୁ ଭାରି ଡର ମାଡୁଥିଲା ।

ତଥାପି ସାଥୀମାନଙ୍କ ପ୍ରରୋଚନାରେ ବ୍ରିଟିଶ୍ ଆସୋସିଏସନ୍ ଦ୍ୱାରା ଆୟୋଜିତ ହେଲା ବିଜ୍ଞାନ ଅଧିବେଶନ । ସେଥିରେ ଯୋଗ ଦେଲେ କେତେକ ବିଜ୍ଞବ୍ୟକ୍ତି । ସେମାନଙ୍କୁ ଆଗରୁ ଅନୁରୋଧ କରାଯାଇଥିଲା ଯେ ହକ୍ସ୍‌ଲେଙ୍କ ଭାଷଣ ମଝିରେ ସେମାନେ ପ୍ରଶଂସା ସୂଚକ ତାଳି ମାରିବେ ଓ 'ଚମତ୍କାର' 'ଚମତ୍କାର' ବୋଲି କହୁଥିବେ ଇତ୍ୟାଦି ।

ହକ୍ସ୍‌ଲେ 'ମହାସାଗରୀୟ ହାଇଡ୍ରୋଜୋଆ' ଶୀର୍ଷକ ତାଙ୍କର ଭାଷଣ ପ୍ରଦାନ କଲେ । ଭାଷଣ ଆଦୌ ହୃଦୟଗ୍ରାହୀ ହେଲାନି । ତଥାପି ଶ୍ରୋତାମାନେ ତାଙ୍କୁ ପ୍ରଶଂସା କରିବାରେ କୁଣ୍ଠିତ ହୋଇ ନ ଥିଲେ । ତାଙ୍କର ଏହି ଭାଷଣ ପ୍ରଦାନ ସଂକ୍ରାନ୍ତ ସମ୍ବାଦ 'ଲିଟେରାରୀ ଗେଜେଟ୍' ନାମକ ପତ୍ରିକାରେ ପ୍ରକାଶ ପାଇଲା । । ଖୁସି ହୋଇଗଲେ ହକ୍ସ୍‌ଲେ ।

ବିଖ୍ୟାତ ହେବା ପ୍ରକ୍ରିୟାରେ ଏହାହିଁ ଥିଲା ପ୍ରଥମ ପାବଛ । ପରେ ସେ ଇଉରୋପର ଜଣେ ଅଦ୍ୱିତୀୟ ବିଜ୍ଞାନୀରୂପେ ସମ୍ମାନିତ ହେଲେ । ବେଶ୍ ପ୍ରତିଷ୍ଠା ଅର୍ଜନ କଲେ । କିନ୍ତୁ ତାଙ୍କର ଏହି ସଫଳତାର ପଶ୍ଚାତ୍‌ରେ ଥିଲା ଅଷ୍ଟ୍ରେଲିଆରେ ସଂପର୍କ ସ୍ଥାପିତ ହୋଇଥିବା ପ୍ରେମିକା ହେନ୍‌ରିଏଟାଙ୍କର ପ୍ରେରଣା ।

ହେନରିଏଟାଙ୍କ ସହିତ ସାକ୍ଷାତ ଘଟିବାର ସାତବର୍ଷ ପରେ ହେଲା ସେମାନଙ୍କର ବିବାହ । ବିବାହ ଉଦ୍ଦେଶ୍ୟରେ ହେନ୍‌ରିଏଟା ଅଷ୍ଟ୍ରେଲିଆରୁ ଆସି ପହଞ୍ଚିଗଲେ ଲଣ୍ଡନରେ । ସେତେବେଳକୁ ତାଙ୍କର ସ୍ୱାସ୍ଥ୍ୟ ଯଥେଷ୍ଟ ଭାଙ୍ଗିପଡ଼ିଥାଏ । ସେ ଖୁବ୍ ଦୁର୍ବଳ ହୋଇ ପଡ଼ିଥାନ୍ତି ।

ସାଙ୍ଗେ ସାଙ୍ଗେ ହକ୍‌ସ୍‌ଲେ ତାଙ୍କୁ ଧରି ପହଞ୍ଚିଲେ ଜଣେ ନାମ୍‌ଜାଦା ଡାକ୍ତରଙ୍କ ପାଖରେ । ଡାକ୍ତର ହେନ୍‌ରିଏଟାଙ୍କୁ ପରୀକ୍ଷା କରି ମତ ଦେଲେ, ''ସ୍ୱାସ୍ଥ୍ୟାବସ୍ଥା ଅତି ଗୁରୁତର । ସେ ଛଅମାସରୁ ଅଧିକ କାଳ ବଞ୍ଚିବାର ଆଦୌ ଆଶାନାହିଁ ।''

ଏକଥା ଶୁଣି ହକ୍‌ସ୍‌ଲେ ଉତ୍ତର ହେଲେ, ''ହେନ୍‌ରିଏଟା ଛଅମାସ ବଞ୍ଚନ୍ତୁ କି ତା'ଠାରୁ କମ୍ ସମୟ ବଞ୍ଚନ୍ତୁ, ଆମେ ଦୁହେଁ ବିବାହ କରିବା ନିଶ୍ଚିତ । ଏଥିରେ ବ୍ୟତିକ୍ରମ ହେବନାହିଁ । କଥା ଦେଇଛି ତ କଥା ରଖିବି ।''

ତାହାହିଁ ହେଲା । ଉଭୟ ବିବାହ ବନ୍ଧନରେ ଆବଦ୍ଧ ହୋଇ ପଡ଼ିଲେ ।

ଡାର୍‌ଉଇନ୍‌ଙ୍କ ମତବାଦକୁ ସମର୍ଥନ କରୁଥିବାରୁ ହକ୍‌ସ୍‌ଲେ ଏବଂ ଚର୍ଚ୍ଚର ପାଦ୍ରୀମାନଙ୍କ ମଧ୍ୟରେ ମତାନ୍ତର ଲାଗିରହିଥିଲା । ୧୮୬୦ ମସିହାର କଥା । ବ୍ରିଟିଶ୍ ଆସୋସିଏସନ୍‌ର ଏକ ଅଧିବେଶନରେ ଅକ୍‌ସ୍‌ଫୋର୍ଡ୍‌ର ବିଶପ୍ ହକ୍‌ସ୍‌ଲେଙ୍କୁ ବ୍ୟଙ୍ଗକରି ପଚାରିଲେ, ''ହକ୍‌ସ୍‌ଲେ ମହାଶୟ, ଆପଣଙ୍କ ଅଜା କ'ଣ ତେବେ ଥିଲେ ଗୋଟିଏ ମାଙ୍କଡ଼ ?''

ଏଭଳି ଏକ ଅସ୍ୱସ୍ତିକର ପ୍ରଶ୍ନ ଶୁଣି ବ୍ୟସ୍ତ ହୋଇପଡ଼ିଲେ ଶ୍ରୋତାମାନେ । କିନ୍ତୁ ସାମାନ୍ୟତମ ବିଳମ୍ବ ନ କରି ହକ୍‌ସ୍‌ଲେ ଉତ୍ତର ଦେଲେ, ''ଗୋଟିଏ ମାଙ୍କଡ଼କୁ ମୋର ଅଜା ବୋଲି ପରିଚୟ ଦେବାରେ ମୁଁ ଆଦୌ ଲଜ୍ଜିତ ନୁହେଁ । ହେଲେ, ଅକ୍‌ସ୍‌ଫୋର୍ଡ୍‌ର ବିଶପ୍‌ଙ୍କଭଳି ଏକ ମାଙ୍କଡ଼ ଯଦି ମୋର ଅଜା ହୋଇଥାନ୍ତେ, ତେବେ ମୁଁ ଲାଜରେ ମୁଣ୍ଡଟେକି ପାରୁ ନ ଥାନ୍ତି ।''

ହକ୍‌ସଲେ ଏକଦା ମତ ଦେଇଥିଲେ''ପ୍ରାଣୀବିଜ୍ଞାନ ଶାଖାରେ ଗବେଷଣା କରିବା ଫଳରେ ଦୂର ସମ୍ପର୍କୀୟ ପ୍ରାଣୀମାନଙ୍କ ସହ ମୁଁ ଏପରି ଘନିଷ୍ଠ ହୋଇ ଉଠିଛି ଯେ ନିକଟ ସଂପର୍କୀୟ ପୂର୍ବପୁରୁଷଙ୍କ କଥା ଭାବିବା ପାଇଁ ମୋ ପାଖରେ ସମୟ ନାହିଁ ।''





# ନିଉଟନ୍‌ଙ୍କ ନମ୍ରତା

ବିଜ୍ଞାନ ଇତିହାସରେ ସାର୍ ଆଇଜାକ୍ ନିଉଟନ୍‌ଙ୍କୁ ଜଣେ ପ୍ରଖ୍ୟାତ ଦାର୍ଶନିକ ଏବଂ ବିଶିଷ୍ଟ ଚିନ୍ତାନାୟକରୂପେ ସ୍ୱୀକୃତି ମିଳିଛି । ତାଙ୍କର କୃତିତ୍ୱ ଗୁଡ଼ିକ ଥିଲା ମୌଳିକ । ସେ ଉଦ୍‌ଭାବନ କରିଥିଲେ ଗଣିତ ବିଜ୍ଞାନର କେଲ୍‌କୁଲ୍‌ସ୍ । ଗତିର ନିୟମ, ମାଧ୍ୟାକର୍ଷଣ ତତ୍ତ୍ୱ ଏବଂ ଆଲୋକ ତଥା ରଙ୍ଗ ସମ୍ବନ୍ଧୀୟ ତାଙ୍କର ବୈଜ୍ଞାନିକ ଅବଦାନ ପାଇଁ ସେ ଚିରସ୍ମରଣୀୟ ।

ନିଉଟନ୍ ଥିଲେ ଏକ ଅଭୂତପୂର୍ବ ପ୍ରତିଭା । କିନ୍ତୁ ତାଙ୍କର ଶୈଶବ ଥିଲା ଖୁବ୍ ଦୁଃଖମୟ । ୧୬୪୨ ମସିହାର ଖ୍ରୀଷ୍ଟମାସ୍ ଦିବସରେ ଜନ୍ମଗ୍ରହଣ କରିଥିଲେ ସେ । ଜନ୍ମ ହେବାର ଅଳ୍ପ କେତେ ମାସ ଆଗରୁ ତାଙ୍କର ପିତା ମରିସାରିଥିଲେ । ନିଉଟନ୍‌ଙ୍କ ପିତା ଥିଲେ ଜଣେ ଅପାଠୁଆ ଚାଷୀ ।

ଜନ୍ମବେଳକୁ ତାଙ୍କର ଓଜନ ଥିଲା ଖୁବ୍ କମ୍ । ତାଙ୍କୁ ତିନି ବର୍ଷ ବୟସ ହୋଇଥିବା ସମୟରେ ତାଙ୍କର ମାଆ ଆଉ ଜଣକୁ ବିବାହ କରି ଘରଛାଡ଼ିଲେ । ତେଣୁ ନିଉଟନ୍ ରହିଲେ ଆଈଙ୍କ ହେପାଜତରେ । ମାଆଙ୍କ ସ୍ନେହ ଶ୍ରଦ୍ଧା ପାଇଁ ସେ ସବୁବେଳେ ଝୁରି ହେଉଥିଲେ ମଧ୍ୟ ମାଆ କିମ୍ବା ସାବତ ବାପା କେହି ନିଉଟନ୍‌ଙ୍କ ଖବର ନେଉ ନ ଥିଲେ । ତେଣୁ ବଡ଼ ଦୁଃଖକଷ୍ଟ ଭିତରେ କଟିଥିଲା ତାଙ୍କର ପିଲାଦିନ ।

ତାଙ୍କ କିଶୋର ବୟସର କଥା । ସେତେବେଳେ ମାମୁଁଘରର ଚାକର ପ୍ରତି ସପ୍ତାହରେ ଥରେ ଲେଖାଏଁ ବଜାର ଯାଉଥିଲା ସଉଦା ଏବଂ ପରିବାପତ୍ର କିଣିବାପାଇଁ । କୌଣସି ନା କୌଣସି ଆଳ ଦେଖେଇ ନିଉଟନ୍ ମଧ୍ୟ ତା'ସାଙ୍ଗରେ ଯାଉଥିଲେ । କିନ୍ତୁ ବଜାରଠାରୁ ଅଳ୍ପ ଦୂରରେ ଅଟକି ଯାଉଥିଲେ ସେ । ସେ ଚାକରକୁ କହୁଥିଲେ, ''ତୁ' ବଜାର ଚାଲିଯା । ତୁ' ଫେରିଲାବେଳକୁ ମୁଁ ଏଇଠି ତତେ ଅପେକ୍ଷା କରିଥିବି । ପାଖ ବୁଦା ଢ଼ୁଆଳରେ ବସି ମୁଁ ବହି ପଢ଼ିବାରେ ଏହି ସମୟତକ କଟେଇଦେବି ।''

ସେ ସବୁସପ୍ତାହରେ ଚାକର ସାଙ୍ଗରେ ବଜାର ବାହାରି ଯାଉଥିବାର ଦେଖି ତାଙ୍କ ମାମୁଁଙ୍କ ମନରେ ସନ୍ଦେହ ଉଙ୍କି ମାରିଲା । ଦିନେ ସେ ଲୁଚି ଲୁଚି ନିଉଟନ୍‌ଙ୍କର ପିଛା କଲେ । ସେ ଦେଖିଲେ ଯେ ବୁଦା ଉହାଡ଼ରେ ଘାସ ଉପରେ ପେଟେଇ ପଡ଼ିଛନ୍ତି ନିଉଟନ୍ । ମନଧ୍ୟାନ

ଦେଇ ଅଙ୍କ କଷିଚାଲିଛନ୍ତି । ଆସ୍ତେ ଆସ୍ତେ ନିଉଟନ୍‌ଙ୍କ ପାଖକୁ ଚାଲିଯାଇ ମାମୁଁ ଅତି କୋମଳ ଭାବରେ କହିଲେ, ''ବାପା ଆଇଜାକ୍, ଘରକୁ ଫେରିଯା' । ଘରେ ବସି ଅଙ୍କ କଷିବୁ । ତୁ ଗୋଟିଏ ବାରବୁଲା କି ଜଣେ ଅତି ପ୍ରତିଭାବାନ୍ - ତାହା କେବଳ ଈଶ୍ୱରଙ୍କୁ ହିଁ ଜଣା ।''

ନିଉଟନ୍ ସବୁବେଳେ ଚିନ୍ତାରେ ବୁଡ଼ିରହିଥାନ୍ତି । ଦିନକର କଥା । ସେ ଯେଉଁ ସ୍ତ୍ରୀ ଲୋକଜଣଙ୍କୁ ଭଲ ପାଉଥିଲେ, ତାଙ୍କର ହାତଧରି ତାଙ୍କ ଆଖିଦୁଇଟିକୁ ଚାହିଁରହିଥାନ୍ତି ନିଉଟନ୍ । ପ୍ରେମିକାଙ୍କ ହାତ ଧରି ସିନା ଆଖିକୁ ଚାହିଁଥାନ୍ତି, ହେଲେ ମନ ବ୍ୟସ୍ତଥାଏ ବାଇନୋମିଆଲ୍ ଉପପାଦ୍ୟର ଭାବନାରେ । ଭାବନାରେ ମଜିରହି ସେ ପ୍ରେମିକାଙ୍କ ହାତର ଆଙ୍ଗୁଠିକୁ ଚୁରୁଟ୍ର ସଫାକରିବାର କାଠି ବୋଲି ଧରି ନେଇଥାନ୍ତି । ତେଣୁ ଆଙ୍ଗୁଠିକୁ ଧୀରେଧୀରେ ଭର୍ତ୍ତି କରିବାରେ ଲାଗିଥାନ୍ତି ଚୁରୁଟ୍‌ର ନଳୀଭିତରେ । ଆଙ୍ଗୁଠିକୁ ବେଶୀ ବେଶୀ ଠେଲିବାରୁ ସ୍ତ୍ରୀ ଲୋକ ଜଣକୁ ଯନ୍ତ୍ରଣା ହେଲା । ଯନ୍ତ୍ରଣାରେ ସେ ଚିତ୍କାର କରିବାରୁ ନିଉଟନ୍‌ଙ୍କର ହୋସ୍ ଆସିଲା । ବଡ଼ ଅପ୍ରତିଭ ହୋଇ ସେ ପ୍ରେମିକାଙ୍କ ପାଖରେ ଭୁଲ୍ ମାଗିଲେ । କହିଲେ ''ଏଇଟା ମୋର ଗୋଟିଏ ବିରାଟ ଦୋଷ । ଏଇ ଅନ୍ୟମନସ୍କ ରହିବା ଯୋଗୁ ହିଁ ମୋତେ ସାରାଜୀବନ ହୁଏତ ଅବିବାହିତ ରହିଯିବାକୁ ପଡ଼ିବ ।''

ରବର୍ଟ୍ ହୁକ୍ ଥାଆନ୍ତି ରୟାଲ୍ ସୋସାଇଟିର ଜଣେ କ୍ୟୁରେଟର୍ । ସେ ଥିଲେ ବେଶ୍ ନାମ୍‌ଜାଦା । କିନ୍ତୁ ହୁକ୍‌ଙ୍କ ସାଙ୍ଗରେ ନିଉଟନ୍‌ଙ୍କର ଜମା ଭଲ ପଡୁ ନ ଥିଲା । ସାମାନ୍ୟ କଥାରେ ବି କଳି କଜିଆରେ ମାତି ଯାଉଥିଲେ ସେମାନେ । କିନ୍ତୁ କୌତୂହଳର କଥା ଯେ ହୁକ୍‌ଙ୍କର ଏକ ଚିଠିରୁ ମାଧ୍ୟାକର୍ଷଣର ନିୟମ ଉପରେ ଗବେଷଣା କରିବା ନିମନ୍ତେ ନିଉଟନ୍ ସୁରାକ ପାଇଯାଇଥିଲେ । ତେଣୁ ମାଧ୍ୟାକର୍ଷଣ ନିୟମ ସଂକ୍ରାନ୍ତ ନିଉଟନ୍‌ଙ୍କ ଆବିଷ୍କାରରେ ଭାଗ ଦାବି କଲେ ରବର୍ଟ ହୁକ୍ । ଏଥିରେ ନିଉଟନ୍ ଏତେ ରାଗିଗଲେ ଯେ ତାଙ୍କ ରଚିତ 'ପ୍ରିନ୍‌ସିପିଆ' ପୁସ୍ତକର ତୃତୀୟ ଖଣ୍ଡଟିକୁ ପ୍ରକାଶ କରିବେନି ବୋଲି ଧମକ ଦେଇଦେଲେ । ପରେ ଅବଶ୍ୟ ପୁସ୍ତକଟିର ପ୍ରକାଶନ ପାଇଁ ସେ ସମ୍ମତି ଦେଇଥିଲେ । କିନ୍ତୁ ପାଣ୍ଡୁଲିପିରେ ଯେଉଁ ଯେଉଁ ବାକ୍ୟରେ ରବର୍ଟ ହୁକ୍‌ଙ୍କର ନାଁ ଉଲ୍ଲେଖ କରାଯାଇଥିଲା, ସେହି ନାଁକୁ ଜାଣି ଜାଣି ବାଦ୍ ଦେଇଦେଲେ । ହୁକ୍‌ଙ୍କ ପ୍ରତି ନିଜର ଘୃଣାଭାବ ଯୋଗୁ ସେ 'ଅପ୍‌ଟିକ୍‌ସ' ନାମକ ପୁସ୍ତକକୁ ପ୍ରକାଶ କଲେନି । ଇସ୍ତଫା ଦେଇଦେଲେ ରୟାଲ ସୋସାଇଟିରୁ । ୧୭୦୩ ମସିହାରେ ମୃତ୍ୟୁ ବରଣ କଲେ ରବର୍ଟ ହୁକ୍ । ତା' ପରେ ହିଁ ଅପ୍‌ଟିକ୍‌ସ ପ୍ରକାଶିତ ହେଲା ଓ ସେ ପୁନର୍ବାର ରୟାଲ୍ ସୋସାଇଟିରେ ଯୋଗ ଦେଲେ । ସେହି ସମୟରେ ବିଜ୍ଞାନକୁ ବଦ୍‌ନାମ କରିବାକୁ ଯାଇ ସେ କହିଥିଲେ,'' ବିଜ୍ଞାନ ହେଉଛି ଏକ ଅଭଦ୍ର, ଅଶାଳୀନ, ମକଦ୍ଦମାଖୋର୍ ମହିଳା ।''

ନିଉଟନ୍ କ୍ୟାମ୍ବ୍ରିଜ୍‌ରେ ପଢ଼ିବା ବେଳର ଘଟଣା । ସେ ଯେଉଁଘରେ ରହୁଥିଲେ, ସେହି ଘରର ମାଲିକାଣୀ ଦିନେ ନିଉଟନ୍‌ଙ୍କ ପାଖକୁ ଆସି ପଚାରିଲେ, ''ମାଛ ବିକାଳିଠାରୁ ମୁଁ ସାତଟି ମାଛ କିଣିଛି । ପ୍ରତି ମାଛର ଦାମ୍ ତିନି ପେନ୍‌ସ୍ । ମୁଁ ତାକୁ ମୋଟ କେତେ ପେନ୍‌ସ୍ ଦେବି ଟିକିଏ ହିସାବ କରି ଦିଅତ ! ।

ନିଉଟନ୍ ସାଙ୍ଗେ ସାଙ୍ଗେ ତାଙ୍କ ପଢ଼ା ଟେବୁଲ ପାଖକୁ ଚାଲିଗଲେ । 'ଲଗାରିଦମ୍' ଟେବୁଲକୁ ଅଣ୍ଡାଳି ଉତ୍ତର ଦେଲେ, ''ତିନି ପେନ୍‌ସ୍ ହିସାବରେ ସାତଟି ମାଛର ଦାମ୍ ୨୦ରୁ ୨୨ ପେନ୍‌ସ୍ ଭିତରେ ।''

''କିନ୍ତୁ ମାଛ ବିକାଳି କ'ଣ ୨୧ ପେନ୍‌ସ୍ ଦାବି କରୁଛି,'' ମାଲିକାଣୀ କହିଲେ ।

ନିଉଟନ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ''କ'ଣ ହେଲା ? ମାଛ ବିକାଳିଟି ତ ତେବେ ଜଣେ ବଡ଼ ଗଣିତଜ୍ଞ । ନୋହିଲେ ଏତେ ଚଞ୍ଚଳ ସେ ୨୧ ପେନ୍‌ସ୍ ବୋଲି ହିସାବ କରିଦେଇ ପାରିଥାନ୍ତେ କିପରି ?''

ବିଶ୍ୱ ସମ୍ବନ୍ଧରେ ନିଉଟନ୍ ଯେଉଁ ସବୁ ତଥ୍ୟର ଅବତାରଣା କରିଥିଲେ, ତାକୁ ବିଚାରକୁ ନେଇ କେହି କେହି ମତ ଦେଲେ ଯେ ନିଉଟନ୍ ପୃଥିବୀକୁ ନିର୍ଜୀବ ବୋଲି ପ୍ରମାଣ କରୁଛନ୍ତି । ଏ ସଂପର୍କରେ ନିଉଟନ୍‌ଙ୍କୁ ପଚାରିବାରୁ ସେ ଉତ୍ତର ଦେଇଥିଲେ, ''ଅନେକ ପ୍ରାକୃତିକ ନିୟମ ଦ୍ୱାରା ଏ ବିଶ୍ୱ ପରିଚାଳିତ । ପୁଣି ଉକ୍ତ ନିୟମଗୁଡ଼ିକରେ ରହିଛି ଅତି ବିସ୍ମୟକର ସଙ୍ଗତି । ତେଣୁ ଯିଏ ଏହି ସୁନ୍ଦର ବିଶ୍ୱକୁ ସୃଷ୍ଟି କରିଛନ୍ତି, ସେ ନିଶ୍ଚିତ ଭାବରେ ହିଁ ସର୍ବଜ୍ଞାନର ଅଧିକାରୀ ଏବଂ ଦିବ୍ୟସ୍ରଷ୍ଟାଙ୍କର କୁଶଳୀ ହାତର କାରିଗରି ଏଥିରେ ନିହିତ ।''

'ଦିବ୍ୟସ୍ରଷ୍ଟା କିଏ ଓ କ'ଣ ତାଙ୍କର ପରିଚୟ' ବୋଲି ପଚାରିବାରେ ନିଉଟନ୍ କିଛି ସମୟପାଇଁ ମୌନ ରହିଗଲେ । ତା' ପରେ କହିଲେ, ''ତାଙ୍କ ବିଷୟରେ ମୁଁ କୌଣସି ପରିକଳ୍ପନା କରିବାପାଇଁ ଯୋଗ୍ୟ ନୁହେଁ । ମୁଁ ଜଣେ ବୈଜ୍ଞାନିକ । ଈଶ୍ୱରବାଦ ବିଷୟରେ ଅନ୍ଦାଜ ଲଗେଇବା ମୁଁ ପସନ୍ଦ କରେନି । ମୁଁ ଈଶ୍ୱରଙ୍କ ସହ କାରବାର କରେନି । ମୋର କାରବାର ପର୍ଯ୍ୟବେକ୍ଷଣକ୍ଷମ ତାଙ୍କର ନିୟମଗୁଡ଼ିକ ସହ ।''

ମୃତ୍ୟୁ ବରଣ କରିବାର ଅଳ୍ପଦିନ ଆଗରୁ ନିଉଟନ୍ ମନ୍ତବ୍ୟ ଦେଇଥିଲେ, ''ମୋ ବିଷୟରେ ବିଶ୍ୱବାସୀ କେଉଁ ଧାରଣା ପୋଷଣ କରୁଛନ୍ତି, ତାହା ମୁଁ ଜାଣିନି । ବିଶ୍ୱ ମଧ ମୋ ବିଷୟରେ କେଉଁ ଧାରଣା ରଖିଛି, ତାହା ତାକୁ ଜଣା । କିନ୍ତୁ ମୋ ବିଚାରରେ ମୁଁ ହେଉଛି ଛୋଟ ପିଲାଟିଏ । ସମୁଦ୍ର ବେଳାରେ ବୁଲି ମନ ଆନନ୍ଦରେ ବଡ଼ ଛୋଟ ବାଲିଗରଡ଼ା କିମ୍ବା ରଙ୍ଗବେରଙ୍ଗ ଶାମୁକା ଗୋଟାଇବାରେ ଲାଗିପଡ଼ିଛି ମୁଁ । ହେଲେ ମୋ' ଆଖି ଆଗରେ ଅନାବିଷ୍କୃତ ହୋଇ ପଡ଼ିରହିଛି ସତ୍ୟର ସାଗର ।''



# ଅଦ୍ଭୁତ ଦଣ୍ଡ

ଗାଲେନ୍ ଥିଲେ ପ୍ରସିଦ୍ଧ ଗ୍ରୀକ୍ ଚିକିତ୍ସକ । ଆଧୁନିକ ଚିକିତ୍ସାଶାସ୍ତ୍ରକୁ ଗାଲେନ୍‌ଙ୍କର ଅବଦାନ ଖୁବ୍ ବେଶୀ । ସେହିପରି ମହମ୍ମଦ ଆଲ୍-ରାଜି ଥିଲେ ମଧ୍ୟ ଜଣେ ବିଖ୍ୟାତ ଡାକ୍ତର । ଆଲ୍-ରାଜିଙ୍କୁ 'ଆରବୀୟ ଗାଲେନ୍' ହିସାବରେ ମର୍ଯ୍ୟାଦା ଦିଆଯାଏ । ସେ ଡାକ୍ତରି ପଢ଼ିଥିଲେ ବାଗ୍‌ଦାଦ୍‌ରେ । କିନ୍ତୁ ପରେ ନିଜ ଜନ୍ମ ଭୂମି ପର୍ସିଆକୁ ଲେଉଟିଆସି ତେହରାନ୍‌ରେ ଖୋଲିଲେ ଏକ ଡାକ୍ତରଖାନା ।

ଆଲ୍-ରାଜି ଯେ କେବଳ ଜଣେ ପ୍ରସିଦ୍ଧ ଡାକ୍ତର ଥିଲେ ତାହା ନୁହେଁ, ସେ ଥିଲେ ଜଣେ ଉଚ୍ଚକୋଟୀର ଚିନ୍ତକ । ସେ କହୁଥିଲେ ଯେ ମଣିଷ ହେଉଛି ଏକ ବିବେକୀ ପ୍ରାଣୀ । ମଣିଷର ବିବେକରେ ହିଁ ଭଗବାନଙ୍କର ଉପସ୍ଥିତି ଅନୁଭବ କରିହେବ । ତେଣୁ ମଣିଷ ପ୍ରତି ତାଙ୍କର ବହୁତ ସମ୍ମାନ ଥିଲା । ସେ ଅନ୍ୟାୟ ଆଚରଣ କରୁ ନଥିଲେ । ଧର୍ମ ଉପଦେଶକୁ ଅକ୍ଷରେ ଅକ୍ଷରେ ମାନି ଚଳୁଥିଲେ । ରୋଗୀଙ୍କ ଚିକିତ୍ସାରେ ହେଳା କରିବା ତାଙ୍କ ଜାତକରେ ନଥିଲା । ରୋଗୀ ରାଜା ହେଉ କି ରଙ୍କ ହେଉ, ଧନୀ ହେଉ କି ଗରିବ ହେଉ, ସବୁ ରୋଗୀଙ୍କୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ ।

ଆଲ୍-ରାଜି ଥିଲେ ଅତି ଈଶ୍ୱରବିଶ୍ୱାସୀ । କିନ୍ତୁ ସେତେବେଳକାର ଧର୍ମଗୁରୁମାନେ ଆଲ୍ଲାଙ୍କୁ ଯେଉଁପରି ଭାବରେ ଚିତ୍ରଣ କରୁଥିଲେ, ତାହା ଆଲ୍-ରାଜି ଗ୍ରହଣ କରିପାରୁ ନ ଥିଲେ । ଈଶ୍ୱରଙ୍କୁ ସେ ଅତି ଆନ୍ତରିକଭାବରେ ଭଲ ପାଉଥିଲେ, ଭକ୍ତି କରୁଥିଲେ । କିନ୍ତୁ ଧର୍ମ ଏବଂ ଈଶ୍ୱରଙ୍କ ନାମରେ ଅନ୍ଧବିଶ୍ୱାସର ପକ୍ଷପାତୀ ନ ଥିଲେ । ତେଣୁ ସେ ଧର୍ମଗୁରୁମାନଙ୍କ କ୍ରୋଧର ଶିକାର ହେଲେ । ସେମାନେ ଆଲ୍-ରାଜିଙ୍କୁ ଆଲ୍ଲାଦ୍ରୋହୀ ବୋଲି ସମାଲୋଚନା କଲେ । ତାଙ୍କ ନାମରେ ବଦନାମ ରଟିଲେ । ଆଲ୍-ରାଜି ଥିଲେ ମହାଜ୍ଞାନୀ । ସେ ଅନେକ ମହାନ୍ ଗ୍ରନ୍ଥ ରଚନା କରିଥିଲେ । କିନ୍ତୁ ଧର୍ମଗୁରୁମାନଙ୍କ ଇଙ୍ଗିତରେ ସେଗୁଡ଼ିକୁ ନଷ୍ଟ କରିଦିଆଗଲା ।

ଧର୍ମଗୁରୁମାନେ ଆଲ୍-ରାଜିଙ୍କ ବିରୋଧରେ ବୁଖାରାର ଏମିର୍‌ଙ୍କ ଆଗରେ ଫେରାଦ ହେଲେ । ଆଲ୍-ରାଜି ଲୋକଙ୍କୁ ଆଲ୍ଲାଙ୍କ ବିରୋଧରେ ଉସୁକାଉଛନ୍ତି ବୋଲି ମିଛ ଅଭିଯୋଗ ବାଢ଼ିଲେ । ଏମିର୍ ବି ବିଶ୍ୱାସ କରିଗଲେ ସେମାନଙ୍କର ଅଭିଯୋଗକୁ ।

ତେଣୁ ସେ ଏକ ଅଦ୍ଭୁତ ଦଣ୍ଡ ଶୁଣେଇଲେ ଆଲ୍-ରାଜିଙ୍କୁ । ସେ ଆଦେଶ ଦେଲେ ଯେ ଆଲ୍-ରାଜି ପ୍ରକୃତରେ ଅପରାଧୀ । ସେ ଆଲ୍ଲାଙ୍କର ଅବମାନନା କରିଛନ୍ତି । ତେଣୁ ସେ ରଚନା କରିଥିବା ଚିକିତ୍ସାଶାସ୍ତ୍ର ଦ୍ୱାରା ତାଙ୍କ ମୁଣ୍ଡକୁ ବାରମ୍ବାର ଆଘାତ କରାଯିବ । ଘନଘନ ଆଘାତ ଦ୍ୱାରା ବହିଟି ଛିଣ୍ଡିଯିବା ପର୍ଯ୍ୟନ୍ତ କିମ୍ବା ବହି ଆଘାତରେ ଆଲ-ରାଜିଙ୍କର ମୁଣ୍ଡ ଫାଟିଯିବା ପର୍ଯ୍ୟନ୍ତ ବହିଦ୍ୱାରା ତାଙ୍କ ମୁଣ୍ଡକୁ ବାଡ଼େଇବା ଚାଲୁରହିଥିବ । ତାହା ହିଁ ହେଲା । ନିଜ ରଚିତ ପୁସ୍ତକ ମାଡ଼ରେ ବେହୋସ୍ ହୋଇପଡ଼ିଲେ ଆଲ୍-ରାଜି । ତାଙ୍କର ମୁଣ୍ଡଫାଟି ସର୍‌ସର୍ ରକ୍ତ ଝରିଲା । ଫଳରେ ଆଉ ବାଡ଼େଇବା ଦରକାର ପଡ଼ିଲାନି । ଏମିର୍‌ଙ୍କ ଆଦେଶ ଠିକ୍ ଠିକ୍ ପାଳିତ ହେଲା ।

ପରେ ଆଲ୍-ରାଜିଙ୍କ ମୁଣ୍ଡର ଘାଆ ଶୁଖିଗଲା ସତ, କିନ୍ତୁ ମାଡ଼ ଆଘାତରେ ସେ ସବୁଦିନ ପାଇଁ ଅନ୍ଧ ହୋଇଗଲେ । ସେ ଅନ୍ଧ ହୋଇଯିବା ନିମନ୍ତେ ମାଡ଼କୁ କେହି ଦାୟୀ କଲେନି । ସମସ୍ତେ କହି ବୁଲିଲେ ଯେ ଆଲ୍ଲାଙ୍କ ଅଭିଶାପ ଯୋଗୁ ତାଙ୍କର ଏଭଳି ଦଶା ହେଲା ।

ଏଭଳି ଭାବରେ ଅପମାନ ପାଇବାଟାକୁ ସହି ପାରିଲେନି ଆଲ୍-ରାଜି । ତାଙ୍କର ମନ ଭାଙ୍ଗିଗଲା । ସେ ସବୁବେଳେ ମରଣକୁ ଝୁରିହେଲେ । ଏହି ସମୟରେ ତାଙ୍କର ଜଣେ ଶୁଭଚିନ୍ତକ ପରାମର୍ଶ ଦେଲେ ଯେ ଆଖିରେ ଅପରେସନ୍ କରିଦେଲେ ତାଙ୍କର ଦୃଷ୍ଟିଶକ୍ତି ଫେରିଆସିବ । ସେ ପୁଣି ପୂର୍ବଭଳି ଦେଖିପାରିବେ । ରୋଗୀ ଚିକିତ୍ସା କରିପାରିବେ । କିନ୍ତୁ ବଡ଼ ଦୁଃଖରେ ଆଲ-ରାଜି ଉତ୍ତର ଦେଲେ, ''ଏ, ଦୁନିଆକୁ ବେଶ୍ ଭଲଭାବରେ ଚିହ୍ନିଲି । ଏହାକୁ ଆଉ ଅଧିକ ଦେଖିବାପାଇଁ ମୋର ତିଳେମାତ୍ର ଆଗ୍ରହ ନାହିଁ ।'' ଏହାର ଅଳ୍ପ କେତେ ଦିନ ପରେ ତାଙ୍କର ମେଲା ଆଖି ଦୁଇଟି ବି ଚିରଦିନପାଇଁ ବୁଜି ହୋଇଗଲା ।





# ବୃତ୍ତଅଙ୍କା ଅଧା ରହିଲା

ପାଖାପାଖି ବାଇଶ ଶହ ବର୍ଷ ତଳର କଥା । ସେତେବେଳେ ଗ୍ରୀସ୍‌ରେ ଜନ୍ମ ହୋଇଥିଲେ ଆର୍କିମିଡ଼ିସ୍ । ଗଣିତ ବିଦ୍ୟା ଓ ପଦାର୍ଥ ବିଜ୍ଞାନରେ ସେ ଥିଲେ ମହାନ୍ ପଣ୍ଡିତ । ବୈଜ୍ଞାନିକ ଆବିଷ୍କାର କରିବାରେ ତାଙ୍କର ବଡ଼ ନାଁ ଥିଲା । ଆର୍କିମିଡ଼ିସ୍ ସିରାକ୍ୟୁଜ୍ ନଗରୀରେ ରହୁଥିଲେ । ରୋମ୍‌ର ରାଜା ସିରାକ୍ୟୁଜ୍ ଉପରେ ଆକ୍ରମଣ କରିବା ପାଇଁ ସବୁବେଳେ ଧମକ ଦେଉଥିଲେ । ସେଇଥିପାଇଁ ରାଜା ହିଏରନ୍‌ଙ୍କ ମନରେ ଭାରି ଭୟଥାଏ । ସତକୁ ସତ ଥରେ ରୋମ୍‌ର ଯୁଦ୍ଧ ଜାହାଜମାନ ସିରାକ୍ୟୁଜ୍ ଆକ୍ରମଣ କରିବାକୁ ବାହାରି ପଡ଼ିଲେ । ସେନାପତି ଥାଆନ୍ତି ମାର୍ସେଲସ୍ ନାମକ ଜଣେ ବିରାଟ ଯୋଦ୍ଧା ।

ହିଏରନ୍‌ଙ୍କ ପାଖରେ ଏ ଖବର ପହଞ୍ଚିଲା । ସେ ଡରରେ ଛାନିଆ ହୋଇପଡ଼ିଲେ । ଡ଼କେଇ ପଠେଇଲେ ଆର୍କିମିଡ଼ିସ୍‌ଙ୍କୁ । ତାଙ୍କୁ କହିଲେ, ''ଦେଖ, ଶତ୍ରୁ ଏବେ ଆମ ସହରକୁ ଅଧିକାର କରିନେବ । ଘରଦ୍ୱାର ଧ୍ୱଂସ କରିଦେବ । ଲୋକଙ୍କୁ ମାରିପକେଇବ । ମୁଁ ଶତ୍ରୁ ହାତରେ ଧରାପଡ଼ିବି । ହୁଏତ ମୋର ମୁଣ୍ଡକାଟ ବି ହୋଇ ପାରେ । ତୁମେ କ'ଣ କିଛି ପ୍ରତିକାର କରିପାରିବନି ?''

ଆର୍କିମିଡ଼ିସ୍ ରାଜା ହିଏରନ୍‌ଙ୍କ କଥା ମନଦେଇ ଶୁଣିଲେ । କହିଲେ, ''ମୁଁ ମାର୍ସେଲସ୍‌ଙ୍କ ଯୁଦ୍ଧ ଜାହାଜଗୁଡ଼ିକୁ ନଷ୍ଟ କରିଦେଇ ପାରିବି ।''

''କିନ୍ତୁ କିପରି ?'' - ପଚାରିଲେ ରାଜା ।

''ଦର୍ପଣ ବ୍ୟବହାର କରି ।''

ଆର୍କିମିଡ଼ିସ୍‌ଙ୍କ ଉତ୍ତର ଶୁଣି ରାଜାଙ୍କ ମନ ମରିଗଲା । ସେ ଭାବିଲେ ଯେ, ଆର୍କିମିଡ଼ିସ୍‌ଙ୍କ ମୁଣ୍ଡ କାମ କରୁନି । ହୁଏତ ଗୁଡ଼ାଏ ମଦ ପିଇଦେଇଛନ୍ତି କି କଅଣ ? ନୋହିଲେ ଦର୍ପଣ ସାହାଯ୍ୟରେ ଜାହାଜ ନଷ୍ଟ କରିଦେବେ ବୋଲି କହୁଛନ୍ତି କିପରି ?

ଆର୍କିମିଡ଼ିସ୍ କିନ୍ତୁ ନିଜ ଯୋଗାଡ଼ରେ ଲାଗିପଡ଼ିଲେ । ସେ ତିଆରି କଲେ ସ୍ୱତନ୍ତ୍ର ପ୍ରକାରର କେତେଗୁଡ଼ିଏ ବିରାଟ ବିରାଟ ଦର୍ପଣ । ଦର୍ପଣ ଗୁଡ଼ିକୁ ଖଞ୍ଜିଦେଲେ ସମୁଦ୍ର କୂଳରେ ।

ତୁମେମାନେ ଦର୍ପଣକୁ ସୂର୍ଯ୍ୟ ଆଡ଼କୁ ଦେଖେଇ ତୁମ ସାଥୀମାନଙ୍କ ମୁହଁ ଉପରେ ଆଲୁଅ ପକାଇବା ଖେଳ ଖେଳିଥିବ । ଦର୍ପଣରୁ ଆଲୁଅ ଆସି ପଡ଼ିଲେ ବେଶ୍ ଉଷୁମ ଲାଗେନି ? ସେହି ପ୍ରକାରର ଖେଳ ଦେଖେଇଲେ ଆର୍କିମିଡ଼ିସ୍ । ବଡ଼ ବଡ଼ ଦର୍ପଣ ଗୁଡ଼ିକୁ

ସୂର୍ଯ୍ୟ ଦିଗରେ ମୁହଁ କରି ଦେଖେଇବାରୁ ତା ଉପରେ ସୂର୍ଯ୍ୟ କିରଣ ପଡ଼ିଲା । ଦର୍ପଣ ଗୁଡ଼ିକୁ ଧୀରେ ଧୀରେ ବଙ୍କେଇବାରୁ ଦର୍ପଣ ଉପରେ ପଡ଼ିଥିବା ଆଲୁଅ ଯାଇ ପଡ଼ିଲା ମାର୍ସେଲସ୍‌ଙ୍କ ଯୁଦ୍ଧ ଜାହାଜ ଉପରେ । ତୀବ୍ର ସୂର୍ଯ୍ୟ ଆଲୁଅର ତାତିରେ ଗୋଟିକ ପରେ ଗୋଟିଏ କରି କେତୋଟି ଜାହାଜ ଜଳିଗଲା । ଜାହାଜ ସାଙ୍ଗରେ ଜଳିଗଲେ ରୋମ୍‌ର ଅନେକ ସୈନ୍ୟ ସାମନ୍ତ ।

ମାର୍ସେଲସ୍ ଏହା ଦେଖି ନିଜ ଜାହାଜ ସହିତ ପଛଘୁଞ୍ଚା ଦେଲେ । ଦାନ୍ତ କଡ଼ମଡ଼ କରି ଫେରିଯିବାକୁ ବାଧ ହେଲେ ସେ । ହେଲେ ଏହି ଅପମାନର ପ୍ରତିଶୋଧ ନେବା ପାଇଁ ତାଙ୍କର ମନ ସବୁବେଳେ ଛଟପଟ ହେଉଥାଏ । କିନ୍ତୁ ଆର୍କିମିଡ଼ିସ୍‌ଙ୍କ ପ୍ରତି ତାଙ୍କର ସମ୍ମାନ ବଢ଼ିଗଲା ।

ବିତିଗଲା କିଛି ଦିନ । ମାର୍ସେଲସ୍ ପୁଣି ସିରାକ୍ୟୁଜ୍ ଆକ୍ରମଣ କଲେ । ଯୁଦ୍ଧରେ ଜୟଲାଭ କଲେ । ବିଜୟ ନିଶାରେ ମାତି ଉଠିଥାନ୍ତି ରୋମାନ୍ ସୈନ୍ୟମାନେ । କିନ୍ତୁ ମାର୍ସେଲସ୍ ସୈନ୍ୟମାନଙ୍କୁ ଆଦେଶ ଦେଇଥିଲେ, ''ବୁଝି ଖବରଦାର୍, ବୈଜ୍ଞାନିକ ଆର୍କିମିଡ଼ିସ୍‌ଙ୍କ ପ୍ରତି କେହି ଅସମ୍ମାନ କରିବ ନାହିଁ । ତାଙ୍କୁ ବନ୍ଦୀ କରିବ ନାହିଁ । ସେ ଧରାପଡ଼ିଲେ ତାଙ୍କୁ ଭଲ ବ୍ୟବହାର ଦେଖେଇ ମୋ ପାଖରେ ପହଞ୍ଚାଇଦେବ । ସେ ହେବେ ଆମର ସମ୍ମାନିତ ଅତିଥି । କାରଣ ସେ ଜଣେ ବିଶିଷ୍ଟ ବୈଜ୍ଞାନିକ । ବୈଜ୍ଞାନିକ କେବେ କାହାର ଶତ୍ରୁ ହୋଇ ପାରେନା ।''

ରୋମାନ୍ ସୈନ୍ୟମାନେ ସିରାକ୍ୟୁଜ୍ ନଗରୀ ଭିତରେ ପଶି ତାକୁ ନାରଖାର କରିଚାଲି ଥାଆନ୍ତି । ନିରୀହ ଲୋକଙ୍କୁ ହତ୍ୟା କରୁଥାନ୍ତି । ସେତେବେଳେ ଆର୍କିମିଡ଼ିସ୍ ଗୋଟିଏ ଖୋଲା ଜାଗାରେ ବସି ଜ୍ୟାମିତି କରିବାରେ ବ୍ୟସ୍ତ । ଏତିକିବେଳେ ତାଙ୍କ ପାଖରେ ପହଞ୍ଚିଗଲା ଜଣେ ମଦୁଆ ରୋମାନ୍ ସୈନ୍ୟ । ମଦ ନିଶାରେ ତା'ର ହୋସ୍ ନଥାଏ । ସେ ଆର୍କିମିଡ଼ିସ୍‌ଙ୍କୁ ହତ୍ୟା କରିବା ପାଇଁ ଖଣ୍ଡା ଉଞ୍ଚେଇ ଧାଇଁ ଆସିଲା । ଏହା ଦେଖି ଆର୍କିମିଡ଼ିସ୍ ତାକୁ ଅତି ଶାନ୍ତ ଭାବରେ କହିଲେ, '' ଭାଇ, ମୁଁ ଏବେ ଜ୍ୟାମିତି କରିବାରେ ମଜି ଯାଇଥିଲି । ଯେଉଁ ବୃତ୍ତଟି ଆଙ୍କୁଥିଲି, ତାହା ଅଧାପଡ଼ିଛି । ମୋତେ ହତ୍ୟା କରିବା ପୂର୍ବରୁ ମୋର ସାମାନ୍ୟ ଅନୁରୋଧଟିଏ ରକ୍ଷା କର । ମୋତେ ବୃତ୍ତଟିକୁ ଶେଷ କରିବାକୁ ସମୟ ଦିଅ । ମୋର ବୃତ୍ତ ଆଙ୍କିବା ସରିଗଲେ ମୋତେ ହତ୍ୟା କରିବ ।''

ରୋମାନ୍ ସୈନ୍ୟ କି ସେ କଥା ଶୁଣେ ! ସେ ଟିକିଏ ବି ଡେରି ନ କରି ଆର୍କିମିଡ଼ିସ୍‌ଙ୍କୁ ଖଣ୍ଡାରେ ଭୂଷି ଦେଲା । ସବୁଦିନ ପାଇଁ ଆଖି ବୁଜିବା ଆଗରୁ ଆର୍କିମିଡ଼ିସ୍ ଥଙ୍ଗେଇ ଥଙ୍ଗେଇ କହିଥିଲେ '' ରୋମାନ୍‌ମାନେ ସିନା ମୋ ଶରୀରଟାକୁ ନେଇଗଲେ; ହେଲେ ମୁଁ ତ ସାଙ୍ଗରେ ନେଇଯାଉଛି ମୋର ମନକୁ, ମୋର ମେଧାଶକ୍ତିକୁ ।''

ଆର୍କିମିଡ଼ିସ୍ ଅକାଳରେ ମରିଗଲେ ସତ, କିନ୍ତୁ ସେ ମରି ବି ଆଜି ଅମର ।





# ଇଶ୍ୱରଙ୍କ ସହ ବାର୍ତ୍ତାଳାପ

ପଲ୍ ଆଡ୍ରିଆନ୍ ମରିସ୍ ଡିରାକ୍ ଥିଲେ ଜଣେ ପ୍ରଖ୍ୟାତନାମା ତାତ୍ତ୍ୱିକ ପଦାର୍ଥ ବିଜ୍ଞାନୀ । ପରମାଣୁ ତତ୍ତ୍ୱ ସମ୍ବନ୍ଧରେ ଏକ ନୂତନ ଦିଗ୍‌ଦର୍ଶନ ଦେଇଥିଲେ ସେ । ପଦାର୍ଥ ବିଜ୍ଞାନର କ୍ୱାଣ୍ଟମ୍ ମେକାନିକ୍ସ୍ କ୍ଷେତ୍ରକୁ ରହିଛି ତାଙ୍କର ମୌଳିକ ଅବଦାନ । ୧୯୩୩ ମସିହାରେ ପଦାର୍ଥ ବିଜ୍ଞାନ ଶାଖାରେ ପଲ୍ ଡିରାକ୍ ନୋବେଲ୍ ପୁରସ୍କାର ପାଇଥିଲେ ।

ପରେ ସିନା ପଦାର୍ଥ ବିଜ୍ଞାନୀ ହିସାବରେ ପରିଚିତ ହୋଇଗଲେ, ହେଲେ, ସେ ପ୍ରଥମେ ଥିଲେ ଜଣେ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟର୍ । ଇଞ୍ଜିନିୟରିଂ ପଢ଼ିଥିଲେ ବ୍ରିଷ୍ଟଲ୍ ବିଶ୍ୱବିଦ୍ୟାଳୟରେ । କିନ୍ତୁ ଇଞ୍ଜିନିୟର୍ ହିସାବରେ ଚାକିରିଟିଏ ପାଇବା ସହଜ ନ ଥିଲା ସେତେବେଳେ । ତେଣୁ ଇଞ୍ଜିନିୟରିଂ ଛାଡ଼ି ପଢ଼ିଲେ ଗଣିତ । ନିଜର ନିଷ୍ଠା ଏବଂ ଅଧ୍ୟବସାୟ ବଳରେ ସେ ନିଜକୁ ଜଣେ ଗାଣିତିକ ପଦାର୍ଥ ବିଜ୍ଞାନୀ ରୂପେ ପ୍ରତିଷ୍ଠିତ କରି ପାରିଥିଲେ ।

୧୯୨୬ ମସହାରେ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡି. ଉପାଧି ପ୍ରାପ୍ତ ହୋଇ ୧୯୩୨ ମସିହାରେ ଉକ୍ତ ବିଶ୍ୱବିଦ୍ୟାଳୟର ଗଣିତ ବିଭାଗରେ ଲୁକାସିଆନ୍ ପ୍ରଫେସର୍ ରୂପେ ଅଧିଷ୍ଠିତ ହୋଇଥିଲେ ଡିରାକ୍ ।

ଏକଦା ଏହି ପଦବୀ ଅଳଙ୍କୃତ କରିଥିଲେ ପଦାର୍ଥ ବିଜ୍ଞାନର କିମ୍ବଦନ୍ତୀ ବ୍ୟକ୍ତିତ୍ୱ ସାର୍ ଆଇଜାକ୍ ନିଉଟନ୍ । ଡିରାକ୍ ଥିଲେ ଅନ୍ୟତମ ପଦାର୍ଥ ବିଜ୍ଞାନୀ ନୋବେଲ୍ ପୁରସ୍କାର ବିଜେତା ଇଉଜେନ୍ ପଲ୍ ଉଇଗ୍‌ନର୍‌ଙ୍କର ଭଗ୍ନୀପତି ।

୧୯୨୫ ମସିହାର କଥା । ନାମଜାଦା ପଦାର୍ଥ ବିଜ୍ଞାନୀ ୱେର୍‌ନର୍ ହିଜେନ୍‌ବର୍ଗଙ୍କର ଏକ ବକ୍ତୃତା ଶୁଣିବାର ସୁଯୋଗ ମିଳିଥିଲା ଡିରାକ୍‌ଙ୍କୁ । ଏହି ବକ୍ତୃତା ହିଁ ତାଙ୍କୁ କ୍ୱାଣ୍ଟମ୍ ମେକାନିକ୍ସ ଶାଖାରେ ଦୀକ୍ଷିତ କରାଇଦେଲା । ପରମାଣୁରେ ଥିବା ଋଣାତ୍ମକ ଚାର୍ଜ୍ ବିଶିଷ୍ଟ ଇଲେକ୍‌ଟ୍ରୋନ୍‌ର ଧନାତ୍ମକ ଚାର୍ଜ୍ ବିଶିଷ୍ଟ ଏକ ପ୍ରତିରୂପ ବିଷୟରେ ଡିରାକ୍ ପ୍ରଥମ ଧାରଣା ପ୍ରଦାନ କରିବାରେ ସଫଳ ହୋଇଥିଲେ । ସେ ଏହାର ନାମକରଣ କରିଥିଲେ 'ପୋଜିଟ୍ରନ୍' । ୧୯୩୩ ମସିହାରେ ପୋଜିଟ୍ରନ୍ କଣିକା ଆବିଷ୍କୃତ ହୋଇଯିବାରୁ ଡିରାକ୍‌ଙ୍କ ଧାରଣାର ସତ୍ୟତା ପ୍ରତିପାଦିତ ହୋଇଗଲା । ତାଙ୍କ ରଚିତ 'ଦି ପ୍ରିନ୍‌ସିପଲ୍‌ସ୍ ଅଫ୍ କ୍ୱାଣ୍ଟମ୍ ଫିଜିକ୍ସ୍ ' ପୁସ୍ତକ ଏକ କାଳଜୟୀ କୃତି ।

ଥରେ ଡିରାକ୍ ରୁଷିଆ ପରିଭ୍ରମଣରେ ଯାଇଥାନ୍ତି । ନୋବେଲ୍ ପୁରସ୍କାର ବିଜେତା

ପ୍ରଖ୍ୟାତ ପଦାର୍ଥ ବିଜ୍ଞାନୀ ପିଟର୍ କାପିତ୍‌ସାଙ୍କର ଅତିଥି ହୋଇଥାନ୍ତି ସେ । କାପିତ୍‌ସାଙ୍କର ପତ୍ନୀଙ୍କର ଏକ ସ୍ୱେଟର୍ ବୁଣିବା ଅଧା ରହିଥାଏ । ତେଣୁ କଥାବାର୍ତ୍ତା ମଝିରେ ସେ ସ୍ୱେଟର୍ ବୁଣିବା କାମ କରୁଥାନ୍ତି, କଥାବାର୍ତ୍ତାରେ ବି ଯୋଗ ଦେଉଥାନ୍ତି । କିନ୍ତୁ ସ୍ୱେଟର୍ ବୁଣିବା କାମ ପ୍ରଣାଳୀକୁ ଖୁବ୍ ମନଧ୍ୟାନ ଦେଇ ଦେଖୁଥାନ୍ତି ଡିରାକ୍ ।

ତା'ପରେ କାର୍ଯ୍ୟ ଉପଲକ୍ଷେ ଡିରାକ୍ ବାହାରିଗଲେ । ଘଣ୍ଟାଏ ଦୁଇଘଣ୍ଟାପରେ ଫେରିଆସି କାପିତ୍‌ସାଙ୍କ ଘରେ କଲିଙ୍ଗ୍ ବେଲ୍ ଚିପିଲେ । କବାଟ ଖୋଲିଲେ କାପିତ୍‌ସାଙ୍କର ପତ୍ନୀ । ଡିରାକ୍ ବଡ଼ ଉତ୍ତେଜିତ ହୋଇପଡ଼ିଥିବାର ଜଣାଯାଉଥାନ୍ତି । ତେଣୁ କାପିତ୍‌ସାଙ୍କର ପତ୍ନୀ ଡିରାକ୍‌ଙ୍କୁ ପଚାରିଲେ, ''କଅଣ ହେଲା ଡକ୍ଟର ଡିରାକ୍ ? ଆପଣ ଏଭଳି ବିବ୍ରତ ଦେଖାଯାଉଛନ୍ତି କାହିଁକି ?'' ଡିରାକ୍ ଉତ୍ତର ଦେଲେ, ''ଆନ୍ୟା, ତୁମେ ଯେତେବେଳେ ସ୍ୱେଟର୍ ବୁଣୁଥିଲ, ମୁଁ ତାକୁ ଖୁବ୍ ମନଯୋଗ ଦେଇ ଅନୁଧ୍ୟାନ କରୁଥିଲି । ତୁମେ ଯେଉଁ ପ୍ରକାରରେ ବୁଣୁଥିଲ, ସେହି ବିଷୟରେ ମୋ ମୁଣ୍ଡକୁ ଅନ୍ୟଏକ ବିକଳ୍ପ ପ୍ରଣାଳୀ ଢୁକିଗଲା । ତେଣୁ ସେହି କଥା ଭାବି ଭାବି ମୁଁ ଚିନ୍ତାରେ ବୁଡ଼ିଗଲି । ତୁମେ ମୋତେ ଉଲ୍ ଆଉ ସ୍ୱେଟର୍ ବୁଣା ଛୁଞ୍ଚି ଟିକିଏ ଦିଅତ ।''

ଆନ୍ୟା ଘର ଭିତରକୁ ଯାଇ ଉଲ୍ ଆଉ ଛୁଞ୍ଚି ଆଣି ଡିରାକ୍‌ଙ୍କୁ ବଢ଼େଇ ଦେଲେ । ଡିରାକ୍ ଉଲ୍ ଆଉ ଛୁଞ୍ଚି ନେଇ କହିଲେ, ''ତୁମେ ସ୍ୱେଟରଟିର ଯେଉଁ ଡିଜାଇନ୍ କରିଛ, ତାହା ମାତ୍ର ଦୁଇଟି ପ୍ରଣାଳୀରେ ସମ୍ଭବ ହୋଇପାରେ । ଗୋଟିଏ ପ୍ରଣାଳୀକୁ ଅବଲମ୍ବନ କରିଛ ତୁମେ । ଅନ୍ୟଟି ହେଉଛି ଏହିପରି''— ଏହା କହି ସେ ନିଜେ ସ୍ୱେଟର୍ ବୁଣିବା ଆରମ୍ଭ କରିଦେଲେ ଓ ଆନ୍ୟାଙ୍କୁ ଡ଼ାକି ନୂଆ ପ୍ରଣାଳୀଟିକୁ ଶିଖାଇବାରେ ଲାଗିଗଲେ ।

ଆନ୍ୟା ବି ଜଣେ ଆଗ୍ରହୀ ଛାତ୍ରୀରୂପେ ଡିରାକ୍‌ଙ୍କ ପ୍ରଣାଳୀକୁ ଲକ୍ଷ୍ୟ କରିବାରେ ଲାଗିଥାନ୍ତି । ଉଁ କି ଚୁଁ କିଛି କହୁ ନ ଥାନ୍ତି । ଡିରାକ୍ ପଚାରିଲେ, '' କ'ଣ ବୁଝିପାରୁଛ ଆନ୍ୟା ? ଏହି ପ୍ରକାରରେ କ'ଣ ତୁମେ ସ୍ୱେଟର ବୁଣି ପାରିବନି ? ''

ଅତି ଧୀର ଏବଂ ଶାନ୍ତ ଗଳାରେ ଆନ୍ୟା ଉତ୍ତର ଦେଲେ ''ହଁ ବୁଝିପାରିଲି । ତେବେ ଏହି ପ୍ରଣାଳୀରେ ସ୍ୱେଟର ବୁଣିବା ତ କେଉଁକାଳୁ ଜଣା ଅଛି । ଏହାକୁ କୁହାଯାଏ 'ପର୍ଲିଙ୍ଗ୍ ପ୍ରଣାଳୀ' ।

ଏହା ଶୁଣି ଡିରାକ୍‌ଙ୍କର ମାନସିକ ଉତ୍ତେଜନା ଶାନ୍ତ ପଡ଼ିଗଲା ।

ଡିରାକ୍‌ଙ୍କ ବିଷୟରେ ନିଜର ଏକ ଅନୁଭୂତି ବର୍ଣ୍ଣନା କରିଛନ୍ତି କୋଲ୍ଲିନ୍ ଟେଲର୍ ସେନ୍ । ସେ ଲେଖିଛନ୍ତି, ''ଫୋର୍ଟ୍ ଲଡେର୍‌ଡେଲ୍‌ଠାରେ ଅନୁଷ୍ଠିତ ହେଉଥାଏ 'ଶକ୍ତି' ସଂକ୍ରାନ୍ତରେ ଏକ ସମ୍ମିଳନୀ । ସେଥିରେ ମୁଁ ଯୋଗ ଦେଇଥାଏ । ନିମନ୍ତ୍ରିତ ବିଜ୍ଞାନୀ ମାନଙ୍କ ମଧ୍ୟରେ ଥାନ୍ତି ପଲ୍ ଡିରାକ୍ ଏବଂ ଅନ୍ୟ କେତେଜଣ ନୋବେଲ୍ ବିଜେତା ।

''ସଂଧ୍ୟାର ଆସର ବେଶ୍ ଜମିଥାଏ । ଖିଆପିଆ ଏବଂ ମଦ୍ୟପାନ ଚାଲିଥାଏ ।

କଥାବାର୍ତ୍ତା ଓ ହସଖୁସିରେ ଫାଟି ପଡୁଥାଏ ଭୋଜନ କକ୍ଷ । ଦୂରରେ ଥାଇ ମୋର ଜଣେ ବନ୍ଧୁ ଚିହ୍ନେଇ ଦେଲେ, ସେଠି ଯିଏ ଠିଆ ହୋଇଛନ୍ତି ସେ ହେଉଛନ୍ତି ପଲ୍ ଡିରାକ୍ ।

''ଭୋଜନ କକ୍ଷର ଗୋଟିଏ କଣ ପଟିଆ ହୋଇ ଏକୁଟିଆ ଠିଆହୋଇଥାନ୍ତି ସେ । ଅନ୍ୟ ଅତିଥିମାନଙ୍କର ଧ୍ୟାନ ସେ ଆଡ଼କୁ ନ ଥାଏ । ସତେ ଯେମିତି ଡିରାକ୍ ଜଣେ ଅଲୋଡ଼ା ଅତିଥି ।''

ମୁଁ ବନ୍ଧୁଜଣଙ୍କୁ କହିଲି, ''ଚାଲନା, ତାଙ୍କ ପାଖକୁ ଯାଇ କଥାବାର୍ତ୍ତା ହେବା ।''

ବନ୍ଧୁ ଉତ୍ତର ହେଲେ, ''ବାପ୍‌ରେ ବାପ୍ । କ'ଣ ପାଗଳ ହୋଇଗଲ ନା କଅଣ ? ଡିରାକ୍‌ଙ୍କ ସାଙ୍ଗରେ ବାର୍ତ୍ତାଳାପ ! ଏତ ସାକ୍ଷାତ୍ ପ୍ରଭୁଙ୍କ ସାଙ୍ଗରେ ମୁହାଁମୁହିଁ ହୋଇଗଲା ଭଳି ଘଟଣା । ମୋତେ ଘୋଷାରିଲେ ବି ମୁଁ ଡିରାକ୍‌ଙ୍କ ସମ୍ମୁଖକୁ ଯିବି ନି ।''

''ମୁଁ ତ ଜଣେ ପଦାର୍ଥ ବିଜ୍ଞାନୀ ନୁହେଁ । ତେଣୁ ମୋର କୁଣ୍ଠା ଆସିଲାନି କି ମନରେ ଭୟ ଉଙ୍କି ମାରିଲାନି । ମୁଁ ସିଧା ସିଧା ତାଙ୍କ ଆଡ଼େ ଚାଲିଲି । କୁଶଳ ଜିଜ୍ଞାସା କରି ଗପସପ ଆରମ୍ଭ କରିଦେଲି ।

''ସେତେବେଳେ ମୁଁ ଜି. ଏଚ୍. ହାର୍ଡିଙ୍କ ଦ୍ୱାରା ରଚିତ ପୁସ୍ତକ 'ମ୍ୟାଥେମେଟିସିଆନ୍‌ସ୍ ଆପୋଲୋଜି' ପୁସ୍ତକଟିକୁ ସଦ୍ୟ ପଢ଼ିସାରିଥାଏ । ହାର୍ଡି ମଧ୍ୟ ଥାଆନ୍ତି କ୍ୟାମ୍ବ୍ରିଜ୍‌ରେ । ସେ ଥାଆନ୍ତି ପଲ୍ ଡିରାକ୍‌ଙ୍କର ସମସାମୟିକ । ତେଣୁ ହାର୍ଡିଙ୍କୁ ଆଧାରକରି କଥାବାର୍ତ୍ତାର ଖିଅ ଧରିଲି ମୁଁ ।

ହାର୍ଡିଙ୍କ ନାଁ ଶୁଣିଲା ମାତ୍ରେ ଡିରାକ୍ ହଠାତ୍ ପ୍ରସନ୍ନ ଦେଖାଗଲେ । ତାଙ୍କର ଗାମ୍ଭୀର୍ଯ୍ୟ ମିଳେଇଗଲା । ସେ ମୋତେ କହିଲେ ଯେ ହାର୍ଡିଙ୍କ ଲାଇବ୍ରେରୀରେ ରହିଛି ବ୍ରାଡ୍‌ମ୍ୟାନ୍‌ଙ୍କର ଏକ ଛବି । ଏଇଆ କହି ହଠାତ୍ ପଚାରିଲେ, ''ତୁମେ ବ୍ରାଡ୍‌ମ୍ୟାନ୍‌ଙ୍କୁ ଜାଣିଛ ? ସେ କିଏ କହିଲ ? ମୋ ଉତ୍ତର ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ । ଇଂରେଜ ନ ହୋଇ ଯେ ମୁଁ କ୍ରିକେଟ୍ ବିଷୟରେ ଜାଣିଛି ଏବଂ ବ୍ରାଡ୍‌ମ୍ୟାନ୍ ଜଣେ ସୁପ୍ରସିଦ୍ଧ କ୍ରିକେଟ୍ ଖେଳାଳି ବୋଲି କହିପାରୁଛି, ଏହା ସେ କଳ୍ପନା କରି ନ ଥିଲେ ।

''ଏହାପରେ ଆମ ଦୁହିଁଙ୍କ ମଧ୍ୟରେ ଥିବା ବ୍ୟବଧାନ ଦୂର ହୋଇଗଲା । ସେ ଜଣେ ଅନ୍ତରଙ୍ଗ ବନ୍ଧୁଭଳି ମୋ ସହ ଗପସପରେ ମାତିଗଲେ । ସେ କହିଲେ ଯେ ହାର୍ଡି ଥିଲେ ଜଣେ ବଡ଼ କ୍ରିକେଟ୍ ପ୍ରେମୀ । କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟର ଖେଳପଡ଼ିଆରେ ସେ ନିୟମିତ କ୍ରିକେଟ୍ ଖେଳୁଥିଲେ । ହାର୍ଡି ଥିଲେ ଜଣେ ଭଲ ବୋଲର୍ ।

''କଥା ପ୍ରସଙ୍ଗରେ କ୍ୟାମ୍ବ୍ରିଜ୍‌ର ସେତେବେଳକାରର ପ୍ରତିଭାଧରଙ୍କ ବହୁ ଅଜଣା ବିଷୟରେ ସେ ମୋତେ ଅବଗତ କରାଇଦେଲେ । ଆମ କଥାବାର୍ତ୍ତା ଭିତରେ ଏକ ଘଣ୍ଟା ବିତିଗଲା । କିନ୍ତୁ ମୁଁ 'ଈଶ୍ୱରଙ୍କ ସହ ବାର୍ତ୍ତାଳାପ' କରୁଥିବାର କୌଣସି ଆଭାସ ପାଇପାରିଲିନି ।''

❑❑❑



# ଫାରାଡ଼େଙ୍କ ମହାନତା

ତାଙ୍କ ନାଁ ମାଇକେଲ୍ ଫାରାଡେ । ଜନ୍ମ ହୋଇଥିଲେ ଇଂଲଣ୍ଡରେ । ସେ ପଦାର୍ଥ ବିଜ୍ଞାନ ଶାଖାରେ ଥିଲେ ଜଣେ ବଡ଼ ପଣ୍ଡିତ । ଚୁମ୍ବକ ଏବଂ ଶକ୍ତି ମଧ୍ୟରେ ଥିବା ସଂପର୍କ ବିଷୟରେ ସେ ଦେଇଥିଲେ ପ୍ରଥମ ଧାରଣା । ସେ ଥିଲେ ଇଲେକ୍ଟ୍ରିକ୍ ଜେନେରେଟର୍ ଏବଂ ଡାଇନାମୋର ଆବିଷ୍କାରକ ।

ପରେ ସିନା ସାରା ପୃଥିବୀରେ ସେ ଜଣାଶୁଣା ହୋଇଗଲେ, କିନ୍ତୁ ପିଲାବେଳେ ଫାରାଡେଙ୍କ ଦ୍ୱାରା ପାଠ ହେଉ ନ ଥିଲା । ପଢ଼ିବା ଏବଂ ଲେଖିବା ବିଷୟରେ ତାଙ୍କର ମାମୁଲି ଜ୍ଞାନ ଥିଲା ମାତ୍ର । ଗଣିତ କଥା ପଡ଼ିଲେ ତାଙ୍କ ଦେହରେ ଝାଳ ଜକେଇ ଆସୁଥିଲା । କଥାବାର୍ତ୍ତା କଲାବେଳେ ତାଙ୍କର ପାଟି ଲାଗୁଥିଲା । ତାହାଛଡ଼ା ସେ ଥିଲେ ଜଣେ ସାଧାରଣ ଗାଁ କମାରର ପୁଅ । ତେଣୁ ସ୍କୁଲ୍‌ର ମାଷ୍ଟରାଣୀ ଫାରାଡେଙ୍କୁ ଜମା ସହିପାରୁ ନ ଥିଲେ । ସାମାନ୍ୟ କଥାରେ ପିଟି ପକାଉଥିଲେ ତାଙ୍କୁ ।

ଥରେ ମାଷ୍ଟରାଣୀଙ୍କ ମନରେ ଖିଆଲ ପଶିଲା ଯେ ସେ ଆଜି ଫାରାଡେଙ୍କୁ ସମସ୍ତଙ୍କ ଆଗରେ ବେତରେ ବାଡ଼େଇବେ । ଅନ୍ୟଛାତ୍ରମାନଙ୍କୁ ମଧ୍ୟ ତାହା ଜଣେଇ ଦେଇ ନିଜ ବ୍ୟାଗ୍ ଭିତରୁ ସେ କିଛି ପଇସା ବାହାର କଲେ । ପଇସା ଫାରାଡେଙ୍କ ଭାଇ ରବର୍ଟ୍‌କୁ ଧରେଇ ଦେଇ ବେତଟିଏ କିଣି ଆଣିବା ପାଇଁ ଆଦେଶ ଦେଲେ । ଝରକାବାଟେ ପଇସାକୁ ଫୋପାଡ଼ି ଦେଇ ଛୁ ମାରିଲା ରବର୍ଟ୍ । ଘରେ ପହଞ୍ଚି ମା'ଙ୍କୁ ସବୁକଥା କହିଦେଲା । ପିଲାମାଡ଼ ଖାଇ ଖାଇ ପଢ଼ିବାକୁ ପସନ୍ଦ କରୁ ନ ଥିଲେ ଫାରାଡେଙ୍କ ମା' । ତେଣୁ ଦୁଇପୁଅଙ୍କୁ ମା' ସ୍କୁଲରୁ ଉଠେଇ ନେଲେ । ଫାରାଡେ ଆଉ ସ୍କୁଲ ଦୁଆର ମାଡ଼ି ନାହାନ୍ତି ତାହା ପରଠାରୁ ।

ଫାରାଡେଙ୍କ ପରିବାର ଥିଲେ ବଡ଼ ଗରିବ । ତେଣୁ ଜଣେ ବହି ବନ୍ଧାଳି ଏବଂ ବହି ବିକାଳିଙ୍କ ଦୋକାନରେ ଚାକିରି କଲେ ଫାରାଡେ । ଏହି ସମୟରେ ହମ୍ଫ୍ରେ ଡାଭି ନାମକ ଜଣେ ବିଖ୍ୟାତ ବୈଜ୍ଞାନିକଙ୍କର ଭାଷଣ ଶୁଣିବାର ସୁଯୋଗ ପାଇଲେ ସେ । ଭାଷଣ ଶୁଣିଲାବେଳେ ସେ ପଦପଦ କରି ସବୁ ଟିପି ପକାଉଥାନ୍ତି । ପରେ ତାହାକୁ ଭଲ ଅକ୍ଷରରେ ପରିଷ୍କାର ଭାବରେ ଲେଖି ପକାଇଲେ । ପଟାଦେଇ ଲେଖା କାଗଜ ପୃଷ୍ଠା ଗୁଡ଼ିକ ବନ୍ଧେଇ କରିଦେଲେ । ବନ୍ଧେଇ ଖାତାଟିକୁ ଡାଭିଙ୍କ ପାଖକୁ ପଠେଇ ଦେଇ ତାଙ୍କ ଗବେଷଣାଗାରରେ ଚାକିରିଟିଏ କରେଇଦେବା ନିମନ୍ତେ ଅନୁରୋଧ ଜଣେଇଲେ ।

ଖାତାଟି ଦେଖି ଖୁବ୍ ଖୁସି ହୋଇଗଲେ ଡାଭି । କିନ୍ତୁ ଫାରାଡେଙ୍କୁ ଚାକିରି ଦେବେକି ନା ବହୁତ ଭାବିଲେ । ଏ ବିଷୟରେ ଗବେଷଣାଗାରର ଅନ୍ୟସାଥୀମାନଙ୍କ ସାଙ୍ଗରେ ଆଲୋଚନା କଲେ । ସେମାନେ କହିଲେ ଯେ ଫାରାଡେଙ୍କୁ ବୋତଲ ସଫା କରିବା ଚାକିରି ଯଚାଯାଉ । ପ୍ରକୃତରେ କାମିକା ହୋଇଥିଲେ ସେ ବଳେବଳେ ସବୁ କାମରେ ପଶିଯିବ । କାମିକା ହୋଇ ନ ଥିଲେ ଏଇ ସାମାନ୍ୟ ଚାକିରିକୁ ଖାତର ନ କରି ଚୁପ୍ ହୋଇ ରହିଯିବ ।

ଫାରାଡେ ବୋତଲ ସଫା ଚାକିରିକୁ ଖୁସିରେ ଆଦରି ନେଲେ । ପରେ ତାଙ୍କୁ ମିଳିଲା ଗବେଷଣାଗାର ଜଗିବା ଚାକିରି ବା ଜଗୁଆଳି ଚାକିରି । ଜଗୁଆଳି ହେଲେ ମଧ ଡାଭିଙ୍କୁ ମଝିରେ ମଝିରେ ଗବେଷଣାରେ ସାହାଯ୍ୟ କରୁଥାନ୍ତି ଫାରାଡେ । ନିଜେ ବି ଗବେଷଣା କରୁଥାନ୍ତି । ଫାରାଡେ ଯେ ଭଲ ଗବେଷଣା କରିପାରିବେ ଏ' ବିଷୟରେ ଡାଭିଙ୍କର କୌଣସି ସନ୍ଦେହ ନ ଥାଏ । ତାହାଛଡ଼ା ଫାରାଡ଼େ ଥିଲେ ଖୁବ୍ ନମ୍ର ଏବଂ ଭଦ୍ର । ଅନ୍ୟ କାହା ମନରେ କଷ୍ଟ ଦେବା ତାଙ୍କ ଧାତକରେ ନ ଥିଲା । ସେ କାହାକୁ ଈର୍ଷା କରୁ ନ ଥିଲେ କି କାହାରିକୁ ଘୃଣା କରୁ ନ ଥିଲେ । କ୍ରମେ ଗବେଷଣାରେ ଫାରାଡେଙ୍କର ବି ନାଁ ହୋଇଗଲା ।

ଥରେ ଇଉରୋପର ବିଭିନ୍ନ ସ୍ଥାନରେ ଭାଷଣ ଦେବାପାଇଁ ଡାଭିଙ୍କୁ ନିମନ୍ତ୍ରଣ ଆସିଲା । ନିଜ ସ୍ତ୍ରୀଙ୍କୁ ସାଙ୍ଗରେ ନେବା ସଙ୍ଗେ ସଙ୍ଗେ ଫାରାଡେଙ୍କୁ ମଧ ସାଥିରେ ନେଲେ ଡାଭି । ଜେନେଭା ରହଣିବେଳେ ସେଠାକାର ଦାର୍ଶନିକ ପ୍ରଫେସର୍ ଡି. ଲା. ରାଇଭ୍ ଡାଭି, ଶ୍ରୀମତୀ ଡାଭି ଏବଂ ଫାରାଡେଙ୍କ ସମ୍ମାନରେ ଦେଲେ ଏକ ଭୋଜି । ଫାରାଡେଙ୍କ ବିଜ୍ଞାନ କୃତି ବିଷୟରେ ରାଇଭ୍ ଆଗରୁ ସବୁ କଥା ଜାଣିଥିଲେ । ତେଣୁ ଅନ୍ୟ ଅତିଥମାନଙ୍କ ସହ ସମାନ ଟେବୁଲରେ ଡାଭି, ଶ୍ରୀମତୀ ଡାଭି ଏବଂ ଫାରାଡେଙ୍କ ଖାଇବା ବ୍ୟବସ୍ଥା ହେଲା । କିନ୍ତୁ ଏଥିରେ ବଡ଼ ଆପତ୍ତି ଉଠାଇଲେ ଶ୍ରୀମତୀ ଡାଭି । ସେ କହିଲେ, ''ଫାରେଡେ ମୋ' ସ୍ୱାମୀଙ୍କର ଚାକର । ତେଣୁ ଅନ୍ୟ ଚାକର ମାନଙ୍କ ପାଖରେ ବସି ସେ ଖାଇବ ସିନା, ଆମ ପାଖରେ ବସି ଖାଇବା ମୋ ପାଇଁ ଏକ ଅପମାନ ।''

ପ୍ରଫେସର୍ ରାଇଭଙ୍କୁ ଏହା ବାଧିଲା । କିନ୍ତୁ ଫାରାଡେ ଥିଲେ ଖୁବ୍ ଉଦାର । ଅତିଥିମାନଙ୍କୁ ସମ୍ମାନ ଜଣେଇ ସେ ଉଠିଗଲେ ଏବଂ ଅନ୍ୟ ଏକ ଜାଗାରେ ଖାଇ ବସିଲେ ।

ଥରେ ସାର୍ ହମ୍ଫ୍ରେ ଡାଭିଙ୍କୁ ପଚରା ଯାଇଥିଲା, ''ଆପଣଙ୍କର ଶ୍ରେଷ୍ଠ ଆବିଷ୍କାରଟି କଅଣ ?'' ହମ୍ଫ୍ରେ ସାଙ୍ଗେ ସାଙ୍ଗେ ଉତ୍ତର ଦେଇଥିଲେ, ''ମାଇକେଲ୍ ଫାରାଡେଙ୍କୁ ଆବିଷ୍କାର କରିବା ହିଁ ମୋର ସର୍ବଶ୍ରେଷ୍ଠ ଆବିଷ୍କାର ।'' କିନ୍ତୁ ଖଣି ଭିତରେ କାମ କରୁଥିବା କର୍ମଚାରୀଙ୍କ ପାଇଁ ଡାଭି ଯେଉଁ 'ନିରାପଦ ବତି' ଉଦ୍‌ଭାବନ କରିଥିଲେ, ତାହା ଆଦୌ 'ନିରାପଦ' ନୁହେଁ ବୋଲି ଫାରାଡେ ମତ ଦେବାରୁ ଉଭୟଙ୍କ ମଧରେ ମନୋମାଳିନ୍ୟ ସୃଷ୍ଟି ହୋଇଥିଲା । ତେଣୁ ବଞ୍ଚିବାଯାଏ ଡାଭି ଫାରାଡେଙ୍କ ଉପରେ ରାଗ ରଖିଥିଲେ । ଏପରିକି ଫାରାଡେଙ୍କୁ

ରୟାଲ୍ ସୋସାଇଟିର ସଭ୍ୟ ନ କରେଇ ଦେବା ପାଇଁ ତାଙ୍କ ବିରୋଧରେ ଭୋଟ୍ ଦେଇଥିଲେ । କିନ୍ତୁ ଡାଭିଙ୍କ ପ୍ରତି ଫାରାଡେଙ୍କ ମନରେ କୌଣସି ରାଗ ନ ଥିଲା ।

ଥରେ ଜିନ୍ ଡୁମାଙ୍କ ସାଙ୍ଗରେ ବସି ଗପ କରୁଥାନ୍ତି ଫାରାଡେ । ସେତେବେଳକୁ ହମ୍ଫ୍ରେଙ୍କର ମୃତ୍ୟୁ ହୋଇ ସାରିଥାଏ । ଗପ ମଝିରେ ଫାରାଡେ ହଠାତ୍ ଉଠି ପଡ଼ିଲେ । କାନ୍ଥରେ ଟଙ୍ଗା ହୋଇଥିବା ହମ୍ଫ୍ରେ ଡାଭିଙ୍କର ଫଟୋ ପାଖକୁ ଚାଲିଗଲେ । ଆଖି ଛଳ ଛଳ କରି କହିଲେ, ''ଡୁମା, ଜାଣିଛନା, ଡାଭି ସତରେ ଜଣେ ଅତି ମହାନ୍ ଲୋକ । ତାଙ୍କ ଅଧୀନରେ କାମକରି ମୁଁ ନିଜକୁ ଧନ୍ୟ ମନେ କରୁଛି ।''

ଫାରାଡେ ଥିଲେ ଜଣେ ବିଖ୍ୟାତ ବୈଜ୍ଞାନିକ । କିନ୍ତୁ ଗର୍ବ ଛୁଇଁ ନ ଥିଲା ତାଙ୍କୁ । ଉପାଧି କି ସମ୍ମାନ ପଛରେ ସେ ଗୋଡ଼ାଉ ନ ଥିଲେ । ''ଏ'ଯୁଗର ସର୍ବଶ୍ରେଷ୍ଠ ବିଜ୍ଞାନୀ'' ବୋଲି କହି ତାଙ୍କୁ ରୟାଲ୍ ସୋସାଇଟିର ସଭାପତି ପଦ ଯାଚିଥିଲେ ବିଶିଷ୍ଟ ବୈଜ୍ଞାନିକ ଟିଣ୍ଡାଲ୍ । କିନ୍ତୁ ଏହି ପଦ ଗ୍ରହଣ କରିବାକୁ ନମ୍ରତାର ସହ ମନା କରିଦେଇ ଫାରାଡେ କହିଥିଲେ, ''ଟିଣ୍ଡାଲ୍, ମୃତ୍ୟୁ ପର୍ଯ୍ୟନ୍ତ କେବଳ ମାଇକେଲ୍ ଫାରାଡେ ହୋଇ ରହିଯିବା ମୋର ଆନ୍ତରିକ ଇଚ୍ଛା । କୌଣସି ପଦପଦବୀ ମୋର ଲୋଡ଼ା ନାହିଁ ।''

ଫାରାଡେ ମୃତ୍ୟୁ ବରଣ କରିବାର ଅଳ୍ପ କିଛି ବର୍ଷ ପୂର୍ବର ଘଟଣା । ଲଣ୍ଡନର ଟଙ୍କା ତିଆରି କାରଖାନାରୁ ଜଣେ ବୈଜ୍ଞାନିକଙ୍କୁ ପଠାଯାଇଥିଲା ଫାରାଡେଙ୍କ ଗବେଷଣାଗାରକୁ । ବୈଜ୍ଞାନିକ ଜଣକ ସେଠାରେ କିଛି ପରୀକ୍ଷା ନିରୀକ୍ଷା କରିବା କଥା ।

ଯୁବ ବୈଜ୍ଞାନିକ ପରୀକ୍ଷା କରୁଥାନ୍ତି । ତାଙ୍କ ପରୀକ୍ଷାକୁ ଅତି ମନଧ୍ୟାନ ଦେଇ ଦେଖୁଥାନ୍ତି ଜଣେ ପାକଳା ବୁଢ଼ା । ବୁଢ଼ାଙ୍କ ମୁଣ୍ଡର ସବୁଯାକ କେଶ ପାଚି ଯାଇଥାଏ । ପିନ୍ଧିଥାନ୍ତି ଅତି ମଇଳା ଚିରାଫଟା ପୋଷାକ । ହଠାତ୍ ଯୁବକ ଜଣକ ପଚାରିଲେ, ''ତୁମେ ଏଠି ବୋଧହୁଏ ବହୁତ ବର୍ଷ ହେଲା ରହିଲଣି ?''

ବୁଢ଼ା ଜଣକ ଉତ୍ତର ଦେଲେ, ''ହଁ, ବହୁତ ବର୍ଷ ।''

– ''କଅଣ ଜଗୁଆଳ ଚାକିରିରେ ? ''

– ''ହଁ, ସେମିତି କିଛି ।''

– ''ଯାହା ଦରମା ପାଉଛ, ସେଥିରେ ଚଳାଚଳ ହୋଇଯାଉଛି ତ ?''

– ''ହଁ, କିଛି କମ୍ ଦରମା ମିଳୁନି ।''

– ''ଆଚ୍ଛା ବାବୁ, ତମ ନାଁ କଅଣଟି ?'' – ପଚାରିଲେ ଯୁବ ବୈଜ୍ଞାନିକ ।

– ''ମାଇକେଲ୍ ଫାରାଡେ ।''

ଏହିଭଳି ମହାନ୍ ଥିଲେ ମାଇକେଲ୍ ଫାରାଡେ; ଥିଲେ ଏହିଭଳି ନମ୍ର ଏବଂ ଉଦାର ।





# ବାପପୁଅଙ୍କୁ ନୋବେଲ୍ ପୁରସ୍କାର



ସାର୍ ଉଇଲିୟମ୍ ହେନ୍‌ରି ବ୍ରାଗ୍‌ଙ୍କୁ ବିଜ୍ଞାନର ମହାନ୍ ବ୍ୟକ୍ତିତ୍ୱର ସମ୍ମାନ ଦିଆଯାଏ । କ୍ୟାମ୍ବ୍ରିଜ୍‌ରେ ଜଣେ ଗଣିତଜ୍ଞ ହିସାବରେ ବେଶ୍ ନାଁ କମେଇଥିଲେ ସେ । ପରେ ପରେ ଚାଲିଗଲେ ଅଷ୍ଟ୍ରେଲିଆ । ସେଠାକାର ଆଡେଲ୍‌ଡ୍ ବିଶ୍ୱବିଦ୍ୟାଳୟରେ ୧୫ ବର୍ଷରୁ ଉର୍ଦ୍ଧ୍ୱକାଳ ରହି ଫେରି ଆସିଲେ ଲଣ୍ଡନ୍ । ଲଣ୍ଡନ୍‌ର ପ୍ରଖ୍ୟାତ କ୍ୟାଭେଣ୍ଡିସ୍ ଲାବୋରେଟରୀରେ ପ୍ରଫେସର ହିସାବରେ ଯୋଗ ଦେଲେ ।

ପ୍ରଥମ ଅବସ୍ଥାରେ ସେ ଥିଲେ ଜଣେ ଗଣିତ ବିଶାରଦ । ଗଣିତ ବିଦ୍ୟାରେ ପାରଦର୍ଶିତା ଅର୍ଜନ କରିଥିଲେ । ସେତେବେଳେ ପଦାର୍ଥ ବିଜ୍ଞାନର ଧାର ଧାରୁ ନ ଥିଲେ ସେ । କିନ୍ତୁ ଆଡେଲ୍‌ଡ ବିଶ୍ୱବିଦ୍ୟାଳୟ ବ୍ରାଗ୍‌ଙ୍କୁ ପଦାର୍ଥ ବିଜ୍ଞାନର ପ୍ରଫେସର ହିସାବରେ ନିଯୁକ୍ତି ଦେଲା । ବଡ଼ ଅଡୁଆ କଥା । ଗଣିତ ପଢ଼ାଇବାରେ ସିନା ଅସୁବିଧା ନାହିଁ । ହେଲେ, ପଦାର୍ଥ ବିଜ୍ଞାନ ପଢ଼େଇବା କାମ କରିବେ କେମିତି ? ପୁଣି ଜଣେ ପ୍ରଫେସର୍ ସେ । ତେଣୁ ବ୍ରାଗ୍ ପାଲଟି ଗଲେ ଛାତ୍ର । ରାତିଦିନ ପଦାର୍ଥ ବିଜ୍ଞାନ ପଢ଼ିବାରେ ଲାଗିଲେ ଓ ଛାତ୍ରମାନଙ୍କୁ ପଢ଼ାଇଲେ ।

ଆଗରୁ ଗବେଷଣା କରୁଥିଲେ ଗଣିତରେ । କାଗଜ-ପେନ୍‌ସିଲ୍ ଧରି ଅଙ୍କ କଷିବା ଥିଲା କାମ । ଗଣିତ-ଗବେଷଣା ପାଇଁ ଯନ୍ତ୍ରପାତି ଦରକାର ପଡୁ ନ ଥିଲା । ଏବେ ଗବେଷଣା କରିବେ ପଦାର୍ଥ ବିଜ୍ଞାନରେ । ଗବେଷଣା ଛାତ୍ରଙ୍କ କାମର ତତ୍ତ୍ୱ ନେବେ । ପଦାର୍ଥ ବିଜ୍ଞାନ ପଢ଼ିଲା ଭଳି ବ୍ରାଗ୍ ଯନ୍ତ୍ରପାତି ସହ ପରିଚିତ ହେବାକୁ ଚେଷ୍ଟାକଲେ । ଏପରିକି ଲେଦ୍ ବା କୁନ୍ଦାଯନ୍ତ୍ର ଚଳେଇବା ଶିଖି ନେଲେ । ସମୟ ଆସିଲା ଯେତେବେଳେ ବ୍ରାଗ୍ ନିଜେ ନୂଆ ନୂଆ ଗବେଷଣା ଯନ୍ତ୍ରପାତି ତିଆରି କରି ପାରିଲେ । ପ୍ରଥମ ଥର ପାଇଁ ତିଆରି କଲେ ପ୍ରଥମ ଏକ୍ସ୍-ରେ ସ୍ପେକ୍‌ଟ୍ରୋମିଟର ଯନ୍ତ୍ର ।

ବ୍ରାଗ୍‌ଙ୍କୁ ୪୨ ବର୍ଷ ହେବାଯାଏ ସେ ପ୍ରାୟତଃ କୌଣସି ଜଟିଳ ଗବେଷଣାରେ ହାତ ଦେଇ ନ ଥିଲେ । କିନ୍ତୁ ମାତ୍ର କେଇଟା ବର୍ଷ ଭିତରେ ସାରା ପୃଥିବୀରେ ସେ ପରିଚିତ ହୋଇଗଲେ ।

'ଆଲୋକ'ର ପ୍ରକୃତି ସବୁବେଳେ ବିଜ୍ଞାନୀ ମାନଙ୍କ ପାଇଁ ମୁଣ୍ଡବ୍ୟଥାର କାରଣ ହୋଇ ଆସିଛି । ଆଲୋକର ବିଶିଷ୍ଟତା ବିଷୟରେ ଉଲ୍ଲେଖ କରିବାକୁ ଯାଇ ବ୍ରାଗ୍ ଲେଖିଥିଲେ, ''ଆଲୋକର ବ୍ୟବହାର କଥା ପଚାରୁଛ ? ସୋମବାର, ବୁଧବାର ଏବଂ ଶୁକ୍ରବାର ଗୁଡ଼ିକରେ ଆଲୋକ 'ତରଙ୍ଗ' ଭଳି ବ୍ୟବହାର ଦେଖାଯାଏ । ମଙ୍ଗଳବାର, ଗୁରୁବାର ଓ ଶନିବାର ଗୁଡିକରେ ତା'ର ବ୍ୟବହାର କଣିକା ଭଳି ! ଆଉ ରବିବାର ? ରବିବାର ଦିନ ତା ମୁଣ୍ଡ ବାଉଳାଧରେ ! ସେ ତରଙ୍ଗ ଭଳି ବ୍ୟବହାର ଦେଖାଏନି କି 'କଣିକା' ଭଳି ବ୍ୟବହାର ଦେଖାଏନି !''

ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ପଢ଼ାଇବା ନିମନ୍ତେ ବିଭିନ୍ନ ବିଷୟରେ ଫିଲ୍ମ୍ ପ୍ରସ୍ତୁତ କରିବା ଥିଲା ବ୍ରାଗ୍‌ଙ୍କର ସଉକ । ସେ ଥରେ ଫିଲ୍ମଟିଏ ପ୍ରସ୍ତୁତ କରିଥିଲେ । କିନ୍ତୁ ତାକୁ ଦେଖି ଫିଲ୍ମ୍‌ର ନିର୍ଦ୍ଦେଶକ ସେଥିରେ କିଛି ପରିବର୍ତ୍ତନ ଆଣିବାକୁ ଚାହିଁଲେ । ଗୋଟିଏ ଦୃଶ୍ୟକୁ ଭିନ୍ନ ପ୍ରକାରରେ ପ୍ରଦର୍ଶନ କରିବାକୁ ପରାମର୍ଶ ଦେଲେ ନିର୍ଦ୍ଦେଶକ । ତେଣୁ ପୁଣିଥରେ ସେହି ଦୃଶ୍ୟଟିର ସୁଟିଙ୍ଗ୍ କରିବା ନିମନ୍ତେ ବ୍ୟବସ୍ଥା ହେଲା ।

ନିର୍ଦ୍ଦେଶକ କହିଲେ ଯେ ପୂର୍ବଥର ସୁଟିଙ୍ଗ୍ କଲା ବେଳେ ବ୍ରାଗ୍ ଯେଉଁ କୋଟ୍ ପ୍ୟାଣ୍ଟ୍ ପିନ୍ଧି ଥିଲେ, ସେହି ହଜକ ଏଥରକ ବି ପିନ୍ଧିବେ । ପୁରୁଣା କୋଟ୍ ପ୍ୟାଣ୍ଟ୍ ଖୋଜା ଚାଲିଲା । ସେତେବେଳକୁ ବ୍ରାଗ୍‌ଙ୍କର ସ୍ତ୍ରୀ ପ୍ୟାଣ୍ଟ୍‌ଟିକୁ ବିକ୍ରି କରି ସାରିଥାନ୍ତି । ବହୁ ଖୋଜା ଖୋଜି ପରେ ମିଳିଲା କୋଟ୍‌ଟା । କଅଣ ଏବେ କରାଯାଏ ? ବ୍ରାଗ୍ ନିର୍ଦ୍ଦେଶକଙ୍କୁ ଅନୁରୋଧ କଲେ ଯେ ଫଟୋ ଉଠାଇଲା ବେଳେ ସେ ବ୍ରାଗ୍‌ଙ୍କ ଅଣ୍ଟା ପର୍ଯ୍ୟନ୍ତ ଫଟୋ ଉଠାଇବେ । ଅଣ୍ଟା ତଳକୁ ଫଟୋ ନ ଉଠାଇଲେ ପ୍ୟାଣ୍ଟ୍‌ଟା ଫଟୋରେ ଆସିପାରିବନାହିଁ । ତାହାହିଁ ହେଲା ।

ସାର୍ ଉଇଲିଅମ୍ ହେନେରି ବ୍ରାଗ୍‌ଙ୍କ ପୁଅ ହେଉଛନ୍ତି ସାର୍ ଉଇଲିୟମ୍ ଲରେନ୍ସ୍ ବ୍ରାଗ୍ । ଲରେନ୍ସ୍ ମଧ ଥିଲେ ଜଣେ ବିଶିଷ୍ଟ ପଦାର୍ଥ ବିଜ୍ଞାନୀ । ୧୯୧୫ ମସିହାରେ ବାପପୁଅ ଦୁଇଜଣଯାକ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ । ସେ ବର୍ଷର ପଦାର୍ଥ ବିଜ୍ଞାନର ନୋବେଲ୍ ପଦକ ବ୍ରାଗ୍ ପରିବାର ହାସଲ କରିନେଲେ ।

ପୁତ୍ର ଲରେନ୍ସ୍ ପ୍ରମାଣ କରି ଦର୍ଶାଇ ଥିଲେ ଯେ ତାଙ୍କ ପିତା ହେନ୍‌ରି ବ୍ରାଗ୍ ଯେଉଁ ତଥ୍ୟ ପ୍ରଦାନ କରିଛନ୍ତି, ସେଥିରୁ କେତେକ ଶତକଡ଼ା ଶହେ ଭୁଲ୍ । ପିତାଙ୍କର ଗବେଷଣା ସିଦ୍ଧାନ୍ତକୁ ପୁତ୍ର ମିଥ୍ୟା ବୋଲି ପ୍ରମାଣ କରିବାର ଉଦାହରଣ ବିରଳ ।





# ବୋଷ ଏବଂ ଆଇନ୍ ଷ୍ଟାଇନ୍

ଡକ୍ଟର ସତ୍ୟେନ୍ଦ୍ର ନାଥ ବୋଷ ଥିଲେ ଜଣେ ନାମଜାଦା ପଦାର୍ଥ ବିଜ୍ଞାନୀ ଏବଂ ଗଣିତଜ୍ଞ । ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ଡକ୍ଟର ମେଘନାଦ ଶାହାଙ୍କର ସେ ଥିଲେ ସହପାଠୀ ଏବଂ ଘନିଷ୍ଠ ବନ୍ଧୁ ।

୧୯୨୩ ମସିହାରେ ଡକ୍ଟର ବୋଷ ଥାଆନ୍ତି ଢାକା ବିଶ୍ୱବିଦ୍ୟାଳୟର ପଦାର୍ଥ ବିଭାଗରେ ରିଡର୍ । କ୍ୱାଣ୍ଟମ୍ ପଦାର୍ଥ ବିଦ୍ୟା ବିଷୟରେ ସେ ପ୍ରସ୍ତୁତ କଲେ ଏକ ଗବେଷଣା ପ୍ରବନ୍ଧ । ବିଶ୍ୱବିଦ୍ୟାଳୟର ଗବେଷଣା ପତ୍ରିକାରେ ପ୍ରକାଶ କରିବା ନିମନ୍ତେ ପ୍ରବନ୍ଧଟିକୁ ପଠାଇଦେଲେ । କିନ୍ତୁ ପତ୍ରିକାର ସମ୍ପାଦନାମଣ୍ଡଳୀ ତାହାକୁ ପ୍ରକାଶନ ଉପଯୋଗୀ ବୋଲି ମନେ କଲେ ନାହିଁ । ନିମ୍ନମାନର କହି ବାଦ୍ ଦେଇଦେଲେ ।

ବୋଷ ବି ଏଥିରେ ଦବିଗଲେନି । ସେ ଆଉ କାହାପାଖକୁ ପ୍ରବନ୍ଧଟିକୁ ନ ପଠେଇ ସିଧା ସଳଖ ପଠେଇ ଦେଲେ ସେତେବେଳକାରର ବିଶିଷ୍ଟ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍‌ଙ୍କ ପାଖକୁ । ପ୍ରବନ୍ଧ ସାଙ୍ଗରେ ପଠେଇଲେ ଛୋଟ ଚିଠି ଖଣ୍ଡେ । ବଡ଼ ନମ୍ରତାର ସହିତ ସେ ଲେଖିଥିଲେ ଚିଠିଟି । ପ୍ରବନ୍ଧଟିକୁ 'ଜିସ୍‌ରିଫ୍‌ଟ୍ ଫର୍ ଫିଜିକ୍' ପତ୍ରିକାରେ ପ୍ରକାଶ କରିବା ନିମନ୍ତେ ଆଇନ୍‌ଷ୍ଟାଇନ୍‌ଙ୍କୁ ଅନୁରୋଧ ଜଣାଇଥିଲେ । ଆହୁରି ମଧ ଲେଖିଥିଲେ, ''ଜର୍ମାନ୍ ଭାଷା ଜାଣିଥିଲେ ବି ପ୍ରବନ୍ଧଟିକୁ ଜର୍ମାନ୍ ଭାଷାରେ ଅନୁବାଦ କରିବା ନିମନ୍ତେ ସାହସ କରିପାରୁନି । କାରଣ ମୋର ଭାଷାଜ୍ଞାନ ବଡ଼ ଦୁର୍ବଳ । ଆପଣ ଦୟାକରି ଯଦି ଏହାକୁ ଜର୍ମାନ୍ ଭାଷାରେ ଅନୁବାଦ କରି ଦିଅନ୍ତେ, ମୁଁ ବହୁତ ଖୁସି ହୁଅନ୍ତି ।''

ଆଇନ୍‌ଷ୍ଟାଇନ୍ ପ୍ରବନ୍ଧଟିକୁ ପାଇ ତାକୁ ନିଜେ ଜର୍ମାନ୍ ଭାଷାରେ ଅନୁବାଦ କଲେ । ପ୍ରବନ୍ଧଟିକୁ ଉକ୍ତ ପତ୍ରିକାରେ ପ୍ରକାଶ କଲେ । କେବଳ ସେତିକି ନୁହେଁ । ପ୍ରବନ୍ଧ ବିଷୟରେ ନିଜର ମତାମତ ମଧ ଦେଇଥିଲେ, ସେ ନିଜର ମନ୍ତବ୍ୟରେ ଲେଖିଥିଲେ, ''ମୋ' ମତରେ ବୋଷଙ୍କର ବିଶ୍ଳେଷଣ ଅତିଉଚ୍ଚମାନର । ଏହା ଆଗାମୀ କାଲିର ବିଜ୍ଞାନ !''

ଥରେ ଏକ ବିଜ୍ଞାନ ସମ୍ମିଳନୀରେ ବକ୍ତୃତା ଦେଉଥାନ୍ତି ନୋବେଲ୍ ପୁରସ୍କାର ବିଜେତା ଡକ୍ଟର ନିଲ୍‌ସ୍ ବୋହର୍ । ଡକ୍ଟର ସତ୍ୟେନ୍ଦ୍ର ନାଥ ବୋଷ ଥାଆନ୍ତି ସଭାପତି । ବୋହର୍ ଭାଷଣ ଦେବାକୁ ଆରମ୍ଭ କଲାମାତ୍ରେ ବୋଷ ଆଖିବୁଜି ବସିଲେ ।

ନିଲ୍‌ସ୍ ବୋହର୍ ବ୍ଲାକ୍‌ବୋର୍ଡ୍‌ରେ ଲେଖୁଥାନ୍ତି । ଅଙ୍କ କଷୁଥାନ୍ତି । ଅଙ୍କ କଷି ବିଷୟଟିକୁ ବୁଝେଇବାକୁ ଚେଷ୍ଟା କରୁଥାନ୍ତି । ହଠାତ୍ ମଝିରେ ସେ ଅଟକି ଗଲେ । ପରଧାଡ଼ିରେ କଅଣ ଲେଖିବେ ତାଙ୍କ ମୁଣ୍ଡକୁ ଢୁକିଲାନି । ସେ ବୁଲିପଡ଼ି ଡକ୍ଟର ବୋଷ୍‌ଙ୍କୁ ପଚାରିଲେ, ''ଡକ୍ଟର ବୋଷ, ସାହାଯ୍ୟକର ତ ଟିକିଏ । ଏହାପରେ କଅଣ ଲେଖିବି ?''

ବୋହର୍‌ଙ୍କ ଅନୁରୋଧ ଶୁଣି ଶ୍ରୋତାମାନେ ମୁରୁକି ହସା ଦେଲେ । ସେମାନେ ଭାବିଲେ, ''ବୋଷ ତ ଶୋଇଯାଇଥିଲେ । ସେ କଅଣ ଶୁଣିଛନ୍ତି ଯେ ବୋହର୍‌ଙ୍କୁ ସାହାଯ୍ୟ କରିବେ ?''

ବୋଷ୍ କିନ୍ତୁ ଆଖିମେଲିଲେ । ଉଠି ଠିଆହେଲେ । ଚକ୍ ଖଣ୍ଡେ ଧରି ବ୍ଲାକ୍‌ବୋର୍ଡ୍ ଆଡ଼କୁ ଆଗେଇ ଗଲେ । ଅଙ୍କ କଷା ସାରିଦେଇ ନିଜ ଚଉକିକୁ ଫେରିଆସିଲେ । ଚଉକିରେ ବସିପଡ଼ି ପୁଣି ଆଖି ଦୁଇଟିକୁ ବନ୍ଦ କରିଦେଲେ ।

ଅତି ଉଚ୍ଚକୋଟୀର ବୈଜ୍ଞାନିକ ହୋଇମଧ ତାଙ୍କୁ ଆନ୍ତର୍ଜାତିକ ସ୍ୱୀକୃତି ମିଳିବାରେ ବହୁତ ଡେରି ହୋଇଯାଇଥିଲା । ତେଜସ୍କ୍ରିୟତା ସମ୍ବନ୍ଧରେ ତାଙ୍କର ଆବିଷ୍କାରର ଦୀର୍ଘ ୩୪ ବର୍ଷ ପରେ ତାଙ୍କୁ ଏଫ୍.ଆର୍.ଏସ୍. ଉପାଧି ମିଳିଲା ।

ବିଜ୍ଞାନକୁ ବୋଷଙ୍କର ଅବଦାନ ବିଷୟରେ ଏକ ଆନ୍ତର୍ଜାତୀୟ ସେମିନାର୍ ଅନୁଷ୍ଠିତ ହେଲା କଲିକତାରେ । ସେହି ସଭାରେ ଭାଷଣ ଦେଇ ବୋଷ କହିଥିଲେ, ''ମୋ' ଆବିଷ୍କାର ଶେଷରେ ସାରା ପୃଥିବୀରେ ଗୃହୀତ ହୋଇଛି । ସେହି ଦିନର ଅପେକ୍ଷାରେ ମୁଁ ବଞ୍ଚିରହିଥିଲି । ଏବେ ତ ମୋର ଆଶା ପୂରଣ ହୋଇଗଲା, ଆଉ ବଞ୍ଚିରହି ଲାଭ କଅଣ ?''

ଏହି ଭାଷଣଟି ଦେବାର ମାସକ ପରେ ଡକ୍ଟର ବୋଷଙ୍କର ମୃତ୍ୟୁ ହୋଇଗଲା ।



# ଭୋଳା ବୁନ୍‌ସେନ୍

ପ୍ରତି ବିଜ୍ଞାନ ଛାତ୍ର ବୁନ୍‌ସେନ୍ ବର୍ନର୍ ସହ ପରିଚିତ । ଏହା ଏକ ଧରଣର ଗ୍ୟାସ୍‌ବତି । ଉଷୁମ କରିବା, ତତେଇବା, ଫୁଟେଇବା ଆଦି କାମପାଇଁ ଏହି ବତି ବ୍ୟବହାର କରାଯାଇଥାଏ । ରୋଷେଇଗ୍ୟାସ୍‌ଭଳି ଏଥିରେ ମଧ୍ୟ କଳା ପଡ଼େନାହିଁ । ଏହି ବତିର ବ୍ୟବହାରକୁ ବୁନ୍‌ସେନ୍ ଲୋକପ୍ରିୟ କରିଥିବାରୁ ତାଙ୍କରି ନାମ ଅନୁସାରେ ବତିକୁ ବୁନ୍‌ସେନ୍ ବର୍ନର୍ ବୋଲି କୁହାଯାଉଛି ।

ବୁନ୍‌ସେନ୍ ଥିଲେ ଜର୍ମାନ୍ ଦେଶର ଜଣେ ରସାୟନବିତ୍ । ବୁନ୍‌ସେନ୍ ଶ୍ରେଣୀ ଗୃହରେ ପଢ଼ାଇଲାବେଳେ ଛାତ୍ର ଶ୍ରେଣୀରେ ଉପସ୍ଥିତ ରହିବ କି ନା, ତାହା ଛାତ୍ର ଉପରେ ନିର୍ଭର କରୁଥିଲା । ଶ୍ରେଣୀରେ ଉପସ୍ଥିତ ରହି ବୁନ୍‌ସେନ୍‌ଙ୍କ ଭାଷଣ ଶୁଣିବାରେ ଛାତ୍ରମାନଙ୍କ ପାଇଁ କୌଣସି ବାଧ୍ୟବାଧକତା ନ ଥିଲା । ତେବେ ବର୍ଷ ଶେଷରେ ଛାତ୍ରମାନେ ପ୍ରଫେସରଙ୍କଠାରୁ ଶ୍ରେଣୀରେ ଯୋଗଦାନ କରିଥିବା ସଂକ୍ରାନ୍ତ ଏକ ସାର୍ଟିଫିକେଟ୍ ଆଣି ଦାଖଲ କରିବା ଥିଲା ନିୟମ । ଜଣେ ଛାତ୍ର ବର୍ଷ ତମାମ ବୁନ୍‌ସେନ୍‌ଙ୍କ କ୍ଲାସରେ ଅନୁପସ୍ଥିତ ରହିଥିଲା । କିନ୍ତୁ ତା'ର ଉପସ୍ଥାନ ସଂକ୍ରାନ୍ତ ପ୍ରମାଣ ପତ୍ର ଦରକାର । ନୋହିଲେ ସେ ପରୀକ୍ଷା ଦେବା ସମ୍ଭବ ନୁହେଁ ।

ସାର୍ଟିଫିକେଟ୍ ପାଇବା ଆଶାରେ ଛାତ୍ରଟି ବୁନ୍‌ସେନ୍‌ଙ୍କ ପାଖରେ ପହଞ୍ଚିଲା । ବୁନ୍‌ସେନ୍‌ଙ୍କୁ ପିଲାଟିର ମୁହଁ ଅଚିହ୍ନା ଅଚିହ୍ନା ଲାଗିବାରୁ ସେ ତାକୁ ପଚାରିଲେ, କ୍ଲାସ୍‌ରେ ତୁମକୁ ଦେଖିଥିବାର ତ ମୋର ମନେ ପଡୁନି ।'' ଛାତ୍ରଟି ଚଟ୍‌କରି ଉତ୍ତର ହେଲା, ''ସାର୍, କ୍ଲାସରେ ମୁଁ ସବୁବେଳେ ଖୁଣ୍ଟ ଆଢୁଆଳରେ ବସିଥାଏ । ସେଇଥିପାଇଁ ବୋଧହୁଏ ମୋ' ଉପରେ ଆପଣଙ୍କର ଆଖି ପଡ଼ିନି ।''

ବୁନ୍‌ସେନ୍ ବ୍ୟଙ୍ଗ କରି କହିଲେ, ''ହଁ, ହଁ, ତାହା ହୋଇଥିବ । ତୁମଭଳି କେତେ ନା କେତେ ଛାତ୍ର ଶ୍ରେଣୀଗୃହର ଏହି ଖୁଣ୍ଟଗୁଡ଼ିକର ଆଢୁଆଳରେ ବସି ବସି ଡିଗ୍ରୀ ନେଇ ଖସି ଯାଉଛନ୍ତି ।''

ବୁନ୍‌ସେନ୍ ସବୁବେଳେ ଅନ୍ୟମନସ୍କ ରହିଥାନ୍ତି । କାହାରି ନାଁ ତାଙ୍କର ମନେ ରହେନି । ଦିନକର କଥା । ଜଣେ ଭଦ୍ରବ୍ୟକ୍ତି ବୁନ୍‌ସେନ୍‌ଙ୍କ ପାଖକୁ ଆସିଲେ । ବୁନ୍‌ସେନ୍‌ଙ୍କ ସହ କଥାବାର୍ତ୍ତାରେ ମଜିଗଲେ । ଚିହ୍ନା ଚିହ୍ନା ଲାଗିଲେ ବି ତାଙ୍କ ନାଁଟା ବୁନ୍‌ସେନ୍‌ଙ୍କର ମନେ ପଡ଼ିଲାନି । ବହୁତ ଧନ୍ଦି ହେଲାପରେ ସେ ଧରି ନେଲେ ଯେ ଭଦ୍ରବ୍ୟକ୍ତି ଜଣକ ହୁଏତ କେକ୍ୟୁଲ୍ କିମ୍ବା ଷ୍ଟ୍ରେକର୍ । କିନ୍ତୁ ଏହି ଦୁଇ ଜଣକ ଭିତରୁ ସେ ପୁଣି କେଉଁ ଜଣକ ? ଶେଷରେ ସେ ନିଷ୍ପତ୍ତି ନେଲେ ଯେ ଭଦ୍ରବ୍ୟକ୍ତି ହେଉଛନ୍ତି କେକ୍ୟୁଲ୍ । କଥାବାର୍ତ୍ତା ସରିଲା । ଉକ୍ତ ବ୍ୟକ୍ତି ଯିବାକୁ ବାହାରିଲେ । ସେତେବେଳକୁ ବୁନ୍‌ସେନ୍ ନିଶ୍ଚିତ ଯେ ଭଦ୍ରବ୍ୟକ୍ତି ଜଣକ କେକ୍ୟୁଲ୍‌ଙ୍କ ବ୍ୟତୀତ ଆଉ କେହି ନୁହନ୍ତି । ତେଣୁ ସେ ଆଉ ସମ୍ଭାଳି ପାରିଲେନି । କହିଲେ, ''ବୁଝିଲ ନା, ମୁଁ ତ ପ୍ରଥମେ ତୁମକୁ ଷ୍ଟ୍ରେକର୍ ବୋଲି ଧରି ନେଇଥିଲି ।

ଭଦ୍ରବ୍ୟକ୍ତି ଏହା ଶୁଣି ଆଶ୍ଚର୍ଯ୍ୟ ହୋଇ ଉତ୍ତର ହେଲେ, ''ମୁଁ ତ ସ୍ୱୟଂ ଷ୍ଟ୍ରେକର୍ ।''

୧୮୮୬ ମସିହାରେ ହିଡେଲ୍‌ବର୍ଗ ବିଶ୍ୱବିଦ୍ୟାଳୟ ପାଳନ କରୁଥାଏ ତାର ପାଞ୍ଚଶହତମ ପ୍ରତିଷ୍ଠା ଦିବସ । ସେହି ଉଦ୍ଦେଶ୍ୟରେ ପ୍ରାତଃ ଭୋଜନ ଆୟୋଜିତ ହୋଇଥାଏ । ବହୁତ କିସମର ଖାଦ୍ୟ ପରଷା ହୋଇଥାଏ । ଅତିଥିମାନେ ଭାଷଣ ଦେଇ ଚାଲିଥାଆନ୍ତି । ଭୋଜନପର୍ବ ସାରିବାକୁ ଲାଗିଗଲା ଦୀର୍ଘ ତିନିଘଣ୍ଟା । ଭୋଜନ ଆରମ୍ଭ ହୋଇ ଜଣେ ଦୁଇଜଣ ବକ୍ତା କହିଛନ୍ତି କି ନା, ବୁନ୍‌ସେନ୍ ନିଘୋଡ଼ ନିଦରେ ଶୋଇଗଲେ । ହଠାତ୍ ଜଣେ ବଡ଼ ପାଟିଆ ବକ୍ତାଙ୍କ ଭାଷଣ ଶବ୍ଦରେ ତାଙ୍କ ନିଦ ଭାଙ୍ଗିଗଲା । ସେ ଆଖି ମଳି ମଳି ଉଠି ପଡ଼ିଲେ । ତାଙ୍କ ପାଖ ଚଉକିରେ ବସିଥିବା ବ୍ୟକ୍ତି ଜଣଙ୍କୁ କହିଲେ, ''ରକ୍ଷା ହୋଇଛି । ମୁଁ ଧରି ନେଇଥିଲି ଯେ ରୁବିଡିୟମ୍ ଥିବା ଟେଷ୍ଟଟିଉବ୍‌ଟି ମୋ ହାତରୁ ଖସି ପଡ଼ି ଏଭଳି ଶବ୍ଦ ସୃଷ୍ଟି କରୁଛି ।''

ବୁନ୍‌ସେନ୍ ଥିଲେ ବଡ଼ ନମ୍ର । ଅତି ମାତ୍ରାରେ ବିନୟୀ । ଭାଷଣ ଦେବାବେଳେ ସେ ନିଜ ଆବିଷ୍କାର ସମ୍ବନ୍ଧରେ ଆଦୌ କିଛି କହୁ ନ ଥିଲେ । ନିହାତି ଦରକାର ପଡ଼ିଲେ ନିଜ ନାଁ ନ ନେଇ 'ଗବେଷଣାରୁ ଜଣାପଡ଼ିଛି' 'ଆବିଷ୍କୃତ ହୋଇଛି' ଭଳି ପ୍ରକାଶ କରି 'ମୁଁ' ଶବ୍ଦ ବ୍ୟବହାରକୁ ଟାଳି ଦେଉଥିଲେ ।

ନିଜର ଗବେଷଣା ଏବଂ ଆବିଷ୍କାର ପାଇଁ ବୁନ୍‌ସେନ୍ ବହୁ ପୁରସ୍କାର ଏବଂ ପଦକ ପାଇଥିଲେ । କିନ୍ତୁ ତାଙ୍କ ପାଖରେ ଏ'ସବୁର କିଛି ମୂଲ୍ୟ ନ ଥିଲା । ଥରେ ସେ ଅତି ଦୁଃଖରେ କହିଥିଲେ, '' ପୁରସ୍କାର, ମେଡାଲ୍ ବା ପଦକ ନେଇ ଦେଖେଇଲେ ମୋ' ମା' ଭାରି ଖୁସି ହେଉଥିଲେ । ସେଇଥିପାଇଁ ମୁଁ ସେଗୁଡ଼ିକୁ ଘରକୁ ନେଉଥିଲି । ଏବେ ତ ମୋ' ମା' ଆଉ ଇହଧାମରେ ନାହାନ୍ତି । ତେଣୁ ସେଗୁଡ଼ିକୁ ନେଇ କରିବି କଅଣ ? ''





# ସୁନାନାକିଆ ବ୍ରାହେ

ଟାଇକୋ ବ୍ରାହେ ଥିଲେ ଜଣେ ଜ୍ୟୋତିର୍ବିଜ୍ଞାନୀ । ଗ୍ରହ ନକ୍ଷତ୍ର ମାନଙ୍କର ଗତିବିଧି ଲକ୍ଷ୍ୟ କରିବା ଥିଲା ତାଙ୍କର କାମ । ସେ ମଧ୍ୟ ଗୋଟିଏ ନକ୍ଷତ୍ର ଆବିଷ୍କାରକରିଥିଲେ ।

ତାଙ୍କ ବାପା ଥିଲେ ଏଲସିନୋର୍ ଦୁର୍ଗର ଗଭର୍ନର । ଭାଇସ୍-ଆଡ୍‌ମିରାଲ୍ ଥିଲେ ତାଙ୍କର ଦାଦା । ଦାଦାଙ୍କର ପିଲାପିଲି ନ ଥିଲେ । ତେଣୁ ଦାଦା ଜଣକ ଟାଇକୋ ବ୍ରାହେଙ୍କ ପିତାଙ୍କଠାରୁ ଏକ ପ୍ରତିଶ୍ରୁତି ଆଦାୟ କରିନେଲେ । କଥା ରହିଲା ଯେ ଭାଇଙ୍କର ଯଦି ପୁଅଟିଏ ଜନ୍ମ ହୁଏ, ତେବେ ସେହି ପୁଅଟିକୁ ନିଜ ପୁଅ ଭଳି ଲାଳନପାଳନ କରିବେ ସେ । ଗଭର୍ନର୍‌ଙ୍କ ସ୍ତ୍ରୀଙ୍କଠାରୁ ପୁଅଟିଏ ଜନ୍ମନେଲା । ପୁଅ ମୁହଁ ଦେଖି ତାକୁ ହାତଛଡ଼ା କରିବାକୁ ଗଭର୍ନର୍ କି ତାଙ୍କ ସ୍ତ୍ରୀ ରାଜି ହେଲେନାହିଁ । ତେଣୁ ଦିନେ ଦାଦା ପୁତୁରାକୁ ଅପହରଣ କରିନେଲେ ।ସେହି ପୁତୁରା ହିଁ ହେଉଛନ୍ତି ବ୍ରାହେ ।

ବ୍ରାହେଙ୍କ ଛାତ୍ର ବେଳର କଥା । ବ୍ରାହେ ଏବଂ ତାଙ୍କର ଜଣେ ସହପାଠୀ ଥରେ କଳି କଲେ । ଦୁଇଜଣଙ୍କ ଭିତରୁ କିଏ ଗଣିତରେ ବେଶୀ ପାରଙ୍ଗମ, ସେହି ବିଷୟରେ କଜିଆ ଲାଗିଥିଲା । ସହପାଠୀ ଜଣକ ରାଗିଯାଇ ବ୍ରାହେଙ୍କ ନାକ କାଟି ଦେଲେ । ସେତେବେଳେ କଟା ନାକକୁ ନେଇ ଯୋଡ଼ିଦେବାର କଳା ଡାକ୍ତରଙ୍କୁ ଜଣା ନଥିଲା । ତେଣୁ ଡାକ୍ତରମାନେ ସୁନା ଏବଂ ରୂପାମିଶା ଧାତୁକୁ ନେଇ କୃତ୍ରିମ ନାକଟିଏ ତିଆରି କଲେ ଓ ତାକୁ ନେଇ ବ୍ରାହେଙ୍କ ନାକରେ ଯୋଡ଼ିଦେଲେ । ସୁନାରୂପା ତିଆରି ନାକଟି ଥିଲା ଚାରିକଣିଆ ।

ବ୍ରାହେଙ୍କ ମୁଣ୍ଡଟି ଥିଲା ବେଶ୍ ବଡ଼ । ଗୋଟିଏ ବୋଲି ବାଳ ନ ଥିଲା ମୁଣ୍ଡରେ । ତା ସାଙ୍ଗକୁ ଚାରିକଣିଆ ଧାତୁନାକ । ନାକ ତଳେ ବହଳିଆ ଲମ୍ବା ନିଶ । ଏ' ସବୁ ମିଶି ଅପୂର୍ବ ଦେଖାଯାଉଥିଲା ବ୍ରାହେଙ୍କ ମୁହଁ ।

ଜର୍ମାନୀର କ୍ୟାସେଲ୍‌ଠାରେ ରହୁଥିଲେ ଚ଼ତୁର୍ଥ ଉଇଲହେଲ୍‌ମ୍ । କ୍ୟାସେଲ୍‌ର୍ ଏକ

ଗମ୍ବୁଜ ଭିତରେ ସେ ତିଆରି କରିଥିଲେ ଏକ ମାନମନ୍ଦିର । ମହାକାଶରେ ରହିଥିବା ଗ୍ରହନକ୍ଷତ୍ରଙ୍କ ଗତିବିଧି ଅନୁଧ୍ୟାନ କରିବାରେ ତାଙ୍କର ବଡ଼ ସଉକ ଥିଲା । ଥରେ ସେ ଏବଂ ବ୍ରାହେ ଦୁଇଜଣଯାକ ମାନମନ୍ଦିର ଭିତରେ ବସି ଗୋଟିଏ ନୂଆ ନକ୍ଷତ୍ରକୁ ଅନୁଧ୍ୟାନ କରୁଥାନ୍ତି । ଏତିକି ବେଳେ ଜଣେ ଆସି ଖବର ଦେଲା ଯେ ଉଇଲ୍‌ହେଲମ୍‌ଙ୍କ ଘରେ ହଠାତ୍ ନିଆଁ ଲାଗି ଯାଇଛି । ଉଇଲହେଲମ୍ ଏ' କଥା ଶୁଣିଲେ । 'ହଁ' ଟିଏ କହି ପୁଣି ନକ୍ଷତ୍ର ଦେଖାରେ ଲାଗିଗଲେ । ଉଇଲ୍‌ହେଲମ୍‌ଙ୍କର ଏହି ତାରା ଦେଖା ସଉକ ବ୍ରାହେଙ୍କୁ ଖୁବ୍ ପସନ୍ଦ ହୋଇଥିଲା ।

ବ୍ରାହେ ପ୍ରାୟତଃ ଜର୍ମାନୀରେ ରହୁଥିଲେ । କିନ୍ତୁ ଡେନ୍‌ମାର୍କର ରାଜା ଦ୍ୱିତୀୟ ଫ୍ରେଡେରିକ୍ ତାଙ୍କୁ କୌଣସି ମତେ ଡେନ୍‌ମାର୍କ୍‌କୁ ଫେରେଇ ଆଣିବାକୁ ଚାହୁଁଥିଲେ । ତାଙ୍କ ରାଜ୍ୟରେ ଥିବା ଅନେକ ଦୁର୍ଗ ଭିତରୁ ଯେ' କୌଣସି ଗୋଟିଏ ଦୁର୍ଗକୁ ନିଜ ପସନ୍ଦ ଅନୁସାରେ ବାଛି ମାନମନ୍ଦିର ପ୍ରତିଷ୍ଠା କରିବା ନିମନ୍ତେ ଫ୍ରେଡେରିକ୍ ତାଙ୍କୁ ଅନୁରୋଧ କଲେ । ହେଲେ ବ୍ରାହେ ଏଥିରେ ରାଜି ହେଲେନି । ତେଣୁ ସେ ବ୍ରାହେଙ୍କୁ ଯାଚିଲେ ଏକ ଦ୍ୱୀପ । ଦ୍ୱୀପଟିର ଲମ୍ବଥିଲା ପାଞ୍ଚ କିଲୋମିଟର ଓ କ୍ଷେତ୍ରଫଳ ଦୁଇହଜାର ଏକର । ସେଠାରେ ରହିଥିଲା ଏକ ଦୁର୍ଗ । ତାହାଛଡ଼ା ଡେନ୍‌ମାର୍କର ଅନ୍ୟ କର୍ମଚାରୀଙ୍କ ଦରମାଠାରୁ ତାଙ୍କୁ ବେଶୀ ଦରମା ଦିଆଯିବାର ପ୍ରତିଶ୍ରୁତି ମିଳିଲା । ଗବେଷଣାପାଇଁ ଯେତେ ଇଚ୍ଛା ସେତେ ଅର୍ଥ ଖର୍ଚ୍ଚ କରିବାର କ୍ଷମତା ପ୍ରଦାନ କରାଗଲା । ବ୍ରାହେ ଏଥିରେ ରାଜି ହୋଇଗଲେ ।

ସେହି ଦ୍ୱୀପରେ ବ୍ରାହେ ନିର୍ମାଣ କଲେ ଏକ ବିରାଟ ଦୁର୍ଗ । ଦୁର୍ଗର ତଳ ମହଲାରେ ରହିଲା ନିଜର ଛାପାଖାନା । ଛାପାଖାନା ପାଇଁ କାଗଜ ଯୋଗାଇବା ନିମନ୍ତେ କାଗଜ କଳଟିଏ ସ୍ଥାପନ କରାଗଲା ସେଠରେ । ଗୁପ୍ତ କୋଠରି ସଙ୍ଗେ ସଙ୍ଗେ ମାଟି ତଳେ ନିର୍ମିତ ହେଲା ମାନମନ୍ଦିର । ଅନେକ ଯନ୍ତ୍ରପାତି ମଧ୍ୟ ସେଠାରେ ଖଞ୍ଜାଗଲା । ସେଠାରେ ଏପରି ବ୍ୟବସ୍ଥା ରହିଲା ଯେ ବ୍ରାହେ ନିଜ କୋଠରିରେ ବସି ଦୁର୍ଗର ଯେ କୌଣସି କୋଠରିରେ କାମ କରୁଥିବା କର୍ମଚାରୀଙ୍କ ନିକଟକୁ ସଙ୍କେତ ପଠାଇପାରୁଥିଲେ ।

ଏସବୁ ଜାକ ଜମକ ସତ୍ତ୍ୱେ ବ୍ରାହେଙ୍କର ବ୍ୟବହାର ଥିଲା ବଡ କଦର୍ଯ୍ୟ । ତାଙ୍କଠାରେ ଦେଖେଇ ହେବାର ଗୁଣ ଥିଲା ପ୍ରବଳ । ସେ ଥିଲେ ଭାରି ଗର୍ବୀ । ଉକ୍ତ ଦ୍ୱୀପରେ ସେ ନିୟମିତ ଆଡ଼ମ୍ବର ପୂର୍ଣ୍ଣ ଭୋଜିର ଆୟୋଜନ କରୁଥିଲେ । ଭୋଜିରେ ବସି ତାଙ୍କ ଚାରିକଣିଆ ଧାତୁ ତିଆରି ନାକରେ ମଲମ ଘଷି ଚାଲୁଥିଲେ । ରଖିଥିଲେ ଜେପି ନାମଧାରୀ ବାମନଟିଏ । ବାମନଟି ଥିଲା ଗଜମୂର୍ଖ । ବ୍ରାହେଙ୍କ ଚଉକି ପାଖରେ ଭୂଇଁ ଉପରେ ବସି ରହୁଥିଲା ସେ ।

ମଝିରେ ମଝିରେ ଅବୋଧ ଚିତ୍କାର କରୁଥିଲା । କୁକୁର ପାଖକୁ ଅଇଁଠା ଫୋପାଡ଼ିଲାଭଳି ବ୍ରାହେ ଜେପ୍ପି ପାଖକୁ ଅଧାଖିଆ ଖାଦ୍ୟ ଫିଙ୍ଗି ଦେଉଥିଲେ ଓ ସେ ତାକୁ ମନ ଆନନ୍ଦରେ ଖାଇ ନେଉଥିଲା । ବ୍ରାହେଙ୍କର ଧାରଣା ଥିଲା ଯେ ଜେପ୍ପିପାଖରେ ରହିଛି ଏକ ଅଦୃଶ୍ୟ ଶକ୍ତି । ତେଣୁ ସେ ତାକୁ ହାତଛଡ଼ା କରିବାକୁ ଚାହୁଁ ନଥିଲେ ।

ଉକ୍ତ ଦ୍ୱୀପରେ ସବୁ କିଛିଥିଲା । କିନ୍ତୁ ନଥିଲା ବ୍ରାହେଙ୍କର ପ୍ରିୟ ପୋଷା ହରିଣଟି । ତାଙ୍କ ମାହାଲରେ ରହିଥିଲା ସେ । ବ୍ରାହେଙ୍କ ଆଦେଶରେ ହରିଣଟିକୁ ଉକ୍ତ ଦ୍ୱୀପକୁ ପଠାହେଲା । ବାଟରେ ଲାଣ୍ଡସ୍କ୍ରୋନର୍ ଦୁର୍ଗରେ ରାତି ବିତେଇଲା ହରିଣ । କେହି ଜଗୁଆଳି ନ ଥିଲା ବେଳେ ସେ ଖସିଯାଇ ଉଠିଗଲା ଉପର ମହଲାକୁ । ଉପର ମହଲାରେ ରହିଥିଲା ମଦ ଡ୍ରମ୍ । ମନ ଖୁସିରେ ପେଟ ଭରି ମଦ ପିଇଲା ସେ । ମଦ ପିଇସାରି ତଳକୁ ଓହ୍ଲେଇଲାବେଳେ ସିଡ଼ିରେ ତା'ର ଗୋଡ଼ ଖସିଗଲା । ତଳେ କଚାଡ଼ି ହୋଇପଡ଼ି ତା'ର ଗୋଡ଼ ଭାଙ୍ଗିଗଲା ଓ ସେ ସାଙ୍ଗେ ସାଙ୍ଗେ ମରିଗଲା !

ବ୍ରାହେ ବଞ୍ଚିଥିଲେ ୫୫ ବର୍ଷ । ନିଜରକେ ବିଚିତ୍ର ଚରିତ୍ର ସତ୍ତ୍ୱେ ଜଣେ ଜ୍ୟୋତିର୍ବିଜ୍ଞାନୀ ହିସାବରେ ତାଙ୍କର ବହୁତ ଖ୍ୟାତି ଥିଲା ।

❑❑❑



# ବିଜ୍ଞାନ ପାଇଁ ବାଇଆ

ତାଙ୍କ ବାହାଘର ଦିନର କଥା । ଝିଅକୁ ବୋହୂ ବେଶରେ ସଜେଇ ଝିଅର ବାପମା' ଏବଂ ତା'ର ସାଙ୍ଗସାଥୀମାନେ ଚର୍ଚ୍ଚରେ ପହଞ୍ଚିସାରିଥାନ୍ତି । ପୁଅ ପକ୍ଷ ଆଉ ଝିଅ ପକ୍ଷର ଲୋକମାନେ ମଧ୍ୟ ଅପେକ୍ଷା କରିଥାନ୍ତି ବହୁତବେଳୁ । ସମୟ ଗଡ଼ି ଚାଲିଥାଏ । କିନ୍ତୁ ବରର ଦେଖାନାହିଁ । କୁଆଡ଼େ ଗଲା ବର ? କନ୍ୟା ବସିଥାଏ ମନ ଦୁଃଖରେ । ଅତିଥି ମାନେ ବି ମୁହଁ ଓହଳେଇ ବସିଥାନ୍ତି ।

ଖ୍ରୀଷ୍ଟିଆନ୍ ସମ୍ପ୍ରଦାୟରେ ବିଭାଘର ହୁଏ ଚର୍ଚ୍ଚରେ । ଚର୍ଚ୍ଚର ପାଷ୍ଟର୍ ପୁରୋହିତ କାମ କରନ୍ତି । ଡେରି ହୋଇଯିବାରୁ ପାଷ୍ଟର୍ ବିରକ୍ତ ହୋଇ ପାଟି କଲେ । କହିଲେ, ''କୁଆଡ଼େ ଗଲା ସେ ବୈଜ୍ଞାନିକ ଟୋକା ? ତାକୁ ତୁରନ୍ତ ଖୋଜି ଆଣ । ନୋହିଲେ ମୁଁ ଚାଲିଲି । ''

ହଇଚଇ ଖେଳିଗଲା ବରପକ୍ଷର ଲୋକଙ୍କ ଭିତରେ । କେହି ଜଣେ କହିଲା, ''କେଉଁଠି ଥିବ ସେ ? କଣ ଗବେଷଣାଗାରରେ ବସିଛି କି ? ''

ଏ'କଥା ଶୁଣି ଜଣେ ଲୋକ ଧାଇଁଲା ଗବେଷଣାଗାରକୁ । ସତକୁ ସତ ସେଇଠି ଥିଲେ ବୈଜ୍ଞାନିକ ବର ଜଣକ ! ମନଧ୍ୟାନ ଦେଇ ବ୍ୟସ୍ତଥିଲେ ଗବେଷଣାରେ ।

ଲୋକଟି ପଚାରିଲା,'' ତୁମର ପରା ଆଜି ବାହାଘର ? କ'ଣ ସେ'କଥା ପାସୋରି ପକେଇଲ ? ''

ବୈଜ୍ଞାନିକ୍ ଉତ୍ତର ଦେଲେ, '' ବାହାଘର ହେଲେ କ'ଣ ହୋଇଗଲା ? ତୁମ୍ଭେମାନେ କ'ଣ ଚାହୁଁଥିଲ ? କ'ଣ ଗବେଷଣାକୁ ଅଧାରେ ଛାଡ଼ି ଚର୍ଚ୍ଚକୁ ଦଉଡ଼ିଥାଆନ୍ତି ବାହାଟା ହେବି ବୋଲି ? ''

ସେ ଦିନର ଗବେଷଣାକୁ ପୂରାକରିସାରି ସେ ଚର୍ଚ୍ଚରେ ପହଞ୍ଚିଲେ । ବାହାଘର କାମ ତୁଟିଗଲା ।

ସେହି ବୈଜ୍ଞାନିକ ଜଣକ ଥିଲେ ଲୁଇ ପାଶ୍ଚର । ଥିଲେ ଜଣେ ରସାୟନ ବିଜ୍ଞାନୀ ।

କିନ୍ତୁ ଚିକିତ୍ସାବିଜ୍ଞାନକୁ ତାଙ୍କର ଅବଦାନ ବେଶୀ । ସେ'ହିଁ ଦାବି କରିଥିଲେ, ''ଜୀବାଣୁମାନେ ରୋଗ କରିବାପାଇଁ ଦାୟୀ. ଜୀବାଣୁରୁ ଜୀବାଣୁ ଜନ୍ମନିଏ । ଜୀବାଣୁ ମନକୁ ମନ ଜନ୍ମ ନିଏନି । ଖାଦ୍ୟ ଜିନିଷରେ ଜୀବାଣୁର ସଂଖ୍ୟା ବଢ଼ିଗଲେ ତାହା ପଚିସଢିଯାଏ, ନଷ୍ଟ ହୋଇଯାଏ । ତେଣୁ ଜୀବାଣୁଠାରୁ ଦୂରେଇ ରଖିଲେ ଖାଦ୍ୟ ସୁରକ୍ଷିତ ରହେ । ''

ଗୋରୁଗାଈମାନଙ୍କୁ ହେଉଥିବା ବସନ୍ତରୋଗକୁ କୁହାଯାଏ କାଓପକ୍ସ୍ ବା ଗୋବସନ୍ତ । ଏହି ରୋଗରେ ଆକ୍ରାନ୍ତ ଗୋରୁମାନଙ୍କଠାରୁ ପୂଜନେଇ ଟିକା ଦେଲେ ମଣିଷ ମାନଙ୍କୁ ବସନ୍ତରୋଗ ହେବ ନାହିଁ ବୋଲି ପ୍ରଥମେ ସେ ପ୍ରମାଣ କରି ଦେଖେଇଥିଲେ ।

ପାଗଳା କୁକୁର କାମୁଡ଼ିଲେ ହୁଏ ଜଳାତଙ୍କ ରୋଗ । ଜଳାତଙ୍କ ରୋଗ ପାଇଁ ଭୂତାଣୁ ଦାୟୀ ବୋଲି ପ୍ରମାଣ କରିଥିଲେ ପାଶ୍ଚର୍ । ଟିକାଦେଇ ଜଳାତଙ୍କ ରୋଗ ନିବାରଣ କରିପାରିଥିଲେ ସେ । ପାଶ୍ଚର୍ ପ୍ରଥମେ ପାଗଳା କୁକୁରଙ୍କ ପାଟିରୁ ଲାଳ ସଂଗ୍ରହ କରୁଥିଲେ । ସେହି ଲାଳକୁ ନେଇ ନୀରୋଗ ଠେକୁଆମାନଙ୍କୁ ଇଞ୍ଜେକ୍ସନ୍ ଦେଇଦେଉଥିଲେ । ତା'ପରେ ସେହି ଠେକୁଆଙ୍କୁ ପାଗଳା କୁକୁର ସାମନାକୁ ଆଣିଲେ କୁକୁର ଠେକୁଆଙ୍କୁ କାମୁଡ଼ି ପକାଉଥିଲା । ସେ ଦେଖିଲେ ଯେ ଯେଉଁ ଠେକୁଆ ଲାଳ-ଇଞ୍ଜେକ୍ସନ୍ ନେଇଛି, ତାକୁ ଜଳାତଙ୍କ ହେଉନାହିଁ । ଇଞ୍ଜେକ୍ସନ୍ ନେଇ ନ ଥିବା ଠେକୁଆକୁ ହିଁ ରୋଗ ହେଉଛି ।

ଥରେ ଏକ ଦୁର୍ଦ୍ଦାନ୍ତ ପାଗଳା କୁକୁର ଅଣାଗଲା ତାଙ୍କ ପାଖକୁ । ତା' ପାଟିରୁ ଲାଳ ସଂଗ୍ରହ କରିବା କଥା । କିନ୍ତୁ କୁକୁରଟା ବଡ଼ ହଇରାଣ ହରକତ କଲା ତାଙ୍କୁ । ତେଣୁ ସେ ଓ ତାଙ୍କର ଜଣେ ସହକାରୀ କୁକୁରଟିକୁ ବାନ୍ଧିପକେଇଲେ । ପାଶ୍ଚର କାଚ଼ନଳୀଟିଏ ନେଇ କୁକୁର ପାଟିରେ ଭର୍ତ୍ତିକଲେ । କୌଣସି ଡରଭୟ ନ ରଖି ନଳୀର ଅନ୍ୟ ମୁଣ୍ଡରେ ପାଟି ଲଗେଇ ଲାଳ ଶୋଷିଲେ । ଗୋଟିଏ ଠୋପା କୁକୁର ଲାଳ ତାଙ୍କ ପାଟିକୁ ଯାଇଥିଲେ ମରିବା ହିଁ ସାର ହୋଇଥାନ୍ତା । କିନ୍ତୁ ଗବେଷଣା ପାଖରେ ନିଜ ଜୀବନକୁ ତୁଚ୍ଛ ମଣୁଥିଲେ ସେ । ଲାଳ ସଂଗ୍ରହ କରିସାରି ସେ ତାଙ୍କର ସହକାରୀଙ୍କୁ କହିଲେ, '' କାମ ତ ସରିଗଲା । ଏବେ ଚାଲ ଗବେଷଣା ଆରମ୍ଭ କରିଦେବା । ''

ଗୋଟିଏ ଝିଅକୁ ଭଲପାଉଥିଲେ ପାଶ୍ଚର୍ । କିନ୍ତୁ ଝିଅଟି ତାଙ୍କୁ ବାହାହେବାକୁ ମନାକରିଦେଲା । ପାଶ୍ଚର୍ ଝିଅର ମାଆକୁ ଲେଖିଥିଲେ, '' ମୋ' ଚେ଼ହେରା ଦେଖି କେହି ଖୁସିହେବେ ନି – ଏ'କଥା ସତ । କିନ୍ତୁ ମୋର ଯାହା ମନେ ପଡୁଛି, ଯେଉଁମାନେ ମୋ' ସହ ମିଳାମିଶା କରିଛନ୍ତି, ସମସ୍ତେ ମୋତେ ଭଲପାଆନ୍ତି । ''

ପାଷ୍ଟାରଥିଲେ ଜଣେ ଗରିବ ମୋଚିର ପୁଅ । ପେଟ ପୂରେଇ ଖାଇବାକୁ ପାଉ ନଥିଲେ । ଏ' ବିଷୟରେ ଥରେ ପଚାରିବାରୁ ପାଶ୍ଚର୍ କହିଥିଲେ,'' ଭୋକରେ ମୋ' ପେଟ ଜଳୁଥାଏ, କିନ୍ତୁ ମୁଣ୍ଡବଥା ବି ସବୁବେଳେ ଲାଗିରହିଥାଏ । ହୁଏତ ମୁଣ୍ଡର ଯନ୍ତ୍ରଣାଟା ଭୋକର ଯନ୍ତ୍ରଣାକୁ ଘୋଡ଼େଇ ପକାଉଥିବାରୁ ମୁଁ ଭୋକ ସହିନେଇ ପାରୁଥିଲି । ''

ଲଣ୍ଡନ୍‌ର ସେଣ୍ଟଜେମ୍‌ସ୍ ହଲ୍‌ରେ ବସିଥାଏ ଇଣ୍ଟର୍‌ନାସନାଲ୍ ମେଡ଼ିକାଲ୍ କଂଗ୍ରେସ୍ । ଫ୍ରାନସ୍ ସରକାରଙ୍କ ଦ୍ୱାରା ମନୋନୀତ ହୋଇ ପାଶ୍ଚର୍ ସେଥିରେ ଯୋଗଦେବା ପାଇଁ ଗଲେ । ସେ ହଲ ଭିତରେ ପଶିବାମାତ୍ରେ ସମସ୍ତେ ଠିଆ ହୋଇପଡ଼ି ହାତ ତାଳି ଦେଲେ । କିନ୍ତୁ କାହା ଉଦ୍ଦେଶ୍ୟରେ ଏ' ସମ୍ମାନ ? ତାଙ୍କୁ କଢେଇ ନେଉଥିବା ଲୋକଟିକୁ ପାଶ୍ଚର୍ ପଚାରିଲେ,'' ପ୍ରିନ୍‌ସ୍ ଅଫ୍ ୱେଲ୍‌ସ୍ ଆସୁଛନ୍ତି ବୋଧହୁଏ । ମୋର ଟିକିଏ ଡେରି ହୋଇଗଲା । ମୁଁ ସେଥିପାଇଁ ଲଜ୍ଜିତ । ''

ସେହି ସେ ଲୁଇପାଶ୍ଚର୍ । ନମ୍ର, ବିନୟୀ । ମାତ୍ର ୪୭ ବର୍ଷ ବୟସରେ ପକ୍ଷାଘାତ ରୋଗଭୋଗି ତାଙ୍କର ଅଧା ଅଙ୍ଗ ଅଚଳ ହୋଇଯାଇଥିଲା । ତଥାପି ମୃତ୍ୟୁପର୍ଯ୍ୟନ୍ତ ସେ ଗବେଷଣା କାର୍ଯ୍ୟ ଚଳେଇ ରଖିଥିଲେ ।

ସେ ସବୁବେଳେ କହୁଥିଲେ, ''ଈଶ୍ୱର ବିଶ୍ୱାସ ବିଜ୍ଞାନଠାରୁ ବହୁ ଉଚ୍ଚରେ । ମୋ ଈଶ୍ୱର ବିଶ୍ୱାସ ହିଁ ଗବେଷଣା ପାଇଁ ମୋତେ ପ୍ରେରଣା ଦେଇଥାଏ । ''

❑❑❑



# ମୁଣ୍ଡ ବାହାରେ ଗାନ୍ଧୀଟୋପି ଭିତରଟା ଫମ୍ପା

ସାର୍ ଚନ୍ଦ୍ରଶେଖର ଭେଙ୍କଟ୍ ରାମନ୍ ବିଜ୍ଞାନରେ ନୋବେଲ ପୁରସ୍କାର ପାଇବାରେ ଏସିଆର ସର୍ବପ୍ରଥମ ବିଜ୍ଞାନୀ । ନୋବେଲ୍ ପୁରସ୍କାରରୁ ଯେଉଁ ଅର୍ଥ ମିଳିଥିଲା, ତାକୁ ଗବେଷଣାଗାର ପ୍ରତିଷ୍ଠା ଓ ଗବେଷଣାଗାର ପାଇଁ କେଇଶହ ହୀରା କିଣିବାରେ ସେ ଖର୍ଚ୍ଚ କରିଦେଇଥିଲେ । ଆଲୋକର ବିଚ୍ଛୁରଣ ସଂକ୍ରାନ୍ତ ତାଙ୍କର ଗବେଷଣା ପାଇଁ ସେ ପାଇଥିଲେ ଏହି ପୁରସ୍କାର । ତାଙ୍କ ଗବେଷଣାର ଫଳାଫଳ ପ୍ରକାଶିତ ହେଲା ୧୯୨୮ ମସିହାରେ । ତାଙ୍କୁ ନୋବେଲ୍ ପୁରସ୍କାର ମିଳିଲା ୧୯୩୦ ମସିହରେ । ଗବେଷଣାର ସିଦ୍ଧାନ୍ତ ପ୍ରକାଶିତ ହେବାର ମାତ୍ର ଦୁଇବର୍ଷପରେ ଉକ୍ତ ପୁରସ୍କାର ପାଇବା ନୋବେଲ ପୁରସ୍କାର ଇତିହାସରେ କାଁ ଭାଁ ଘଟିଥାଏ ।

କଲିକତା ବିଶ୍ୱବିଦ୍ୟାଳୟର କୁଳପତି ସେହି ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ବିଭାଗରେ ପ୍ରଫେସର୍ ପଦବୀରେ ଯୋଗଦାନ କରିବାକୁ ରାମନ୍‌ଙ୍କୁ ପ୍ରସ୍ତାବ ଦେଲେ । କିନ୍ତୁ ସେତେବେଳେ ତ ଇଂରେଜମାନଙ୍କର ରାଜୁତି । ଇଂରେଜମାନେ ନିୟମ କରିଥିଲେ ଯେ ଭାରତ ବାହାରେ ତାଲିମ ନେଇ ନ ଥିଲେ କେହି ପ୍ରଫେସର୍ ହୋଇ ପାରିବେ ନାହିଁ । କିନ୍ତୁ ରାମନ୍‌ଙ୍କର ସ୍କୁଲ ଆଉ କଲେଜ ଶିକ୍ଷା ସମାପ୍ତ ହୋଇଥିଲା ଏହି ଭାରତ ଭୂଇଁରେ ।

ସେ ଯେତେବେଳେ ସ୍ନାତକ ଡିଗ୍ରୀ ହାସଲ କଲେ, ତାଙ୍କର ଶିକ୍ଷକମାନେ ଇଂଲଣ୍ଡ ଯିବାକୁ ତାଙ୍କୁ ପରାମର୍ଶ ଦେଲେ । ସେଠାରେ ଉଚ୍ଚତର ଶିକ୍ଷାପାଇଁ ପର୍ଯ୍ୟାପ୍ତ ସୁଯୋଗ ଥିଲା । ଇଂଲଣ୍ଡ ଯିବାପାଇଁ ଆୟୋଜନରେ ଲାଗିପଡ଼ିଲେ ରାମନ୍ ।

କିନ୍ତୁ କାଳ ହେଲା ଡାକ୍ତରୀ ସାର୍ଟିଫିକେଟ୍ । ମାଡ୍ରାସ୍‌ର ସିଭିଲ୍ ସର୍ଜନ ରାମନ୍‌ଙ୍କୁ ପରୀକ୍ଷା କରି ମତ ଦେଲେ ଯେ ରାମନ୍ ଇଂଲଣ୍ଡର ଥଣ୍ଡା ସମ୍ଭାଳି ପାରିବେନି । ତେଣୁ ଇଂଲଣ୍ଡ ଯିବା ନୋହିଲା । ରାମନ୍ 'ବିଲାତ ଫେରନ୍ତା'ର ଗୌରବ ଅର୍ଜନ କରିପାରିଲେ ନି ।

ବିଦେଶରୁ ତାଲିମ ନେଇ ନ ଥିବାରୁ ପ୍ରଫେସର୍ ହୋଇ ନପାରିବାର ଖବର ପାଇଲେ ରାମନ୍ । ସେ ବି ନିଜ ଜିଦ୍‌ରେ ଅଟଳ । ପ୍ରଫେସର୍ ନ ହେବେ ପଛେ, କିନ୍ତୁ ଏ'

ସର୍ତ୍ତ ପାଳନ କରିବେନି କି ତାଲିମ ନେବାପାଇଁ ଇଂଲଣ୍ଡ ଯିବେ ନି । ବଡ଼ ଅଡୁଆରେ ପଡ଼ିଲେ କୁଳପତି । ବିଶ୍ୱବିଦ୍ୟାଳୟର ନିୟମ ବଦଳିଲା । ରାମନ୍ ପ୍ରଫେସର୍ ପଦରେ ନିଯୁକ୍ତି ପାଇଲେ । ପରେ କୁଳପତି ସାର୍ ଆଶୁତୋଷ ମୁଖାର୍ଜିଙ୍କର ପ୍ରରୋଚ଼ନାରେ ସେ ବିଦେଶ ଗଲେ । ହେଲେ ଟ୍ରେନିଂ ନେବା ପାଇଁ ନୁହେଁ । ଅକ୍ସଫୋର୍ଡ଼ଠାରେ ଆୟୋଜିତ ହୋଇଥାଏ 'ୟୁନିଭରସିଟି କଂଗ୍ରେସ୍' । କଲିକତା ବିଶ୍ୱବିଦ୍ୟାଳୟର ପ୍ରତିନିଧି ରୂପେ ସେଥିରେ ଯୋଗଦେବା ନିମନ୍ତେ ରାମନ୍‌ଙ୍କୁ ପଠାଯାଇଥିଲା ।

ନିଜର ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ ରାମନ୍ ଲେଖିଥିଲେ, '' ଶ୍ରୋତାମାନଙ୍କ ଭିତରେ ବସିଥାନ୍ତି ବିଖ୍ୟାତ ଇଂରେଜ ବୈଜ୍ଞାନିକ ଜେ. ଜେ. ଥମ୍‌ସନ୍, ଅର୍ନେଷ୍ଟ ରଥରଫୋର୍ଡ୍, ଏବଂ ଉଇଲିୟମ୍ ବ୍ରାଗ୍ । ମୁଁ ପଛଧାଡ଼ିରେ କଣପଟିଆ ହୋଇ ବସିଥାଏ । ହଠାତ୍ ମୋତେ ଚିହ୍ନି ପକେଇଲେ ରଥରଫୋର୍ଡ୍ । ତାଙ୍କ ପାଖରେ ଆସି ବସିବାପାଇଁ ମୋତେ ନିମନ୍ତ୍ରଣ ଜଣେଇଲେ ସେ । ମୁଁ ଏଥିରେ ବଡ଼ ଅଭିଭୂତ ହୋଇପଡ଼ିଲି । ଏହା ମୋ ପାଇଁ ଏକ ଚ଼ିରସ୍ମରଣୀୟ ଘଟଣା ହୋଇ ରହିଗଲା । ''

ରାମନ୍ ଯେଉଁ ପାଠ୍ୟପୁସ୍ତକ ପଢୁଥିଲେ ସେଥିରେ ନିଜ ମନ୍ତବ୍ୟ ଦେବା ଥିଲା ତାଙ୍କର ଅଭ୍ୟାସ । ବହିର ମାର୍ଜିନ୍‌ରେ ଆବଶ୍ୟକ ନୋଟ୍ ଲେଖିବା ଏବଂ ଗୁରୁତ୍ୱପୂର୍ଣ୍ଣ ବାକ୍ୟ ତଳେ ଗାର ପକେଇବାକୁ ମଧ୍ୟ ସେ ଭୁଲୁ ନ ଥିଲେ । ତେବେ ବହିଗୁଡ଼ିକ ବିଷୟରେ ତାଙ୍କର ମତାମତ ଥିଲା ତିନି ପ୍ରକାରର — 'ଚ଼ମତ୍କାର', 'ସାଧାରଣ ', ଏବଂ ' ବାଜେ' । ସେ ଥରେ କହିଥିଲେ, '' ପାଠ୍ୟପୁସ୍ତକ ଗୁଡ଼ିକୁ ମୁଁ ଦୁଇ ଆଖିରେ ଦେଖିପାରେନି । ମୋ' ମତରେ ପାଠ୍ୟପୁସ୍ତକ ପଢ଼ିବା ଏକ ବୋକାମି । କିନ୍ତୁ ତାହାଠାରୁ ବଡ଼ ବୋକାମି ହେଉଛି ପାଠ୍ୟପୁସ୍ତକ ଲେଖିବା ।''

ସ୍ୱାଧୀନ ଭାରତରେ ବିଜ୍ଞାନର ଦୁର୍ଦ୍ଦଶା ଏବଂ ବିଜ୍ଞାନର ବିକାଶରେ ନାଲିଫିତାର ଦୌରାତ୍ମ୍ୟ ଦେଖି ସେ ବଡ଼ ଦୁଃଖିତ ହୋଇଥିଲେ । ନୂଆ ନୂଆ ଗଜୁରୁଥିବା ରାଜନୀତିଜ୍ଞମାନଙ୍କ ଦୋମୁହାଁ ବ୍ୟବହାରକୁ ଲକ୍ଷ୍ୟକରି ରାମନ୍ ମନ୍ତବ୍ୟ ଦେଉଥିଲେ, ''ଏବକାର ଭାରତରେ ସଫଳତା ଅର୍ଜନ କରିବାପାଇଁ ଫମ୍ପା ମୁଣ୍ଡଟିଏ ହେଲେ ଚ଼ଳିଯିବ । କିନ୍ତୁ ମୁଣ୍ଡ ଉପରେ ଦରକାର ଗାନ୍ଧୀ ଟୋପିଟିଏ । ''

ନିଜ ମୃତ୍ୟୁର ଅଳ୍ପ କିଛିଦିନ ପୂର୍ବରୁ ସେ ଦେଇଥିବା ମନ୍ତବ୍ୟ ବଡ଼ ମର୍ମସ୍ପର୍ଶୀ । ସେ କହିଥିଲେ,'' ମୋ' ଜୀବନଟା କେଉଁ କାମର ହୋଇପାରିଲାନି । ଏହି ଦେଶରେ ସଚ୍ଚା ବିଜ୍ଞାନ ଗଢ଼ିବା ପାଇଁ ଚ଼େଷ୍ଟା କରିବି ବୋଲି ମନରେ ବଡ଼ ଆଶା ବାନ୍ଧିଥିଲି । କିନ୍ତୁ ଦେଖୁଛି ଦେଶର ବୈଜ୍ଞାନିକ ଗୋଷ୍ଠୀ ପାଶ୍ଚାତ୍ୟ ବିଜ୍ଞାନର ଗୋଡ଼ାଣିଆ ସାଜିଛନ୍ତି । ଭାରତର ଚାରିଆଡ଼େ ସେଇ ଗୋଡାଣିଆ ମାନଙ୍କ ଶିବିର ହିଁ ମୋ ଆଖିରେ ପଡୁଛି । ''



# ଡାକ୍ତରାଣୀରୁ ମାଷ୍ଟରାଣୀ

'ମୋଣ୍ଟେସୋରି' ହେଉଛି ଜଣଙ୍କର ନାଁ । ତାଙ୍କର ପୂରା ନାଁଟା ହେଉଛି 'ମାରିଆ ମୋଣ୍ଟେସୋରି । ସେ ଥିଲେ ଜଣେ ଡାକ୍ତରାଣୀ । ଇଟାଲୀ ଦେଶରେ ୧୮୭୦ ମସିହା ଅଗଷ୍ଟମାସ ୩୧ ତାରିଖରେ ସେ ଜନ୍ମ ହୋଇଥିଲେ । ଡାକ୍ତରି ପଢିବାପାଇଁ ବଡ଼ ଇଚ୍ଛା ଥିଲା ତାଙ୍କର । କିନ୍ତୁ ସେତେବେଳେ ଝିଅମାନେ କେହି ଡାକ୍ତରି ପଢୁ ନଥିଲେ । ତେଣୁ ତାଙ୍କର ଡାକ୍ତରି ପଢ଼ିବା ଝୁଙ୍କ୍ ଦେଖି ସମସ୍ତେ ବିରୋଧ କଲେ । ହେଲେ ମୋଣ୍ଟେସୋରି କିଛି ଶୁଣିଲେନି । ସେ ଡାକ୍ତରି ପଢ଼ିଲେ । ପୁଣି ବେଶୀ ନମ୍ବର ରଖି ରୋମ୍ ବିଶ୍ୱବିଦ୍ୟାଳୟରୁ ଡାକ୍ତରି ପାସ୍ କଲେ ।

ଡାକ୍ତରି ପାସ୍ କଲାପରେ ତାଙ୍କୁ ଗୋଟିଏ ଚାକିରି ମିଳିଗଲା । ସେ ଯେଉଁ ଅନୁଷ୍ଠାନରେ ଚାକିରି କଲେ ସେଠାରେ ରହୁଥାନ୍ତି ଅନେକ ପିଲା । ସେହି ପିଲାମାନଙ୍କର ମାନସିକ ବିକାଶ ଠିକ୍ ଭାବରେ ହୋଇନଥାଏ । ଲୋକମାନେ ଧରିନେଇଥାଆନ୍ତି ଯେ ମାନସିକ ବିକାଶ ହୋଇ ନ ଥିବା ପିଲାମାନଙ୍କୁ ଶିକ୍ଷା ଦେବା ପାଇଁ ଚେଷ୍ଟା କରିବା ବୃଥା । ଏପରିକି ଜାମାପଟା ପିନ୍ଧିବା, ଜୋତା ମୋଜା ପିନ୍ଧିବା, ହାତରେ ଖାଇ ଶିଖିବା, ଝାଡ଼ା ଯାଇସାରି ଶୌଚ୍ ହେବାଭଳି ସାଧାରଣ ବିଷୟ ବି କେହି ସେମାନଙ୍କୁ ବତାଉ ନ ଥାଏ । ଖେଳିବାପାଇଁ ଖେଳନାଟିଏ ମଧ୍ୟ ଦିଆଯାଉ ନଥାଏ ସେମାନଙ୍କୁ ।

ଏହା ଦେଖି ମୋଣ୍ଟେସୋରିଙ୍କ ମନରେ ବଡ଼ ଦୁଃଖ ହେଲା । ସେହିପିଲାମାନଙ୍କୁ କିପରି ଶିକ୍ଷା ଦିଆଯାଇପାରିବ, ସେ ଦିଗରେ ମୋଣ୍ଟେସୋରି ଅନେକ ଭାବିଲେ । ବହୁତ ଭାବିଚିନ୍ତି ସେ ତିଆରି କଲେ କିସମ କିସମର ଖେଳନା । ଖେଳନାରେ ଦେଲେ ଭଳିକି ଭଳି ରଙ୍ଗ । ଶବ୍ଦ ବାରିବା, ଗନ୍ଧ ବାରିବା, ଏବଂ ସ୍ୱାଦ ବାରିବା ବିଷୟ ମଧ୍ୟ ଶିକ୍ଷା ଦେଲେ ସେ । ଖେଳନା ଜୋତାରେ କଣାକରି କିପରି ଜୋତାର ଫିତା ବନ୍ଧାଯାଏ, ତାହା ବତେଇ ଦେଲେ । ହିସାବ କିତାବ କରିବା ମଧ୍ୟ ଶିଖେଇଲେ । ଯେଉଁ ପିଲାର ଯାହା ପସନ୍ଦ, ସେ ତାହା ଶିଖିଲା । ତେଣୁ ଶିଖିବାଟା ପାଲଟିଗଲା ଏକ ଖେଳ ।

ମୋଣ୍ଟେସୋରିଙ୍କର ଏହି ପରୀକ୍ଷା ସଫଳ ହେଲା । ତେଣୁ ୩ ରୁ ୬ ବର୍ଷ ବୟସର ପିଲାମାନଙ୍କ ପାଇଁ ରୋମ୍ ସହରରେ ସେ ଗୋଟିଏ ସ୍କୁଲ୍ ଖୋଲିଲେ । ସ୍କୁଲର ନାଁ ରଖିଲେ 'କାସା ଡି ବାମ୍ବିନି' ଅର୍ଥାତ୍ ' ଶିଶୁ ମନ୍ଦିର ' ।

ପ୍ରକୃତରେ ଦେଖିଲେ ସ୍କୁଲଟି ଥିଲା ଶିଶୁମାନଙ୍କ ପାଇଁ ଏକ ମନ୍ଦିର ଭଳି । ପିଲାଏ ନିଜ ମନଇଚ୍ଛାରେ ଖେଳୁଥିଲେ, ବୁଲୁଥିଲେ । ମନ ଖୁସିରେ ଗୀତ ଗାଉଥିଲେ । ଦୁଷ୍ଟାମି କଲେ କେହି ଗାଳି ଦେଉ ନଥିଲେ । ମାଡ଼ ମାରୁ ନ ଥିଲେ । ନିଜ ବାପ ମା'ଙ୍କ ଅପେକ୍ଷା ସ୍କୁଲର ଶିକ୍ଷକମାନେ ପିଲାଙ୍କୁ ବେଶୀ ଶରଧା କରୁଥିଲେ । ସ୍ନେହ ଦେଖାଉଥିଲେ । କହିବାକୁ ଗଲେ ସବୁଦିଗରୁ ପିଲାଏ ଥିଲେ ସ୍ୱାଧୀନ । ଏହା ଫଳରେ ପିଲାମାନଙ୍କର ବହୁତ ଲାଭ ହେଉଥିବାର ଜଣା ପଡ଼ିଲା ।

ଏ' ଖବର ଲୁଚି ରହିପାରିଲା ନାହିଁ । ମୋଣ୍ଟେସୋରିଙ୍କ ଶିକ୍ଷା ଦେବାର କୌଶଳର ଆଦର ବଢ଼ି ବଢ଼ି ଚାଲିଲା । ଲୋକେ ତାଙ୍କୁ ଭୂରି ଭୂରି ପ୍ରଶଂସା କଲେ । ଇଟାଲୀର ଚାରିଆଡ଼େ ଖୋଲିଲା ମୋଣ୍ଟେସୋରି ସ୍କୁଲ୍ । ସୁଇଜରଲ୍ୟାଣ୍ଡ, ଇଂଲଣ୍ଡ ଏବଂ ଆମେରିକାରେ ମଧ୍ୟ ଏହି ଧରଣର ସ୍କୁଲ୍‌ମାନ ବସିବାରେ ଲାଗିଲା ।

ମାରିଆ ମୋଣ୍ଟେସୋରି ସିନା ଥିଲେ ଡାକ୍ତରାଣୀ । କିନ୍ତୁ ପିଲାଙ୍କ ମନ ବୁଝି ସେମାନଙ୍କୁ ପଢ଼େଇବାରେ ସେ ଥିଲେ ଧୁରନ୍ଧର । ତେଣୁ ୧୯୨୨ ମସିହାରେ ଇଟାଲୀ ସରକାର ଡାକ୍ତର ମାରିଆ ମୋଣ୍ଟେସୋରିଙ୍କୁ ସ୍କୁଲ୍ ଇନ୍‌ସିପେକ୍ଟର ରୂପେ ନିଯୁକ୍ତ କଲେ । ଡାକ୍ତରାଣୀରୁ ସେ ହୋଇଗଲେ ମାଷ୍ଟରାଣୀ ।

୧୯୩୪ ମସିହାରେ ଇଟାଲୀର ଜନସାଧାରଣଙ୍କ ଉପରେ ସରକାରଙ୍କ ଦ୍ୱାରା ଅତ୍ୟାଚାର ଆରମ୍ଭ ହୋଇଗଲା । ତେଣୁ ମୋଣ୍ଟେସୋରି ଇଟାଲୀ ଛାଡ଼ି ସ୍ପେନ୍ ପଳେଇ ଆସିଲେ । ସେ ମଧ୍ୟ ଭାରତ ଏବଂ ଶ୍ରୀଲଙ୍କାରେ କିଛି କାଳ ରହିଥିଲେ । ପରେ ସ୍ଥାୟୀଭାବରେ ରହିଗଲେ ହଲାଣ୍ଡରେ । ମୋଣ୍ଟେସୋରି ଅନେକ ବହି ଲେଖିଛନ୍ତି । 'ଶିଶୁ ଅବସ୍ଥାର ଗୋପନ କଥା' ବହିଟିର ଆଦର ଖୁବ୍ ବେଶୀ ।

୧୯୫୨ ମସିହାରେ ହଲାଣ୍ଡଠାରେ ମୃତ୍ୟୁବରଣ କଲେ ମୋଣ୍ଟେସୋରି । ୧୯୭୦ ମସିହାରେ ପାଳିତ ହେଲା ତାଙ୍କ ଜନ୍ମର ଶତ ବାର୍ଷିକୀ । ମୋଣ୍ଟେସୋରିଙ୍କୁ ମନେ ରଖିବାପାଇଁ ସେହି ବର୍ଷଟିକୁ ଜାତିସଂଘ 'ଆନ୍ତର୍ଜାତୀୟ ଶିକ୍ଷା ବର୍ଷ ' ରୂପେ ଘୋଷଣା କରିଥିଲେ ।

ଇଟାଲୀ ମଧ୍ୟ ନିଜ ଦେଶର ଏହି ସୁଯୋଗ୍ୟା କନ୍ୟାଙ୍କୁ ଭୁଲି ପାରି ନି । ୧୯୦୦ ମସିହାରେ ଇଟାଲୀ ଦେଶ ୧୦୦୦ ଲିରା ( ଇଟାଲୀରେ ପ୍ରଚଳିତ ମୁଦ୍ରାକୁ ଲିରା ବୋଲି କୁହାଯାଏ । ) ର ଯେଉଁ ନୋଟ୍ ଛପାଇଥିଲା, ତା'ର ଗୋଟିଏ ପଟେ ରହିଥିଲା ମୋଣ୍ଟେସୋରିଙ୍କର ଛବି । ନୋଟ୍‌ଟିର ଅନ୍ୟପଟେ ରହିଥିଲା ଖାତାରେ କିଛି ଲେଖୁଥିବା ଏକ ଶିଶୁର ଚିତ୍ର ।





# ସତ କହି ହଟହଟା

ନିକୋଲାସ୍ କୋପେରନିକସ୍ ଥିଲେ ଜଣେ ଜ୍ୟୋତିର୍ବିଜ୍ଞାନୀ । ଗ୍ରହ ନକ୍ଷତ୍ରଙ୍କ ଗତିବିଧି ଲକ୍ଷ୍ୟ କରିବା ଥିଲା ତାଙ୍କର ସଉକ । ସେ ହେଉଛନ୍ତି ପୋଲାଣ୍ଡର୍ ଅଧିବାସୀ । କୋପେରନିକସ୍‌ଙ୍କ ପୂର୍ବରୁ ଧାରଣା ଥିଲା ଯେ ପୃଥିବୀ ସ୍ଥିର । ପୃଥିବୀକୁ କେନ୍ଦ୍ରକରି ଘୂରୁଛନ୍ତି ସୂର୍ଯ୍ୟ,ଚ଼ନ୍ଦ୍ର, ମଙ୍ଗଳ, ବୃହସ୍ପତି ଆଦି । ଏହା ଥିଲା ଟଲେମିଙ୍କର ମତ । ଅବଶ୍ୟ ପିଥାଗୋରାସ୍ କହୁଥିଲେ ଓଲଟା କଥା । ପିଥାଗୋରାସ୍‌ଙ୍କ ତତ୍ତ୍ୱଥିଲା – ସୂର୍ଯ୍ୟ ସ୍ଥିର, ପୃଥିବୀ ଏବଂ ଅନ୍ୟ ଗ୍ରହମାନେ ସୂର୍ଯ୍ୟ ଚାରିପଟେ ପରିଭ୍ରମଣ କରୁଛନ୍ତି । କୋପେରନିକସ୍ ପ୍ରଥମେ ଟଲେମିଙ୍କ ମତକୁ ଗ୍ରହଣ କରିଥିଲେ ମଧ୍ୟ, ପରେ ପିଥାଗୋରାସ୍‌ଙ୍କ ସହ ଏକମତ ହୋଇଥିଲେ । ଶ୍ରେଣୀରେ ପଢ଼ାଉଥିବାବେଳେ ଜଣେ ଛାତ୍ରର ପ୍ରଶ୍ନକୁ ଏଡ଼ି ଦେଇ ନପାରି ସେ ନିଜର ଗବେଷଣା ଆରମ୍ଭ କରିଦେଲେ ଓ ପିଥାଗୋରାସ୍‌ଙ୍କ ତଥ୍ୟକୁ ପ୍ରମାଣ କରିଦେଲେ ।

କିନ୍ତୁ ଧର୍ମଯାଜକମାନେ ପୃଥିବୀର ଏହି ‘ଅକ୍ଷମତା ’କୁ ଗ୍ରହଣ କରିବାକୁ ପ୍ରସ୍ତୁତ ନ ଥିଲେ । ପୃଥିବୀ ସୂର୍ଯ୍ୟ ଚାରିପଟେ ବୁଲିବା ସେମାନଙ୍କ ମନକୁ ପାଇଲାନି । ତେଣୁ କୋପେରନିକସ୍‌ଙ୍କ ମତକୁ ସେମାନେ ମାନି ନେଇଥାନ୍ତେ ଅବା କିପରି ? ସେମାନେ କୋପେରନିକସ୍‌ଙ୍କୁ ଜନସାଧାରଣଙ୍କ ଆଗରେ ଅପମାନ ଦେବାକୁ ଏକ ଫିକର ପାଞ୍ଚିଲେ । ସେମାନେ ଯୋଗାଡ଼କଲେ କେତେଜଣ ଭାଣ୍ଡ । ଭାଣ୍ଡମାନଙ୍କୁ ପଇସା ଦେଇ ଗାଁ ଗାଁ ବୁଲେଇଲେ । ଭାଣ୍ଡମାନେ ଚାରିଆଡ଼େ ବୁଲି ବିକୃତ ଅଙ୍ଗ ଭଙ୍ଗୀକରି ଗୀତଗାଇ କୋପେରନିକସ୍‌ଙ୍କ ‘ପାଗଳାମି’ କଥା ପ୍ରଚାର କରିବାରେ ଲାଗିଲେ । ସୂର୍ଯ୍ୟ ଚାରିପଟେ ପୃଥିବୀ ଘୂରୁଥିବା କଥା କହିବାରୁ ଏହିପରି ଭାବରେ ବହୁତ ଅପଦସ୍ଥ କରାଗଲା ତାଙ୍କୁ । କେହି କେହି କୋପେରନିକସ୍‌ଙ୍କ ଭଳି ନିଜକୁ ସଜେଇ କୌତୁକ ନୃତ୍ୟ ମଧ୍ୟ କଲେ । ଏ’କଥା କୋପେରନିକସ୍‌ଙ୍କ କାନରେ ପଡ଼ିଲା । ତାହା ଶୁଣି ସେ କହିଲେ, “ ସେମାନଙ୍କର ଯାହା ଇଚ୍ଛା, ତାହା ସେ କରୁଥାଆନ୍ତୁ । ଆକାଶର ଗ୍ରହନକ୍ଷତ୍ରମାନ ତ ସେହି ନିର୍ବୋଧମାନଙ୍କ ନିନ୍ଦା ଆଉ ପ୍ରଶଂସାର ଦାସ ନୁହଁନ୍ତି ।ତେଣୁ ଏଥିରେ ମୋର ମନ ଦୁଃଖ କରିବାର କଅଣ ଅଛି ?”

ତେବେ କୋପେରନିକସ୍‌ଙ୍କୁ ଯେତେବେଳେ ୬୯ ବର୍ଷ ବୟସ, ସେ ନିଜର ତଥ୍ୟ ବିଷୟ ଲେଖି ବହିଟିଏ ପ୍ରକାଶ କରିବାକୁ ମନସ୍ଥ କଲେ । ବହିଟିଏ ଲେଖିଲେ ମଧ୍ୟ ।

ଧର୍ମଯାଜକମାନଙ୍କ ମନରେ କଷ୍ଟ ନ ଦେବା ନିମନ୍ତେ ବହିଟିକୁ ଉତ୍ସର୍ଗ କଲେ ପୋପ୍‌ଙ୍କ ନାମରେ ।

ତେବେ ସେତେବେଳେ ତ ବୟସ ହୋଇଯାଇଥାଏ । ତେଣୁ ବହିଟିର ପ୍ରକାଶନ ଦାୟିତ୍ୱ ଦେଲେ ତାଙ୍କର ବନ୍ଧୁ ବିଶପ୍ ଟାଇଡ୍‌ମ୍ୟାନ୍ ଜିସିୟସ୍‌ଙ୍କୁ । ବହିଟି ପ୍ରକାଶିତ ହେଲା ।

କିନ୍ତୁ ସେତେବେଳକୁ କୋପେର୍‌ନିକସ୍ ମୃତ୍ୟୁ ଶଯ୍ୟାରେ । କିଛି ସପ୍ତାହ ଆଗରୁ ତାଙ୍କର ଗୋଡ଼ହାତ ଅଚଳ ହୋଇପଡ଼ିଥାଏ । ବହିଟିକୁ ନିଜହାତରେ ଧରିବା କି ଖୋଲିବା ପାଇଁ ସେ ସକ୍ଷମ ନ ଥିଲେ । ତେଣୁ ତାଙ୍କ ଆଖି ଆଗରେ ବହିଟିକୁ ଖୋଲିକରି ଧରାଗଲା । ସେ କିଛି କିଛି ପଢ଼ିବାକୁ ଚେଷ୍ଟା କଲେ । ହଠାତ୍ ତାଙ୍କର ଦୃଷ୍ଟି ସ୍ଥିର ହୋଇଗଲା ପ୍ରକାଶକଙ୍କ ମନ୍ତବ୍ୟଟିକୁ ପଢ଼ି । ସେଥିରେ ଲେଖାଥିଲା, '' ପୁସ୍ତକଟିରେ କୌଣସି ବୈଜ୍ଞାନିକ ସତ୍ୟତାର ବର୍ଣ୍ଣନା ନାହିଁ । 'ପିଲାଳିଆ ସଉକ' ମେଣ୍ଟେଇବା ନିମନ୍ତେ ବହିଟି ଲେଖା ହୋଇଛି । ''

ଏହା ପଢି ଅତି ଭାଙ୍ଗି ପଡ଼ିଲେ କୋପେର୍‌ନିକସ୍ । ତାଙ୍କ ମନପ୍ରତି ଏହା ଥିଲା ଏକ ଦାରୁଣ ଧକ୍‌କା । ଏହି ଆଘାତ ଏତେ ପ୍ରଚଣ୍ଡ ଥିଲା ଯେ ସେହିଦିନ କୋପେର୍‌ନିକସ୍‌ଙ୍କ ପ୍ରାଣବାୟୁ ଉଡ଼ିଗଲା ।

କୋପେର୍‌ନିକସଙ୍କ ମରିବାର ୫୦ ବର୍ଷପରେ ଇଟାଲୀର ବୈଜ୍ଞାନିକ ଗାଲିଲିଓ ମଧ୍ୟ କୋପେର୍‌ନିକସ୍‌ଙ୍କ ମତକୁ ଦୋହରାଇଲେ । ତେଣୁ 'ଧର୍ମଦ୍ରୋହୀ' ବୋଲି ତାଙ୍କ ନାଁରେ ଦୁର୍ନାମ ରଟିଲା । ତାଙ୍କୁ ବନ୍ଦୀ କରାଗଲା । ବନ୍ଦୀଶାଳାରେ ଥିଲାବେଳେ ତାଙ୍କୁ ଅଖାଦ୍ୟ ଦେଇ ଅନ୍ଧ କରି ଦିଆଯାଇଥିଲା ।

ଇଟାଲୀର ଦାର୍ଶନିକ ଲିଓନାର୍ଡୋ ବ୍ରୁନୋ ମଧ୍ୟ କୋପେର୍‌ନିକସ୍‌ଙ୍କ ମତକୁ ସମର୍ଥନ କରିଥିଲେ । ସେଥିପାଇଁ ବ୍ରୁନୋଙ୍କୁ ଜିଅନ୍ତା ପୋଡ଼ିଦିଆଯାଇଥିଲା । ନିଆଁରେ ପୋଡ଼ି ହୋଇଯାଉଥିଲା ବେଳେ ସେ କହିଥିଲେ, ''ଯାହା ସତ୍ୟ, ତାହା ଦିନେ ନା ଦିନେ ଲୋକଲୋଚନକୁ ଆସିବ । ''

ଏବେ ସତ୍ୟ ପ୍ରମାଣିତ ହୋଇଛି । ସୂର୍ଯ୍ୟ ରହିଛି ସ୍ଥିର । ପୃଥିବୀ ଚକ୍‌କର କାଟୁଛି ସୂର୍ଯ୍ୟ ଚାରିପଟେ । କିନ୍ତୁ ଏହିକଥା କହିବାରୁ କି ହନ୍ତସନ୍ତ ନ ହୋଇଛନ୍ତି କୋପେର୍‌ନିକସ୍, ଗାଲିଲିଓ ଏବଂ ବ୍ରୁନୋ ?





# ଲାଜକୁଳା ବୈଜ୍ଞାନିକ

ହେନ୍‌ରି କ୍ୟାଭେଣ୍ଡିସ୍ ଥିଲେ ଜଣେ ନାମଜାଦା ପଦାର୍ଥ ବିଜ୍ଞାନୀ ଏବଂ ରସାୟନ ବିଜ୍ଞାନୀ । ଜନ୍ମ ହୋଇଥିଲେ ଇଂଲଣ୍ଡରେ । ଉଦଜାନ ଏବଂ ଅମ୍ଳଜାନକୁ ନେଇ ସେ ହିଁ ପ୍ରଥମ କରି ଜଳ ତିଆରି କରିବାରେ ସଫଳ ହୋଇଥିଲେ । ସେ ହିଁ ଆବିଷ୍କାର କରିଥିଲେ ଯେ ଉଦଜାନ ଗ୍ୟାସ୍ ହେଉଛି ଖୁବ୍ ହାଲୁକା ।

ବଡ଼ ଲାଜକୁଳା ଥିଲେ କ୍ୟାଭେଣ୍ଡିସ୍ । ତାଙ୍କର ଚ଼ରିତ୍ର ଥିଲା ଅଦ୍ଭୁତ । ଲୋକ ଦେଖିଲେ ତାଙ୍କୁ ଡର ମାଡୁଥିଲା । ତେଣୁ ସେ କାହାରି ସାଙ୍ଗରେ ମିଶାମିଶି କରୁ ନ ଥିଲେ । କଥା କହିଲାବେଳେ ରହି ରହି କଥାବାର୍ତ୍ତା କରୁଥିଲେ । ଏକାବେଳେକେ ଦୁଇ ତିନିଜଣ ଲୋକଙ୍କ ମେଳରେ ତାଙ୍କ ପାଟିରୁ କଥା ବାହାରୁ ନଥିଲା ।

ଥରେ ଅଷ୍ଟ୍ରେଲିଆରୁ ଆସିଥାନ୍ତି ଜଣେ ବୈଜ୍ଞାନିକ । ସେ କ୍ୟାଭେଣ୍ଡିସ୍‌ଙ୍କ ଆଗରେ ତାଙ୍କର ଭାରି ପ୍ରଶଂସା କଲେ । କହିଲେ, '' ସାର୍, କେବଳ ଆପଣଙ୍କୁ ଦେଖିବାକୁ ହିଁ ମୁଁ ଲଣ୍ଡନ ଆସିଛି ।'' ଏଭଳି ତୋଷାମଦ କଥା ଶୁଣି କ୍ୟାଭେଣ୍ଡିସ୍ ଅସ୍ଥିର ହୋଇପଡ଼ିଲେ । ଅନ୍ୟ ବୈଜ୍ଞାନିକଙ୍କ ଗହଣରୁ ଠେକୁଆ ଭଳି ଖସିଗଲେ ସେ । ତୁରନ୍ତ ଡେଇଁପଡ଼ିଲେ ତାଙ୍କର ଘୋଡ଼ାଗାଡ଼ି ଉପରକୁ । ତା'ପରେ ମାରିଲେ ଛୁ' ।

କ୍ୟାଭେଣ୍ଡିସ୍‌ଙ୍କ ସହ କଥାବାର୍ତ୍ତା କରିବା ନିମନ୍ତେ ଏକ ସୂତ୍ର ବାହାର କରିଥିଲେ ଡକ୍ଟର ଉଲ୍ଲାଷ୍ଟନ୍ । ସୂତ୍ରଟି ହେଲା – କଥାବାର୍ତ୍ତା କଲାବେଳେ କ୍ୟାଭେଣ୍ଡିସ୍‌ଙ୍କ ମୁହଁକୁ ଆଦୌ ଚାହିଁବନି । ତାଙ୍କ ଆଗରେ ଠିଆ ହୋଇ ଅନ୍ୟଆଡ଼େ ମୁହଁ ବୁଲେଇ ଯାହା କହିବାର କଥା କହିଚାଲିବ । ଏପରି କଲେ ତୁମେ ଖୁସି, କ୍ୟାଭେଣ୍ଡିସ୍ ବି ଖୁସି ।

ସ୍ତ୍ରୀଲୋକ ଦେଖିଲେ ତାଙ୍କର ନାହି ଡେଉଁଥିଲା । ବଡ଼ ଡର ଥିଲା ସ୍ତ୍ରୀଲୋକମାନଙ୍କୁ । ସେଥିପାଇଁ ସେ ଜୀବନସାରା ଅବିବାହିତ ହୋଇ ରହିଗଲେ । ଥରେ ଘର ଭିତରକୁ ପଶୁପଶୁ

ସେ ଦେଖିନେଲେ ତାଙ୍କ ଘରର ଚାକରାଣୀକୁ । ଚାକରାଣୀଟି ଝାଡୁଧରି ଠିଆ ହୋଇଥିଲା ସିଡ଼ି ଉପରେ । ଦେଖ ମଜା, ସେହିଦିନ ଘର ପଛପଟେ ଆଉ ଗୋଟିଏ ସିଡ଼ି ତିଆରିପାଇଁ ବ୍ୟବସ୍ଥା କଲେ ସେ ।ତାଙ୍କ ସାମନାରେ ପଡ଼ିଗଲେ ଚାକରାଣୀର ଚାକିରି ଗଲା ବୋଲି ଜାଣ । ତାଙ୍କର ଯାହା ଦରକାର ଚିଠା ପଠେଇ ଚାକରାଣୀକୁ ତାହା ଜଣେଇ ଦେଉଥିଲେ କ୍ୟାଭେଣ୍ଡିସ୍ । ଥରେ ରାସ୍ତାରେ ଆସୁ ଆସୁ ଦୁଇଜଣ ସ୍ତ୍ରୀଲୋକ ତାଙ୍କ ଆଡ଼େ ଅନେଇଥିବାର ସେ ଦେଖିପାରିଲେ । ବାସ୍, ସେଇଦିନଠାରୁ ଉକ୍ତ ରାସ୍ତାରେ ଯିବାଆସିବା ବନ୍ଦ କରିଦେଲେ କ୍ୟାଭେଣ୍ଡିସ୍ । ଅନ୍ଧାର ନ ହେବାଯାଏ ଗବେଷଣାଗାରରୁ ଘରକୁ ଫେରିବାର ନାଁ ବି ଧରିଲେ ନି ।

ବଡ଼ ଖିଆଲି ଥିଲେ ସେ । ଯାହା ବୁଝିଥିବେ ସେଇଆ । ଏପରିକି ଘର ଭିତରେ ନିଜ ବହିଥାକରୁ ପଢ଼ିବାପାଇଁ ବହି ବାହାର କଲେ ଗୋଟିଏ ଖାତାରେ ବହିର ନାଁ ଓ ତାରିଖ ଲେଖି ଏବଂ ଦସ୍ତଖତ କରି ବହି ନେଉଥିଲେ ଓ ଥାକରେ ବହିରଖି ତା'କୁ କାଟି ଦେଉଥିଲେ ।

ତାଙ୍କ ବାପା ବଞ୍ଚିଥିବା ଯାଏ ଖୁବ୍ ଅଳ୍ପ ପଇସା ପାଉଥିଲେ ସେ । ସେଇଥିରେ କଷ୍ଟେମଷ୍ଟେ ଚଳିଯାଉଥିଲେ । କିନ୍ତୁ ବାପାଙ୍କ ମଲା ପରେ ସେ ବିପୁଳ ସମ୍ପତ୍ତି ପାଇଲେ । ଜଣେ ମାଉସୀ ମରିଯିବାରୁ ମାଉସୀଙ୍କ ସମ୍ପତ୍ତି ମଧ୍ୟ ଲାଭ କଲେ ସେ । କ୍ୟାଭେଣ୍ଡିସ୍‌ଙ୍କ ବିଷୟରେ ବୈଜ୍ଞାନିକ ବାୟୋଟ୍ କହିଥିଲେ, ''କ୍ୟାଭେଣ୍ଡିସ୍ ହେଉଛନ୍ତି ପଣ୍ଡିତ ଲୋକମାନଙ୍କ ମଧ୍ୟରେ ସବୁଠାରୁ ଧନୀ ଏବଂ ଧନୀ ଲୋକଙ୍କ ମଧ୍ୟରେ ସବୁଠାରୁ ପଣ୍ଡିତ ।''

ଏକୁଟିଆ ରହିବାକୁ ବଡ଼ ପସନ୍ଦ କରୁଥିଲେ ସେ । ଜୀବନ ସାରା ରହି ଆସିଥିଲେ ଏକୁଟିଆ । ମଲାବେଳେ ମଧ୍ୟ ସେ ଥିଲେ ଏକୁଟିଆ । କ୍ୟାଭେଣ୍ଡିସ୍‌ଙ୍କୁ ସେତେବେଳେ ୭୯ ବର୍ଷ ବୟସ । ନିଜ ମରଣ ବେଳ ଆସି ପହଞ୍ଚିଗଲାଣି ବୋଲି ବୋଧହୁଏ ଜାଣିପାରିଲେ ସେ । ସେ ନିଜ ଚାକରକୁ ଘରୁ ଚାଲିଯାଇ ଏକ ନିର୍ଦ୍ଦିଷ୍ଟ ସମୟରେ ଆସିବାକୁ କହିଲେ । ତାଙ୍କ ଆଦେଶମାନି ଚାକର ଘରୁ ବାହାରକୁ ଚାଲିଗଲା । କ୍ୟାଭେଣ୍ଡିସ୍ କହିଥିବା ସମୟରେ ଚାକରଟି ଫେରିଆସି ଦେଖେ ତ ସବୁ ଶେଷ । ମହାଶାନ୍ତିରେ ସବୁଦିନ ପାଇଁ ଶୋଇ ଯାଇଥିଲେ ତା'ର ମୁନିବ ବିଶ୍ୱର ବିଶିଷ୍ଟ ବୈଜ୍ଞାନିକ ହେନ୍‌ରି କ୍ୟାଭେଣ୍ଡିସ୍ ।

କ୍ୟାଭେଣ୍ଡିସ୍‌ଙ୍କ ଗଚ୍ଛିତ ଅର୍ଥରେ ଗଢ଼ି ଉଠିଛି ବିଖ୍ୟାତ କ୍ୟାଭେଣ୍ଡିସ୍ ଲାବୋରେଟରୀ । କ୍ୟାମ୍ବ୍ରିଜର କ୍ୟାଭେଣ୍ଡିସ୍ ଲାବୋରେଟରୀ ସାରା ବିଶ୍ୱରେ ପ୍ରସିଦ୍ଧ ।



# ଏକଜିଦିଆ ଚାର୍ଲସ୍

ପ୍ରଫେସର୍ ଆଲେକ୍‌ଜାଣ୍ଡାର ଚାର୍ଲସ୍ ଜନ୍ମ ହୋଇଥିଲେ ଫ୍ରାନ୍‌ସ୍‌ରେ । ସେ ଥିଲେ ଜଣେ ଗଣିତଜ୍ଞ ଏବଂ ପଦାର୍ଥ ବିଜ୍ଞାନୀ । ବେଲୁନ୍ ଭିତରେ ଉଦଜାନ ଭର୍ତ୍ତିକରି ଆକାଶକୁ ଉଠିବାରେ ସେ ପୃଥିବୀର ପ୍ରଥମ ବ୍ୟକ୍ତି । ଏହା ସମ୍ଭବ ହୋଇଥିଲା ୧୭୮୩ ମସିହାରେ ।

ସେହି ବର୍ଷର ଡିସେମ୍ବର ମାସ ୧ ତାରିଖ । ବେଲୁନ୍ ଭିତରେ ଉଦଜାନ ଭର୍ତ୍ତି କରିଦେଲେ ଚାର୍ଲସ । ନିଜେ ଯାଇ ନିର୍ଦ୍ଦିଷ୍ଟସ୍ଥାନରେ ବସିପଡ଼ିଲେ ହିଁ ବେଲୁନ୍ ଉପରକୁ ଉଠିବ । ଲୋକେ ବି ଜମା ହୋଇଥାନ୍ତି ଏ' ଦୃଶ୍ୟ ଦେଖିବା ପାଇଁ । କିନ୍ତୁ ଦାଉ ସାଧିଲେ ଜଣେ ପୋଲିସ୍ ଅଫିସର୍ । ସେ ଚାର୍ଲସ୍‌ଙ୍କୁ ବେଲୁନ୍‌ରେ ଉଡ଼ିବାପାଇଁ ଅନୁମତି ଦେଲେ ନି । ସେ କହିଲେ, '' କେତେବେଳେ କେଉଁ କଥା । ବେଲୁନ୍‌ରେ ଉପରକୁ ଯାଇ ଚାର୍ଲସ୍ ଯେ ନିରାପଦରେ ଫେରି ଆସିବେ ସେ କଥା କିଏ ଜାଣିଛି ? ଚାର୍ଲସ୍ ଙ୍କ ଜୀବନ ଦେଶପାଇଁ ଅତି ମୂଲ୍ୟବାନ୍ । ତେଣୁ ଏହି ବିପଦଜନକ ଉଡାଣ ଆଦୌ ସମ୍ଭବ ନୁହେଁ । ''

ଚାର୍ଲସ୍ ବି ବଡ ଜିଦ୍‌ଖୋର । ସେ ମଧ୍ୟ ଅଡ଼ିବସିଲେ ବେଲୁନ୍‌ରେ ବସିବାପାଇଁ । କଥା ନ ମାନିବାରୁ ପୋଲିସ୍ ଅଫିସର୍ ଜଣକ ତାଙ୍କ ତଳିଆ ପୋଲିସ୍ କର୍ମଚାରୀମାନଙ୍କୁ ଆଦେଶ ଦେଲେ, ''ସମସ୍ତେ ମିଶି ଚାର୍ଲସ୍‌ଙ୍କୁ ମାଡ଼ି ବସି ଧର । ସେ କେମିତି ଯିବେ ମୁଁ ଦେଖିବି । ''

ସେଇଆ ହେଲା । ପୋଲିସ୍ କର୍ମଚାରୀମାନେ ଚାର୍ଲସ୍‌ଙ୍କୁ ଚାରିପଟୁ ଘେରିଗଲେ । ତାଙ୍କୁ କାବୁ କରିନେଲେ ।

ଏତିକିବେଳେ ଗୋଟିଏ ବୁଦ୍ଧି ଜୁଟିଲା ଚାର୍ଲସ୍‌ଙ୍କ ମୁଣ୍ଡକୁ । ସେ ପୋଲିସ୍ କର୍ମଚାରୀଙ୍କୁ କହିଲେ, ''ଆପଣମାନେ ରାଜାଙ୍କ ପାଖକୁ ଖବର ପଠାନ୍ତୁ । ତାଙ୍କୁ କହନ୍ତୁ ଯେ ମୋତେ ବେଲୁନ୍‌ରେ ଉଡ଼ିବାକୁ ଅନୁମତି ନ ଦେଲେ ମୁଁ ନିଜକୁ ଗୁଳି କରିଦେବି । ମୁଁ ତ ଗୁଳିମାଡ଼ରେ ମରିଯିବି । ତା' ସହ ମରିଯିବ ବେଲୁନ୍ ଉଦ୍ଭାବନ କରିବାର ମୋ'ର ଭିତିରି ରହସ୍ୟ । ''

ରାଜାଙ୍କ ପାଖରେ ଖବର ପହଞ୍ଚିଲା । ଚାର୍ଲସ୍‌ଙ୍କ ସର୍ତ୍ତ ଜଣେଇ ଦିଆଗଲା ରାଜାଙ୍କୁ । ବେଲୁନ୍‌ରେ ଉଡ଼ିବାପାଇଁ ରାଜା ଚାର୍ଲସ୍‌ଙ୍କୁ ଅନୁମତି ଦେଲେ । ଚାର୍ଲସ୍‌ଙ୍କ ଜିଦ୍ ରହିଲା । ବୀରଦର୍ପରେ ବେଲୁନ୍‌ରେ ଆକାଶକୁ ଉଠିଲେ ପ୍ରଫେସର୍ ଆଲେକ୍‌ଜାଣ୍ଡାର୍ ଚାର୍ଲସ୍ । ଏହା ପରେ ବହୁବାର ସେ ଆକାଶରେ ଉଡ଼ିଥିଲେ । ଏପରିକି ତଳୁ ପାଖାପାଖି ଦୁଇକିଲୋମିଟର ଉଚ୍ଚତାକୁ ଯିବାରେ ସଫଳ ହୋଇପାରିଥିଲେ ସେ ।





# " ସାର୍, ବୁଢା ହୋଇଗଲିଣି "

ସାର୍ ଫ୍ରେଡେରିକ୍ ଗ୍ରାଣ୍ଟ ବ୍ୟାଣ୍ଟିଙ୍ଗ୍ ଥିଲେ ଜଣେ ଡାକ୍ତର । ଘର କାନାଡ଼ା । ୧୯୨୩ ମସିହାରେ ସେ ଚିକିତ୍ସା ବିଜ୍ଞାନ ବିଷୟରେ ନୋବେଲ୍ ପୁରସ୍କାର ପାଇଥିଲେ ।

ଆମ ପେଟ ଭିତରେ ରହିଛି ଅଗ୍ନ୍ୟାଶୟ ନାମକ ଏକ ଗ୍ରନ୍ଥି । ସେହି ଗ୍ରନ୍ଥି ଇନ୍‌ସୁଲିନ୍ ତିଆରି କରି ରକ୍ତକୁ ପଠାଇ ଥାଏ । ସମସ୍ତଙ୍କ ରକ୍ତରେ ରହିଛି ଗ୍ଲୁକୋଜ୍ । ରକ୍ତରେ ଗ୍ଲୁକୋଜ୍‌ର ପରିମାଣକୁ ସାଧାରଣ ସ୍ତର ଭିତରେ ରଖିବା ହେଉଛି ଇନ୍‌ସୁଲିନ୍‌ର କାମ । ଅଗ୍ନ୍ୟାଶୟ ଇନ୍‌ସୁଲିନ୍ ତିଆରି କରି ନ ପାରିଲେ କି ତିଆରି କରିଥିବା ଇନ୍‌ସୁଲିନ୍‌କୁ ରକ୍ତକୁ ପଠେଇ ନ ପାରିଲେ ଡାଇବେଟିସ୍ ରୋଗ ହୁଏ । ଯେଉଁ ରୋଗୀମାନଙ୍କ ଠାରେ ଇନ୍‌ସୁଲିନ୍ ତିଆରି ହୋଇପାରେ ନି, ସେମାନଙ୍କୁ ଇନ୍‌ସୁଲିନ୍ ଇଂଜେକ୍‌ସନ୍ ଦେଇ ଚିକିତ୍ସା କରାଯାଏ । ଯେଉଁମାନଙ୍କ ଅଗ୍ନ୍ୟାଶୟରୁ ଇନ୍‌ସୁଲିନ୍ ଝରିବାରେ ଦୋଷ ଥାଏ, ସେମାନଙ୍କୁ ବଟିକା ଔଷଧ ଖାଇବାକୁ ପଡ଼େ । ଏହି ବଟିକା ଅଗ୍ନ୍ୟାଶୟରୁ ଇନ୍‌ସୁଲିନ୍ ଝରେଇବାରେ ସାହାଯ୍ୟ କରିଥାଏ ।

ବ୍ୟାଣ୍ଟିଙ୍ଗ୍ ଏବଂ ତାଙ୍କର ଛାତ୍ର ଚାର୍ଲ୍‌ସ୍ ବେଷ୍ଟ ଅଗ୍ନ୍ୟାଶୟରୁ ଇନ୍‌ସୁଲିନ୍ ବାହାର କରିବାରେ ସଫଳ ହୋଇଥିଲେ । ଏହି ଇନ୍‌ସୁଲିନ୍ ଚିକିତ୍ସାରେ ରହିବାରୁ ଡାଇବେଟିସ୍ ରୋଗୀମାନଙ୍କର ଜୀବନ ରକ୍ଷା ହୋଇଗଲା । ଇନ୍‌ସୁଲିନ୍ ଆବିଷ୍କାର ପାଇଁ ନୋବେଲ୍ ପୁରସ୍କାର ଦିଆଗଲା ବ୍ୟାଣ୍ଟିଙ୍ଗ ଏବଂ ଜେ. ଆର୍. ମ୍ୟାକ୍‌ଲିଓଡ୍‌ଙ୍କୁ । ବେଷ୍ଟ ବାଦ୍ ପଡ଼ିଥିଲେ ।

ବେଷ୍ଟଙ୍କୁ ନୋବେଲ୍ ପୁରସ୍କାର ନ ମିଳିବାରୁ ବ୍ୟାଣ୍ଟିଙ୍ଗ୍ ନିଜର ପ୍ରତିବାଦ ଜଣେଇଲେ । ଏପରିକି ପୁରସ୍କାର ଅର୍ଥରୁ ଅଧା ବେଷ୍ଟଙ୍କୁ ଦେଇଦେବେ ବୋଲି ଘୋଷଣା କରିଦେଲେ । ଏହି ପୁରସ୍କାର ପାଇବା ବେଳକୁ ତାଙ୍କୁ ହୋଇଥିଲା ଜମା ୩୨ ବର୍ଷ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ବେଳେ ବ୍ୟାଣ୍ଟିଙ୍ଗ୍‌ଙ୍କର ବୟସ ୪୯ । ସେତେବେଳକାରର ନିୟମ ଅନୁଯାୟୀ ବ୍ୟାଣ୍ଟିଙ୍ଗ୍ ସେନାବାହିନୀରେ ଯୋଗ ଦେବାକୁ ବାଧ୍ୟ । ତେଣୁ ସେ ଅଟାଓ୍ୱାରେ ଥିବା ସେନା-ଡାକ୍ତରଖାନାରେ ହାଜର ହେଲେ । ଡାକ୍ତରଖାନା ଦାୟିତ୍ୱରେ ଥିବା

କର୍ଣ୍ଣେଲ୍‌ଙ୍କୁ କହିଲେ,'' ସାର୍, ବୁଢ଼ା ହୋଇଗଲିଣି । ତେଣୁ ଯୁଦ୍ଧ କରି ପାରିବିନି । ତେଣୁ ମୋତେ ଆପଣଙ୍କ ଡାକ୍ତରଖାନାର ସବୁଠାରୁ ତଳିଆ କର୍ମଚାରୀ ରୂପେ ନିଯୁକ୍ତ କରନ୍ତୁ । ''

ବ୍ୟାଣ୍ଟିଙ୍ଗ୍ ନୋବେଲ୍ ପୁରସ୍କାର ବିଜେତା । ତେଣୁ ତାଙ୍କ ସମ୍ମାନ ରକ୍ଷା କରି ତାଙ୍କୁ କ୍ୟାପ୍‌ଟେନ୍ ହିସାବରେ ଯୋଗଦେବାକୁ କୁହାଗଲା । କିନ୍ତୁ ସେ ଏଥିରେ ରାଜି ହେଲେ ନି । କର୍ଣ୍ଣେଲ୍ ଭାବିଲେ ଯେ ବ୍ୟାଣ୍ଟିଙ୍ଗ୍ ହୁଏତ ଆହୁରି ଉଚ୍ଚ ପଦବୀ ଚାହୁଁଛନ୍ତି । ତେଣୁ ତାଙ୍କୁ ମେଜର୍ ପଦ ଯଚ଼ାଗଲା । ବ୍ୟାଣ୍ଟିଙ୍ଗ୍‌ଙ୍କର ଉଚ୍ଚପଦବୀର ମୋହ ନ ଥିଲା । ସେଇଥିପାଇଁ ମେଜର୍ ହେବାକୁ ବି ସେ ମନା କରିଦେଲେ । କର୍ଣ୍ଣେଲ ତା'ଙ୍କୁ ବହୁତ ବୁଝାସୁଝା କଲେ । ମେଜର ପଦ ଗ୍ରହଣ ନ କଲେ ତାଙ୍କୁ କର୍ଣ୍ଣେଲ୍ ପଦରେ ଉଚ୍ଚପାହିଆରେ ନିଯୁକ୍ତି ଦିଆଯିବ ବୋଲି ଧମକ ଦେଲେ । ଶେଷରେ ବାଧ୍ୟ ହୋଇ ମେଜର୍ ପଦବୀ ଗ୍ରହଣ କଲେ ବ୍ୟାଣ୍ଟିଙ୍ଗ୍ ।

ବ୍ୟାଣ୍ଟିଙ୍ଗ୍ ଥିଲେ ବଡ଼ ଏକ ଜିଦିଆ । ଯାହା ବୁଝିଥିବେ ସେଇଆ । ୧୯୧୬-୧୭ ମସିହାରେ ମଧ୍ୟ ସେ ଯୁଦ୍ଧରେ ଭାଗ ନେଇଥିଲେ । କାମ୍ବ୍ରାଇଠାରେ ହୋଇଥିବା ଯୁଦ୍ଧରେ ସାଂଘାତିକ ଭାବରେ ଆହତ ହୋଇ ଡାକ୍ତରଖାନାରେ ଭର୍ତ୍ତିହୋଇଥିଲେ । ଗୁଳି ପଶିଥିଲା ତାଙ୍କ ବାହୁରେ । ଗୁଳି ସିନା ବାହାର କରିଦିଆଗଲା । କିନ୍ତୁ ବାହୁ ପଚିଗଲା । ଯେତେ ଔଷଧପତ୍ର ଦେଲେ ବି କିଛି କାଟୁ କଲାନି । ତେଣୁ ବାହୁଟିକୁ କାଟିଦେବାପାଇଁ ଡାକ୍ତରମାନେ ସ୍ଥିର କଲେ ।

ବ୍ୟାଣ୍ଟିଙ୍ଗ୍ ଏ କଥା ଶୁଣି ଡାକ୍ତରଙ୍କୁ ପଚାରିଲେ, ''କଅଣ ଆଜ୍ଞା, ଆପଣ ମୋ ବାହୁକୁ କାଟି ପକେଇବେ ବୋଲି ଶୁଣୁଛି ?''

''ହଁ, ଡାକ୍ତର ବ୍ୟାଣ୍ଟିଙ୍ଗ୍ । ହାତକୁ କାଟି ଉଡେଇ ନ ଦେଲେ ଆପଣଙ୍କ ଜୀବନ ବଂଚେଇ ହେବନି,'' ଉତ୍ତର ଦେଲେ ଚିକିତ୍ସା କରୁଥିବା ଡାକ୍ତର ।

''ମୋର ବଞ୍ଚିବା ଲୋଡ଼ା ନାହିଁ । ମୁଁ ମରିଯିବି ପଛେ, ମୋର ବାହୁକୁ କଟେଇବାକୁ ଦେବିନି ।'' ଏଇଆ କହି ବ୍ୟାଣ୍ଟିଙ୍ଗ୍ ଡାକ୍ତରଙ୍କ ଆଡ଼କୁ ପିଠି କରି ଶୋଇଲେ । ଡାକ୍ତରଙ୍କୁ ଆଡ଼ ଆଖିରେ ଚାହିଁଲେନି ବି ଟିକିଏ ।

ହାତ କାଟି ପକେଇବା ନୋହିଲା । ବ୍ୟାଣ୍ଟିଙ୍ଗ୍ ବଞ୍ଚିଗଲେ । ଏହି ଘଟଣାର ୬ ବର୍ଷପରେ ସେ ପାଇଲେ ନୋବେଲ୍ ପୁରସ୍କାର ।

୧୯୪୧ ମସିହା ଫେବୃଆରୀ ମାସ । ଏକ ଯୁଦ୍ଧ ବିମାନରେ ବସି ଲଣ୍ଡନ୍ ଅଭିମୁଖେ ଯାତ୍ରା କରୁଥାନ୍ତି ସେ । ହଠାତ୍ ତାଙ୍କର ବିମାନଟି ଜର୍ମାନ୍ ଇଲାକା ଭିତରକୁ ପଶିଗଲା । ଧରା ପଡ଼ିଗଲା ଜର୍ମାନ୍‌ର ବୋମାମାଡ଼ କରୁଥିବା ବିମାନମାନଙ୍କ ଦ୍ୱାରା । ସେମାନେ

ବ୍ୟାଣ୍ଟିଙ୍ଗ୍‌ଙ୍କ ବିମାନକୁ ଗୁଳି କଲେ । ବିମାନରେ ଗୁଳି ବାଜିଲା । ଗୁଳି ମାଡ଼୍‌ଖାଇ ବିମାନଟି ଗଳି ପଡ଼ିଲା ବରଫ ପାଲଟି ଯାଇଥିବା ଏକ ହ୍ରଦ ଉପରେ । ବ୍ୟାଣ୍ଟିଙ୍ଗ୍ ଚାହିଁଥିଲେ ଆକାଶ ଛତା ସାହାଯ୍ୟରେ ତେଇଁ ପଡ଼ିଥାନ୍ତେ । ହୁଏତ ଏହା ଫଳରେ ତାଙ୍କ ପ୍ରାଣ ରକ୍ଷା ହୋଇ ପାରିଥାନ୍ତା ।

କିନ୍ତୁ ବିମାନ ଚାଳକ ଏବଂ ବିମାନର ରେଡିଓ ଅପରେଟର୍‌ଙ୍କୁ ନିଜ ଦଶା ଭୋଗିବା ପାଇଁ ଛାଡିଦେଇ ବ୍ୟାଣ୍ଟିଙ୍ଗ୍ ତାଙ୍କ ଜୀବନ ବଞ୍ଚେଇ ରଖିବା ପାଇଁ ଚାହିଁଲେନି । ଫଳରେ ଭଙ୍ଗା ବିମାନ ସାଙ୍ଗରେ ତିନିଜଣଯାକ ଆସି ପଡ଼ିଲେ ହ୍ରଦ ଉପରେ, ବରଫ ସ୍ତରର ପାଞ୍ଚଫୁଟ ତଳେ ।

ରେଡିଓ ଅପରେଟରଙ୍କର ମୃତ୍ୟୁ ହୋଇ ସାରିଥିଲା । ବିମାନ ଚାଳକ ସାଂଘାତିକ ଭାବରେ ଆହତ ହୋଇଥିଲେ । ତଥାପି ଘୁଷୁରି ଘୁଷୁରି ଆସି ସେ ବ୍ୟାଣ୍ଟିଙ୍ଗ୍‌ଙ୍କୁ ଠାବ କଲେ । ନିଶ୍ଚଳ ହୋଇ ପଡ଼ିରହିଥିଲେ ବ୍ୟାଣ୍ଟିଙ୍ଗ୍ । ମେଲା ହୋଇ ରହିଥିଲା ତାଙ୍କର ଆଖି ଦୁଇଟି । ମୁଣ୍ଡରୁ ଝରି ଚାଲୁଥିଲା ରକ୍ତର ସୁଅ ।

ବ୍ୟାଣ୍ଟିଙ୍ଗ୍‌ଙ୍କ ଓଠ ଦୁଇଟି ଥରି ଉଠିଲା । ସେ କିଛି କହିବାକୁ ହୁଏତ ଚେଷ୍ଟା କରୁଥିଲେ । କଅଣ କହିବେ ଟିପି ପକେଇବା ପାଇଁ ବିମାନ ଚାଳକ ନିଜ ପକେଟ୍‌ରୁ ପେନ୍‌ସିଲ୍ ବାହାର କରି ହାତରେ ଧରିଲେ ।ବ୍ୟାଣ୍ଟିଙ୍ଗ୍ ପାଟି ଖୋଲିଲେ । କିନ୍ତୁ ସେ କଅଣ କହିଲେ ତାହା କିଛି ବୁଝି ହେଲାନି ।

ମାଡ଼ି ଆସିଲା ରାତି । ବହଳିଆ ଅନ୍ଧାର ଛାଇଗଲା ଚାରିଆଡ଼େ । ସେତେବେଳକୁ ବ୍ୟାଣ୍ଟିଙ୍ଗ୍‌ଙ୍କର ଚେତା ନଥାଏ । କେଉଁଠୁ କିଛି ସାହାଯ୍ୟ ପାଇବା ଆଶାରେ ବିମାନ ଚାଳକ ବ୍ୟାଣ୍ଟିଙ୍ଗ୍‌ଙ୍କୁ ଏକୁଟିଆ ଛାଡ଼ି ଆଗକୁ ପାଦ ପକେଇଲେ । କିଛି ସମୟ ପରେ ସେ ଫେରି ଆସିଲେ । ଫେରି ଆସି ଖୋଜିଲେ ବ୍ୟାଣ୍ଟିଙ୍ଗ୍‌ଙ୍କୁ । କିନ୍ତୁ ବିମାନ ପାଖରେ ତାଙ୍କର ଦେଖା ମିଳିଲାନି । ସେ ପଡ଼ିଥିଲେ ବିମାନର ଭଙ୍ଗାରୁଜା ଅଂଶର ପାଞ୍ଚଫୁଟ ଦୂରରେ । ମରିବା ପୂର୍ବରୁ ବିମାନ ଭିତରୁ କୌଣସିମତେ ନିଜକୁ ମୁକୁଳେଇ ପାରିଥିଲେ ସେ । ହୁଏତ ଖୋଜିଥିଲେ ଟିକିଏ ଖୋଲା ଜାଗା । ଖୋଲାଜାଗାଟି ପାଇ ଶାନ୍ତିରେ ଆଖି ବୁଜିଥିବେ ସେ ।

ବ୍ୟାଣ୍ଟିଙ୍ଗ୍ ବଞ୍ଚିଥିଲେ ମାତ୍ର ୫୦ ବର୍ଷ । ହେଲେ ଇନ୍‌ସୁଲିନ୍ ଆବିଷ୍କାର କରିବା ଫଳରେ ସେ ପୃଥିବୀର ହଜାର ହଜାର ଡାଇବେଟିସ୍ ରୋଗୀଙ୍କ ଜୀବନ ରକ୍ଷା କରିପାରିଛନ୍ତି । ତେଣୁ ମୃତ୍ୟୁବରଣ କରିଥିଲେ ମଧ୍ୟ ଚିକିତ୍ସା ବିଜ୍ଞାନ ଇତିହାସରେ ସେ ଚିରସ୍ମରଣୀୟ ।





# ମୁଁ ଟିକିଏ ଆସୁଛି

ନିଲ୍ସ ବୋହର୍ ଥିଲେ ଜଣେ କୃତୀ ପଦାର୍ଥ ବିଜ୍ଞାନୀ । ୧୯୨୨ ମସିହାରେ ପଦାର୍ଥ ବିଜ୍ଞାନରେ ସେ ନୋବେଲ ପୁରସ୍କାର ପାଇଥିଲେ । କେବଳ ନୋବେଲ୍ ପୁରସ୍କାର କାହିଁକି, ୨୧ ବର୍ଷ ବୟସରୁ ସେ ମେଡାଲ୍, ପୁରସ୍କାର, ସମ୍ମାନ ଆଦି ଛାଣିବାରେ ଲାଗିଥିଲେ ।

ନିଲ୍ସ୍ ବୋହର୍‌ଙ୍କ ସ୍ତ୍ରୀଙ୍କ ନାଁ ଥିଲା ମାର୍‌ଗ୍ରେଥେ । ଉଭୟ ପରସ୍ପରକୁ ଅତି ଭଲ ପାଉଥିଲେ । ଗବେଷଣାରେ ନିଜର ସଫଳତା ପାଇଁ ବୋହର୍ ମାର୍‌ଗ୍ରେଥେଙ୍କ ପାଖରେ କୃତଜ୍ଞ ବୋଲି ବହୁବାର ସ୍ୱୀକାର କରିଛନ୍ତି । ପରିବାରର ସବୁ ଦାୟିତ୍ୱ ନେଇଥିଲେ ମାର୍‌ଗ୍ରେଥେ । ଘରେ ସବୁବେଳେ ଶାନ୍ତି ଓ ସଦ୍‌ଭାବର ବାତାବରଣ ରହିଥିଲା । ଏପରିକି ଅତି ଜଟିଳ ବୈଜ୍ଞାନିକ ଆଲୋଚନା ମଝିରେ ବୋହର୍ ହଠାତ୍ କହିପକାନ୍ତି " ମୁଁ ଟିକିଏ ଆସୁଛି । ଗୋଟିଏ କଥା ମନେ ପଡ଼ିଗଲା ଯେ, ତାହା ଏବେ ମାର୍‌ଗ୍ରେଥେଙ୍କୁ ନ କହିଲେ କାଳେ ପରେ ଭୁଲିଯିବି । "ଏଇଆ କହି ଆଲୋଚନାକୁ ଅଧାରଖି ସେ କିଛି ସମୟ ନିମନ୍ତେ ଘରକୁ ଚାଲିଯାଆନ୍ତି । କିନ୍ତୁ ତାଙ୍କର ସହକର୍ମୀମାନେ ଭଲଭାବରେ ଜାଣନ୍ତି ଯେ ବୋହର୍‌ଙ୍କର ଏ କେବଳ ଏକ ବାହାନା । ସ୍ତ୍ରୀଙ୍କ ପାଖରେ ଘଡ଼ିଏ ରହିଗଲେ ତାଙ୍କର ଶକ୍ତି ଫେରିଆସେ । କାମ କରିବାକୁ ପ୍ରେରଣା ଆସେ । ସେଇଥିପାଇଁ ସେ ଛାଟିପିଟି ହୋଇ ସ୍ତ୍ରୀଙ୍କ ପାଖକୁ ପଳାନ୍ତି ।

ବୋହର୍ ଥିଲେ ଡେନ୍‌ମାର୍କର ଅଧିବାସୀ । ଡେନ୍‌ମାର୍କକୁ ଅକ୍ତିଆର କରି ରଖିଥିଲେ ନାଜି ସୈନ୍ୟମାନେ । ସେମାନଙ୍କ ନିର୍ଯାତନାରୁ ରକ୍ଷା ପାଇବା ନିମନ୍ତେ ବୋହର୍ ଇଂଲଣ୍ଡ ପଳେଇବାକୁ ମନସ୍ଥ କଲେ । କାରଣ ନାଜିମାନେ ତାଙ୍କୁ ଖୋଜୁଥିବାର ଖବର ପାଇଲେ ସେ । ତେଣୁ ସେ ଛଦ୍ମବେଶରେ ନିଜକୁ ଲୁକ୍‌କାୟିତ କରି ରଖିବାକୁ ବାଧ ହେଲେ ।

ଦିନକର ଘଟଣା । ବେଶ ବଦଳେଇ ବୋହର୍ ଯାଉଥାନ୍ତି ଏକ ଗୁପ୍ତ ଗବେଷଣାଗାରକୁ । ଡରି ଡରି ଯାଉଥାନ୍ତି । ହଠାତ୍ ଜଣେ ବୁଢ଼ୀଲୋକଙ୍କ ସହ ଧକ୍‌କା ଖାଇଲେ ସେ । ବୁଢ଼ୀଲୋକ ଜଣକ ବୋହର୍‌ଙ୍କୁ ନିରେଖି ଚାହିଁଲେ । ପଚାରିଲେ "ତୁମେ ପ୍ରଫେସର୍ ବୋହର୍‌ଟି ?"

ବୋହର୍ ଚଟ୍‌କରି ଉତ୍ତର ଦେଲେ, ''ନାଇଁ ଆଜ୍ଞା, ଆପଣଙ୍କର ଚିହ୍ନିବା ଭୁଲ୍ ହୋଇଗଲା । ମୋ ନାଁ ବେକର୍ ।'' ଏଇଆ କହି ବୋହର୍ ବି ବୁଢ଼ୀଙ୍କୁ ଭଲଭାବରେ ଅନାଇଲେ । ସେତେବେଳେ ଯାଇ ତାଙ୍କର ଜ୍ଞାନ ହେଲା ଯେ ବୁଢ଼ୀ ଜଣକ ତାଙ୍କର ଅତି ଜଣାଶୁଣା । ଉଭୟ ପରିବାରର ଘନିଷ୍ଠ ସଂପର୍କ । ତେଣୁ ସେ ପରିସ୍ଥିତିକୁ ଟିକିଏ ହାଲୁକା କରିଦେବା ନିମନ୍ତେ ପଚାରିଲେ, ''ଆଜ୍ଞା, ମୁଁ ହୁଏତ 'ବେକର୍' ହୋଇଥାଏ କିନ୍ତୁ ଆପଣ ନିଶ୍ଚୟ ଶ୍ରୀମତୀ ବ୍ରନ୍ । ବଡ଼ ଭାଗ୍ୟର କଥା ଯେ ଆପଣଙ୍କ ସହ ଦେଖା ହୋଇଗଲା !''

ଡେନ୍‌ମାର୍କରେ ରହିବା ନିରାପଦ ନଥିଲା । ତଥାପି ବୋହର୍ ନିଜର ଗବେଷଣାଗାର ଏବଂ ସହକର୍ମୀମାନଙ୍କୁ ଛାଡ଼ି ଚାଲିଯିବାକୁ ଚାହୁଁ ନ ଥିଲେ । ବିଶେଷ କରି ତାଙ୍କ ସହକର୍ମୀ ହିସାବରେ କାମ କରୁଥିବା ଇହୁଦୀ ଶରଣାର୍ଥୀମାନଙ୍କ ପାଇଁ ତାଙ୍କର ଚିନ୍ତାଥିଲା ବେଶୀ । ଅବସ୍ଥା ଏପରି ଅସମ୍ଭାଳ ହେଲା ଯେ ବୋହର୍ ଏବଂ ମାର୍‌ଗ୍ରେଥେ ଡେନ୍‌ମାର୍କ ଛାଡ଼ି ସୁଇଡେନ୍‌ରେ ଆଶ୍ରୟ ନେଲେ । ସୁଇଡେନ୍‌ରୁ ଉଡ଼ାଜାହାଜରେ ଯାତ୍ରା କଲେ ଇଂଲଣ୍ଡ୍ । ତାଙ୍କ ବିମାନଟି ଥିଲା ଅତି ଛୋଟ । ଜର୍ମାନ୍ ନିୟନ୍ତ୍ରଣରେ ରହିଥିବା ଆକାଶ ପଥ ଦେଇ ବିମାନ ଯାତ୍ରା କରୁଥାଏ । ବିମାନ ଭିତରେ ବୋମା ରଖାଯାଇଥିବା ଜାଗାରେ ଯାକିଯୁକି ହୋଇ ବସିଥାନ୍ତି ବୋହର୍ । ବାଟରେ ବି ଅମ୍ଳଜାନ ସରିଗଲା । ଭାଗ୍ୟ ଜୋର୍‌ରୁ ବଞ୍ଚିଗଲେ ସେ । ପହଞ୍ଚିଗଲେ ଇଂଲଣ୍ଡରେ । ଶେଷରେ ନିୟୁୟର୍କ୍ ଚାଲିଗଲେ ବୋହର୍ । ସାଥୀରେ ପୁଅ ଆ'ଗେ ଏବଂ ଦୁଇଜଣ ଇଂରେଜ ଗୋଇନ୍ଦା । ନିୟୁୟର୍କ୍ ଆସି ଯୋଗଦେଲେ ପରମାଣୁ ବୋମା ତିଆରିସହ ସଂପୃକ୍ତ ଦୁଇଜଣ ଗୁପ୍ତ ପ୍ରତିନିଧିଙ୍କ ସହ । ଏମାନଙ୍କ ଗହଣରେ ଅଣନିଃଶ୍ୱାସୀ ହୋଇପଡୁଥାନ୍ତି ସେ । ତେଣୁ ଛାଟିପିଟି ହୋଇ ସେ ରାସ୍ତା ଆରପଟକୁ ପଳେଇଲେ । କିନ୍ତୁ ସେ ଜାଗାରେ ରାସ୍ତା ଅତିକ୍ରମ କରିବା ମନା ହୋଇଥିବାରୁ ଟ୍ରାଫିକ୍ ନିୟମ ଭଙ୍ଗର ଅଭିଯୋଗ ଅଣାଯାଇଥିଲା ତାଙ୍କ ବିରୋଧରେ ।

ପରମାଣୁ ବୋମା ତିଆରି ସ୍ଥାନକୁ ଯିବାବେଳେ ତାଙ୍କ ସାଙ୍ଗରେ ଥିଲେ ଜେନେରାଲ୍ ଗ୍ରୋଭ୍‌ସ୍ । ରେଳ ଯୋଗେ ଯାତ୍ରା କରୁଥାନ୍ତି ସେମାନେ । ବାଟରେ ଗ୍ରୋଭ୍‌ସ୍ 'କଅଣ କହିବା କଥା' 'କଅଣ ନ କହିବା କଥା' ଇତ୍ୟାଦି ବିଷୟରେ ବୋହର୍‌ଙ୍କୁ ସତର୍କ କରାଇ ଦେଉଥାନ୍ତି । ପ୍ରତି କଥାରେ ମୁଣ୍ଡ ଟୁଙ୍ଗାରୁଥାନ୍ତି ସେ । କିନ୍ତୁ ପହଞ୍ଚିଯିବାର ମାତ୍ର ପାଞ୍ଚମିନିଟ୍ ଭିତରେ ଯାହା ଯାହା ପ୍ରକାଶ କରିବେନି ବୋଲି ସେ ପ୍ରତିଜ୍ଞା କରିଥିଲେ, ସବୁ ଖୋଲିକରି କହି ପକେଇଲେ । ଏହିଭଳି ଭୋଳା ସ୍ୱଭାବର ଥିଲେ ବୋହର୍ ।

ସିନେମା ଦେଖିବାରେ ବଡ଼ ସଉକ ଥିଲା ତାଙ୍କର । ତାଙ୍କର ସହକର୍ମୀମାନେ କହନ୍ତି, ''ବୋହର୍‌ଙ୍କୁ ସିନେମା ଦେଖେଇ ନେବା ଥିଲା ଆମର କାମ । ଆମେ ବି ତାଙ୍କ ପାଖରେ

ବସୁ । କିନ୍ତୁ ପ୍ରତି କଥାରେ ସେ ଆମକୁ ପଚାରି ବସିବେ । ଠିକ୍ ଭାବରେ ସିନେମାଟିକୁ ବୁଝି ପାରୁଛନ୍ତି କି ନା ଆମକୁ ପଚାରି ମିଳେଇ ନେବେ । ତେଣୁ ତାଙ୍କ ସାଙ୍ଗରେ ସିନେମା ଦେଖିଯିବା ଏକ ଦଣ୍ଡ ।''

ତାଙ୍କ ମୁଣ୍ଡକୁ ଯେତେବେଳେ ଯେଉଁ ଧାରଣା ଆସେ, ସେ ଅନ୍ୟମାନଙ୍କ ସହ ସେ ବିଷୟରେ ଖୋଲାଖୋଲି ଆଲୋଚନା ଆରମ୍ଭ କରିଦିଅନ୍ତି । ଆଲୋଚନା କଲାବେଳେ ଠିଆହୋଇ ବୃତ୍ତ ଆକାରରେ ଘୂରି ଘୂରି କଥା କହନ୍ତି । ପାଟିରେ ପାଇପ୍‌ଟା ଅନବରତ ପଶି ରହିଥାଏ । ପାଇପ୍ ଟାଣିବା ଥିଲା ତାଙ୍କର ବଡ଼ ନିଶା । ପାଇପ୍‌ରେ ନିଆଁ ଧରାହୋଇଥାଉ କି ନ ଥାଉ, ଆଲୋଚନା କରୁଥିଲାବେଳେ ଘନ ଘନ ଦିଆସିଲି ମାରି ତମାଖୁରେ ନିଆଁ ଧରେଇ ଥାଆନ୍ତି ସେ । ବୋହର୍ ଦିନମାନ ଯେ କେତେ ଦିଆସିଲି କାଠି ଜଳେଇଥାନ୍ତି, ତା'ର ସୀମା ନ ଥାଏ । ସେଇଥିପାଇଁ ଲୋକେ ସାଧାରଣ ଭାବରେ ବ୍ୟବହାର କରୁଥିବା ଛୋଟ ଦିଆସିଲି ନ କିଣି ସେ କିଣନ୍ତି ବେଶୀ କାଠି ଥିବା ବଡ଼ ଦିଆସିଲି ।

ଥରେ ବୋହର୍ ବୁଲିଯାଇଥିଲେ ରୁଷିଆ । ସୋଭିଏତ୍ ରୁଷ୍‌ର ପଦାର୍ଥ ବିଜ୍ଞାନ ପ୍ରତିଷ୍ଠାନ ପରିଦର୍ଶନ କଲାବେଳେ ତାଙ୍କୁ ପ୍ରଶ୍ନ କରାହେଲା, ''ଆପଣ ଏତେ ସଂଖ୍ୟକ ପ୍ରଖ୍ୟାତ ପଦାର୍ଥ ବିଜ୍ଞାନୀଙ୍କୁ ସୃଷ୍ଟି କଲେ କିପରି ? '' ବୋହର୍ ଟିକିଏ ଭାବି ଉତ୍ତର ଦେଲେ, ''ମୁଁ ମୂର୍ଖଟାଏ ବୋଲି ମୋ ଛାତ୍ରମାନଙ୍କ ଆଗରେ ମାନିଯିବାରେ ମୋତେ ଲାଜ ଲାଗେନି । ହୁଏତ ଏହା ହିଁ ତା'ର କାରଣ ।''

ନିଲ୍‌ସ୍ ବୋହର୍ ନୋବେଲ୍ ପୁରସ୍କାର ପାଇଲେ ୧୯୨୨ ମସିହାରେ । ସେହି ୧୯୨୨ ମସିହାରେ ହିଁ ଜନ୍ମ ନେଇଥିଲେ ତାଙ୍କର ସୁଯୋଗ୍ୟ ସନ୍ତାନ ଆ'ଗେ ବୋହର୍ । ଆ'ଗେ ବୋହର୍ ମଧ୍ୟ ଥିଲେ ଜଣେ ବିଖ୍ୟାତ ପଦାର୍ଥ ବିଜ୍ଞାନୀ । ସେ ମଧ୍ୟ ଥିଲେ ଜଣେ ନୋବେଲ୍ ପୁରସ୍କାର ବିଜେତା । ୧୯୭୫ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ ସେ । ଥଟ୍ଟା ମଜା କରିବାରେ ବାପପୁଅଙ୍କର ବଡ଼ ନାଁ ଥିଲା ।

ବିଶ୍ୱଯୁଦ୍ଧ ସରିଗଲାପରେ ନିଲ୍‌ସ୍ ବୋହର୍ ଡେନ୍‌ମାର୍କ ଫେରିଥିଲେ । ସେଠାରେ ପହଞ୍ଚି ନିଜ ଗବେଷଣା ପ୍ରତିଷ୍ଠାନକୁ ବୁଲି ଯାଇଥିଲେ । ପ୍ରତିଷ୍ଠାନରେ ପହଞ୍ଚିବା ବେଳର ପରିବେଶ ଥିଲା ବଡ଼ ମର୍ମସ୍ପର୍ଶୀ । ପୁରୁଣା ସହକର୍ମୀମାଙ୍କର ଆଖିରୁ ବହିଚାଲିଥିଲା ଆନନ୍ଦର ଅଶ୍ରୁ ।

ନିଜର ପୂର୍ବ ଗବେଷଣା କୋଠରିରେ ଏସିଡ୍ ଭିତରେ ମିଳେଇ ହୋଇ ରହିଥିଲା ଲାଉଏ ଏବଂ ଫ୍ରାଙ୍କ୍‌ଙ୍କର ନୋବେଲ୍ ପୁରସ୍କାରର ମେଡାଲ୍ । ଉଭୟ ପଦାର୍ଥ ବିଜ୍ଞାନରେ

ବୋହର୍ ଚଟ୍‌କରି ଉତ୍ତର ଦେଲେ, ''ନାଇଁ ଆଜ୍ଞା, ଆପଣଙ୍କର ଚିହ୍ନିବା ଭୁଲ୍ ହୋଇଗଲା । ମୋ ନାଁ ବେକର୍ ।'' ଏଇଆ କହି ବୋହର୍ ବି ବୁଢ଼ୀଙ୍କୁ ଭଲଭାବରେ ଅନାଇଲେ । ସେତେବେଳେ ଯାଇ ତାଙ୍କର ଜ୍ଞାନ ହେଲା ଯେ ବୁଢ଼ୀ ଜଣକ ତାଙ୍କର ଅତି ଜଣାଶୁଣା । ଉଭୟ ପରିବାରର ଘନିଷ୍ଠ ସଂପର୍କ । ତେଣୁ ସେ ପରିସ୍ଥିତିକୁ ଟିକିଏ ହାଲୁକା କରିଦେବା ନିମନ୍ତେ ପଚାରିଲେ, ''ଆଜ୍ଞା, ମୁଁ ହୁଏତ 'ବେକର୍' ହୋଇଥାଏ କିନ୍ତୁ ଆପଣ ନିଶ୍ଚୟ ଶ୍ରୀମତୀ ବ୍ରନ୍ । ବଡ଼ ଭାଗ୍ୟର କଥା ଯେ ଆପଣଙ୍କ ସହ ଦେଖା ହୋଇଗଲା !''

ଡେନ୍‌ମାର୍କରେ ରହିବା ନିରାପଦ ନଥିଲା । ତଥାପି ବୋହର୍ ନିଜର ଗବେଷଣାଗାର ଏବଂ ସହକର୍ମୀମାନଙ୍କୁ ଛାଡ଼ି ଚାଲିଯିବାକୁ ଚାହୁଁ ନ ଥିଲେ । ବିଶେଷ କରି ତାଙ୍କ ସହକର୍ମୀ ହିସାବରେ କାମ କରୁଥିବା ଇହୁଦୀ ଶରଣାର୍ଥୀମାନଙ୍କ ପାଇଁ ତାଙ୍କର ଚିନ୍ତାଥିଲା ବେଶୀ । ଅବସ୍ଥା ଏପରି ଅସମ୍ଭାଳ ହେଲା ଯେ ବୋହର୍ ଏବଂ ମାର୍‌ଗ୍ରେଥେ ଡେନ୍‌ମାର୍କ ଛାଡ଼ି ସୁଇଡେନ୍‌ରେ ଆଶ୍ରୟ ନେଲେ । ସୁଇଡେନ୍‌ରୁ ଉଡ଼ାଜାହାଜରେ ଯାତ୍ରା କଲେ ଇଂଲଣ୍ଡ୍ । ତାଙ୍କ ବିମାନଟି ଥିଲା ଅତି ଛୋଟ । ଜର୍ମାନ୍ ନିୟନ୍ତ୍ରଣରେ ରହିଥିବା ଆକାଶ ପଥ ଦେଇ ବିମାନ ଯାତ୍ରା କରୁଥାଏ । ବିମାନ ଭିତରେ ବୋମା ରଖାଯାଇଥିବା ଜାଗାରେ ଯାକିଯୁକି ହୋଇ ବସିଥାନ୍ତି ବୋହର୍ । ବାଟରେ ବି ଅମ୍ଳଜାନ ସରିଗଲା । ଭାଗ୍ୟ ଜୋର୍‌ରୁ ବଞ୍ଚିଗଲେ ସେ । ପହଞ୍ଚିଗଲେ ଇଂଲଣ୍ଡରେ । ଶେଷରେ ନିୟୁୟର୍କ୍ ଚାଲିଗଲେ ବୋହର୍ । ସାଥୀରେ ପୁଅ ଆ'ଗେ ଏବଂ ଦୁଇଜଣ ଇଂରେଜ ଗୋଇନ୍ଦା । ନିୟୁୟର୍କ୍ ଆସି ଯୋଗଦେଲେ ପରମାଣୁ ବୋମା ତିଆରିସହ ସଂପୃକ୍ତ ଦୁଇଜଣ ଗୁପ୍ତ ପ୍ରତିନିଧିଙ୍କ ସହ । ଏମାନଙ୍କ ଗହଣରେ ଅଣନିଃଶ୍ୱାସୀ ହୋଇପଡୁଥାନ୍ତି ସେ । ତେଣୁ ଛାଟିପିଟି ହୋଇ ସେ ରାସ୍ତା ଆରପଟକୁ ପଳେଇଲେ । କିନ୍ତୁ ସେ ଜାଗାରେ ରାସ୍ତା ଅତିକ୍ରମ କରିବା ମନା ହୋଇଥିବାରୁ ଟ୍ରାଫିକ୍ ନିୟମ ଭଙ୍ଗର ଅଭିଯୋଗ ଅଣାଯାଇଥିଲା ତାଙ୍କ ବିରୋଧରେ ।

ପରମାଣୁ ବୋମା ତିଆରି ସ୍ଥାନକୁ ଯିବାବେଳେ ତାଙ୍କ ସାଙ୍ଗରେ ଥିଲେ ଜେନେରାଲ୍ ଗ୍ରୋଭ୍‌ସ୍ । ରେଳ ଯୋଗେ ଯାତ୍ରା କରୁଥାନ୍ତି ସେମାନେ । ବାଟରେ ଗ୍ରୋଭ୍‌ସ୍ 'କଅଣ କହିବା କଥା' 'କଅଣ ନ କହିବା କଥା' ଇତ୍ୟାଦି ବିଷୟରେ ବୋହର୍‌ଙ୍କୁ ସତର୍କ କରାଇ ଦେଉଥାନ୍ତି । ପ୍ରତି କଥାରେ ମୁଣ୍ଡ ଟୁଙ୍ଗାରୁଥାନ୍ତି ସେ । କିନ୍ତୁ ପହଞ୍ଚିଯିବାର ମାତ୍ର ପାଞ୍ଚମିନିଟ୍ ଭିତରେ ଯାହା ଯାହା ପ୍ରକାଶ କରିବେନି ବୋଲି ସେ ପ୍ରତିଜ୍ଞା କରିଥିଲେ, ସବୁ ଖୋଲିକରି କହି ପକେଇଲେ । ଏହିଭଳି ଭୋଳା ସ୍ୱଭାବର ଥିଲେ ବୋହର୍ ।

ସିନେମା ଦେଖିବାରେ ବଡ଼ ସଉକ ଥିଲା ତାଙ୍କର । ତାଙ୍କର ସହକର୍ମୀମାନେ କହନ୍ତି, ''ବୋହର୍‌ଙ୍କୁ ସିନେମା ଦେଖେଇ ନେବା ଥିଲା ଆମର କାମ୍ । ଆମେ ବି ତାଙ୍କ ପାଖରେ

ବସ୍ଥ । କିନ୍ତୁ ପ୍ରତି କଥାରେ ସେ ଆମକୁ ପଚାରି ବସିବେ । ଠିକ୍ ଭାବରେ ସିନେମାଟିକୁ ବୁଝି ପାରୁଛନ୍ତି କି ନା ଆମକୁ ପଚାରି ମିଳେଇ ନେବେ । ତେଣୁ ତାଙ୍କ ସାଙ୍ଗରେ ସିନେମା ଦେଖିଯିବା ଏକ ଦଣ୍ଡ ।''

ତାଙ୍କ ମୁଣ୍ଡକୁ ଯେତେବେଳେ ଯେଉଁ ଧାରଣା ଆସେ, ସେ ଅନ୍ୟମାନଙ୍କ ସହ ସେ ବିଷୟରେ ଖୋଲାଖୋଲି ଆଲୋଚନା ଆରମ୍ଭ କରିଦିଅନ୍ତି । ଆଲୋଚନା କଲାବେଳେ ଠିଆହୋଇ ବୃତ୍ତ ଆକାରରେ ଘୂରି ଘୂରି କଥା କହନ୍ତି । ପାଟିରେ ପାଇପ୍‌ଟା ଅନବରତ ପଶି ରହିଥାଏ । ପାଇପ୍ ଟାଣିବା ଥିଲା ତାଙ୍କର ବଡ଼ ନିଶା । ପାଇପ୍‌ରେ ନିଆଁ ଧରାହୋଇଥାଉ କି ନ ଥାଉ, ଆଲୋଚନା କରୁଥିଲାବେଳେ ଘନ ଘନ ଦିଆସିଲି ମାରି ତମାଖୁରେ ନିଆଁ ଧରେଇ ଥାଆନ୍ତି ସେ । ବୋହର୍ ଦିନମାନ ଯେ କେତେ ଦିଆସିଲି କାଠି ଜଳେଇଥାନ୍ତି, ତା'ର ସୀମା ନ ଥାଏ । ସେଇଥିପାଇଁ ଲୋକେ ସାଧାରଣ ଭାବରେ ବ୍ୟବହାର କରୁଥିବା ଛୋଟ ଦିଆସିଲି ନ କିଣି ସେ କିଣନ୍ତି ବେଶୀ କାଠି ଥିବା ବଡ଼ ଦିଆସିଲି ।

ଥରେ ବୋହର୍ ବୁଲିଯାଇଥିଲେ ରୁଷିଆ । ସୋଭିଏତ୍ ରୁଷ୍‌ର ପଦାର୍ଥ ବିଜ୍ଞାନ ପ୍ରତିଷ୍ଠାନ ପରିଦର୍ଶନ କଲାବେଳେ ତାଙ୍କୁ ପ୍ରଶ୍ନ କରାହେଲା, ''ଆପଣ ଏତେ ସଂଖ୍ୟକ ପ୍ରଖ୍ୟାତ ପଦାର୍ଥ ବିଜ୍ଞାନୀଙ୍କୁ ସୃଷ୍ଟି କଲେ କିପରି ? '' ବୋହର୍ ଟିକିଏ ଭାବି ଉତ୍ତର ଦେଲେ, ''ମୁଁ ମୂର୍ଖଟାଏ ବୋଲି ମୋ ଛାତ୍ରମାନଙ୍କ ଆଗରେ ମାନିଯିବାରେ ମୋତେ ଲାଜ ଲାଗେନି । ହୁଏତ ଏହା ହିଁ ତା'ର କାରଣ ।''

ନିଲ୍‌ସ୍ ବୋହର୍ ନୋବେଲ୍ ପୁରସ୍କାର ପାଇଲେ ୧୯୨୨ ମସିହାରେ । ସେହି ୧୯୨୨ ମସିହାରେ ହିଁ ଜନ୍ମ ନେଇଥିଲେ ତାଙ୍କର ସୁଯୋଗ୍ୟ ସନ୍ତାନ ଆ'ଗେ ବୋହର୍ । ଆ'ଗେ ବୋହର୍ ମଧ୍ୟ ଥିଲେ ଜଣେ ବିଖ୍ୟାତ ପଦାର୍ଥ ବିଜ୍ଞାନୀ । ସେ ମଧ୍ୟ ଥିଲେ ଜଣେ ନୋବେଲ୍ ପୁରସ୍କାର ବିଜେତା । ୧୯୭୫ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ ସେ । ଥଟ୍ଟା ମଜା କରିବାରେ ବାପପୁଅଙ୍କର ବଡ଼ ନାଁ ଥିଲା ।

ବିଶ୍ୱଯୁଦ୍ଧ ସରିଗଲାପରେ ନିଲ୍‌ସ୍ ବୋହର୍ ଡେନ୍‌ମାର୍କ ଫେରିଥିଲେ । ସେଠାରେ ପହଞ୍ଚି ନିଜ ଗବେଷଣା ପ୍ରତିଷ୍ଠାନକୁ ବୁଲି ଯାଇଥିଲେ । ପ୍ରତିଷ୍ଠାନରେ ପହଞ୍ଚିବା ବେଳର ପରିବେଶ ଥିଲା ବଡ଼ ମର୍ମସ୍ପର୍ଶୀ । ପୁରୁଣା ସହକର୍ମୀମାଙ୍କର ଆଖିରୁ ବହିଚାଲିଥିଲା ଆନନ୍ଦର ଅଶ୍ରୁ ।

ନିଜର ପୂର୍ବ ଗବେଷଣା କୋଠରିରେ ଏସିଡ୍ ଭିତରେ ମିଳେଇ ହୋଇ ରହିଥିଲା ଲାଉଏ ଏବଂ ଫ୍ରାଙ୍କଙ୍କର ନୋବେଲ୍ ପୁରସ୍କାରର ମେଡାଲ୍ । ଉଭୟ ପଦାର୍ଥ ବିଜ୍ଞାନରେ

ନୋବେଲ୍ ପୁରସ୍କାର ପାଇଥିଲେ । ଲାଉଏ ୧ ୯ ୧ ୪ ମସିହାରେ ଏବଂ ଫ୍ରାଙ୍କ୍ ୧ ୯ ୨ ୫ରେ । ନାଜିମାନଙ୍କ ଡରରେ ସେମାନେ ବୋହରଙ୍କୁ ପଦକ ଦୁଇଟି ସାଇତି ରଖିବା ପାଇଁ ଦେଇଥିଲେ । କେମିତି ଅବା ଲୁଚେଇ ରଖିଥାନ୍ତେ ତାକୁ ? ତେଣୁ ବୋହର୍ ପଦକ ଦୁଇଟିକୁ ଏସିଡ୍ ଭିତରେ ବୁଡେଇ ଦେଲେ । ପଦକ ସେଥିରେ ମିଳେଇ ଗଲା । ପରେ ଏସିଡ୍‌ରୁ ସୁନା ବାହାରକରି ପୁଣି ପଦକ ଦୁଇଟିକୁ ଅବିକଳ ଭାବରେ ଗଢ଼ା ଯାଇଥିଲା । ତାଙ୍କ ନିଜ ନୋବେଲ୍ ପଦକଟିକୁ ସେ ଫିନ୍‌ଲାଣ୍ଡର ଯୁଦ୍ଧ ପାଣ୍ଠିକୁ ଦାନ କରିଦେଇଥିଲେ ।

❑❑❑



# ପ୍ରକୃତିପ୍ରେମୀ ଆଗାସିଜ୍

ଜିନ୍ ଲୁଇ ଆଗାସିଜ୍ ଥିଲେ ଜଣେ ସଫଳ ଶିକ୍ଷକ । ସେ ଏଭଳି ଭାବରେ ପଢ଼ାନ୍ତି ଯେ ଭଲ ପଢୁ ନ ଥିବା ଛାତ୍ର ବି ତାଙ୍କ ଶ୍ରେଣୀରେ ଅମନୋଯୋଗୀ ହୋଇପାରେନି । ସେ ମଧ୍ୟ ଥିଲେ ଜଣେ ଶିଳାବିଜ୍ଞାନୀ । ବିଭିନ୍ନ ଜାତିର ପଥର ବିଷୟରେ ଗବେଷଣା କରିବା ସଙ୍ଗେ ସଙ୍ଗେ ବରଫସ୍ରୋତ ବିଷୟରେ ମଧ୍ୟ ସେ ଅନେକ ଗବେଷଣା କରିଥିଲେ । ସେ ଚିକିତ୍ସା ବିଜ୍ଞାନରେ ବି. ପି. ଏଚ୍. ଡି. କରିଥିଲେ । ତେବେ ମାଛମାନଙ୍କ ଉପରେ କରିଥିବା ଗବେଷଣା ଯୋଗୁଁ ସେ ବେଶୀ ଜଣାଶୁଣା । ଆମାଜନ୍ ନଦୀରେ ବାସ କରୁଥିବା ଅନେକ ଜାତିର ମାଛ ବିଷୟରେ ସେ ଗବେଷଣା କରି ପ୍ରବନ୍ଧ ପ୍ରକାଶ କରିଥିଲେ । ସେହି ପ୍ରବନ୍ଧ ପ୍ରକାଶ ପାଇଲା ୧୮୨୯ ମସିହାରେ । ସେତେବେଳକୁ ତାଙ୍କୁ ମାତ୍ର ୨୨ ବର୍ଷ । ଯୁବା ବୟସରୁ ମଧ୍ୟ ସେ ଦେଶ ବିଦେଶରେ ବିଶେଷ ଖ୍ୟାତି ଅର୍ଜନ କରିପାରିଥିଲେ ଓ ଜନପ୍ରିୟ ହୋଇପାରିଥିଲେ ।

ସେ ଥରେ ସାଙ୍ଗ ସାଥୀମାନଙ୍କ ସହ ବାହାରକୁ ବୁଲି ଯାଇଥା'ନ୍ତି । ଭୋକ କରିବାରୁ ବାଟରେ ଜଳଖିଆ ଖାଇବାକୁ ଅଟକିଲେ ସେମାନେ । ସମସ୍ତେ କଥାବାର୍ତ୍ତା ଆଉ ଗପସପରେ ମଜି ଯାଇଥା'ନ୍ତି । କେହି କେହି ଗପସପରେ ଆଗାସିଜ୍‌ଙ୍କ ନାଁ ଉଚ୍ଚାରଣ କରୁଥା'ନ୍ତି । ପାଖରେ ବସିଥିଲେ ଜଣେ ବୁଢ଼ାଲୋକ । ତାଙ୍କ କାନରେ 'ଆଗାସିଜ୍' ନାଁଟା ପଡ଼ିଲା । ସେ ନିଜ ବସିବା ଜାଗା ଛାଡ଼ି ଏହି ଯୁବକଦଳଙ୍କ ପାଖକୁ ଚାଲିଆସିଲେ । ସାଙ୍ଗମାନେ ଯାହାଙ୍କୁ ଆଗାସିଜ୍ ବୋଲି ଡାକୁଥା'ନ୍ତି, ତାଙ୍କ ପାଖରେ ଆସି ଠିଆ ହେଲେ । ଅତି ନମ୍ରଭାବରେ ବୃଦ୍ଧଜଣକ ତାଙ୍କୁ ପଚାରିଲେ, ''କ୍ଷମା କରିବେ ଆଜ୍ଞା, ଆପଣ କ'ଣ ନିଉସାଟେଲ୍‌ର ଖ୍ୟାତନାମା ପ୍ରଫେସର୍ ଆଗାସିଜ୍‌ଙ୍କ ପୁତ୍ର ?''

ବୃଦ୍ଧଙ୍କର ଏହି ପ୍ରଶ୍ନରେ ବଡ଼ ଅପ୍ରସ୍ତୁତ ହୋଇପଡ଼ିଲେ ଆଗାସିଜ୍ । ସେ ଟିକିଏ ମୁରୁକି ହସା ଦେଲେ । କିଛି କହିବାପାଇଁ ପାଟି ଖୋଲିବା ପୂର୍ବରୁ ତାଙ୍କର ଜଣେ ସାଥୀ ଉତ୍ତର ଦେଲେ, ''ମହାଶୟ, ଆପଣ ତ ସ୍ୱୟଂ ଆଗାସିଜ୍‌ଙ୍କ ଆଗରେ ଠିଆ ହୋଇ ତାଙ୍କରି ସାଙ୍ଗରେ ହିଁ କଥା ହେଉଛନ୍ତି ।''

ବୃଦ୍ଧଜଣକ ନିଜର ଭୁଲ୍ ପାଇଁ କ୍ଷମା ମାଗିଲେ ।

ଆଗାସିଜ୍‌ଙ୍କୁ ଚିହ୍ନି ପାରି ନ ଥିବାରୁ ଦୋଷ ସ୍ୱୀକାର କଲେ । ଫେରିଯିବା ପୂର୍ବରୁ ଅତି ଧୀରସ୍ୱରରେ କହିଲେ, ''ଏତେ କମ୍ ବୟସରେ ଏତେବଡ଼ ଜ୍ଞାନୀ ! ଯୁବା ଶରୀରରେ ଜ୍ଞାନଭରା ବିରାଟ ମସ୍ତିଷ୍କ ! ''

ମାଟିତଳୁ ମିଳୁଥିବା ଜୀବମାନଙ୍କ କଙ୍କାଳ, ହାଡ଼ ଏବଂ ମାଟି କିମ୍ବା ପଥର ଦେହରେ ରହିଯାଇଥିବା ସେମାନଙ୍କର ଛାପ ଆଦିକୁ କୁହାଯାଏ ଜୀବାଶ୍ମ । ତାକୁ ପରୀକ୍ଷା କରିବା ଓ ସେ ବିଷୟରେ ଧାରଣା ଦେବାରେ ଆଗାସିଜ୍ ଥିଲେ ସିଦ୍ଧହସ୍ତ । ମାଛର ଜୀବାଶ୍ମକୁ ପରୀକ୍ଷା କରି ମାଛ ଶରୀରର ଗଠନ ବିଷୟରେ ସେ କହିଦେଇପାରୁଥିଲେ ।

ଦିନକର ଘଟଣା ! ଆଗାସିଜ୍ ଯାଇଥାନ୍ତି ଇଂଲଣ୍ଡ । ମାଛ ଶରୀରର ଗଠନ ବର୍ଣ୍ଣନା କରିବାର ଦକ୍ଷତା ଯୋଗୁଁ ତାଙ୍କୁ ମିଳିଥାଏ ଉଲ୍ଲାଷ୍ଟନ୍ ପୁରସ୍କାର । ସେହି ପୁରସ୍କାର ଗ୍ରହଣ କରିବା ଉଦ୍ଦେଶ୍ୟରେ ହିଁ ସେ ଇଂଲଣ୍ଡ୍ ଯାଇଥା'ନ୍ତି । ସେଠାରେ ଏପରି କେତେକ ପ୍ରାଣୀ ବିଜ୍ଞାନୀ ଥାଆନ୍ତି, ଯେଉଁମାନେ ଆଗାସିଜ୍‌ଙ୍କ ମତକୁ ସହଜରେ ଗ୍ରହଣ କରିପାରୁ ନ ଥା'ନ୍ତି । ତେଣୁ ଆଗାସିଜ୍‌ଙ୍କୁ ପରୀକ୍ଷା କରିବା ନିମନ୍ତେ ଏହା ଏକ ସୁଯୋଗ ବୋଲି ମନେକଲେ ସେମାନେ । ସୁଯୋଗକୁ ହାତଛଡ଼ା କରିଦେଲେ ଆଉ ମିଳିବନି । ସେମାନେ ବହୁକଷ୍ଟରେ ଯୋଗାଡ଼ କଲେ ବିରଳ ମାଛର ଏକ ଅତି ପୁରୁଣା ଜୀବାଶ୍ମ । ଜୀବାଶ୍ମଟି ଏତେ ପୁରୁଣା ଥିଲା ଯେ ଆଗାସିଜ୍ ବି ତାଙ୍କ ରଚିତ ବହିରେ ସେ ବିଷୟରେ କିଛି ସୂଚନା ଦେଇ ନ ଥିଲେ । କାରଣ ସେଭଳି ଜୀବାଶ୍ମ ସେ ଆଦୌ ଦେଖି ନ ଥିଲେ । ତେବେ ବୈଜ୍ଞାନିକମାନେ ତ ଆଗାସିଜ୍‌ଙ୍କର ଜ୍ଞାନ ପରୀକ୍ଷା କରିବାକୁ ଯାଇଥିଲେ, ତେଣୁ ସେମାନେ ତାଙ୍କୁ ଜୀବାଶ୍ମଟିକୁ ଦେଖେଇ ଥାନ୍ତେ କିପରି ? ହେଲେ ସେମାନେ ଯେଉଁ ଅଞ୍ଚଳରୁ ଓ ଯେଉଁ ଗଭୀରତାରୁ ତାହା ସଂଗ୍ରହ କରିଥିଲେ, ସେହି ବିଷୟରେ ଆଗାସିଜ୍‌ଙ୍କୁ ପ୍ରଶ୍ନ ପଚାରିଲେ । ସେମାନେ ପଚାରିଲେ, ''ମହାଶୟ, ଅମୁକ ଅଞ୍ଚଳରୁ ଏତିକି ଫୁଟ ଗଭୀରତାରେ ଯଦି କୌଣସି ମାଛର ଜୀବାଶ୍ମ ମିଳେ, ତେବେ ମାଛଟି ଦେଖିବାକୁ କିପରି ହୋଇଥିବ ? ତା'ର ଜୀବାଶ୍ମ ବି କିପରି ଦେଖାଯିବ ?''

ଆଗାସିଜ୍ ଚକ୍ ଖଣ୍ଡେ ଧରି ବ୍ଲାକ୍‌ବୋର୍ଡ଼ପାଖକୁ ଆଗେଇଗଲେ । ବୈଜ୍ଞାନିକମାନଙ୍କ ପ୍ରଶ୍ନ ଅନୁଯାୟୀ ନିଜ କଳ୍ପନାରୁ ଆଙ୍କିଦେଲେ ସେହି କାଳ୍ପନିକ ମାଛର ଛବି । ଛବି ଅଙ୍କା ସରିବାମାତ୍ରେ ବୈଜ୍ଞାନିକମାନେ ଆଗାସିଜ୍‌ଙ୍କୁ ଦେଖେଇଦେଲେ ସେମାନଙ୍କଦ୍ୱାରା ସଂଗ୍ରହ କରାଯାଇଥିବା ମାଛର ଜୀବାଶ୍ମଟିକୁ । ବଡ଼ ଆଶ୍ଚର୍ଯ୍ୟର କଥା ଯେ ଆଗାସିଜ୍ ଆଙ୍କିଥିବା ମାଛର ଛବି ସାଙ୍ଗରେ ପ୍ରକୃତ ଜୀବାଶ୍ମର ଗଠନ ପୂରାପୂରି

ମିଳିଗଲା । ଉପସ୍ଥିତ ଦର୍ଶକମାନେ ହାତତାଳି ଦେଇ ଆଗାସିଜ୍‌ଙ୍କୁ ଅଭିନନ୍ଦନ ଜଣାଇଲେ । ଜଣେ ଦର୍ଶକ କହିଥିଲେ, ''ଲୋକଟା କ'ଣ କିମିଆଁ ଜାଣିଛି ନାଁ କଅଣ ? ଭଗବାନଙ୍କର ଗୋପନୀୟ ଯୋଜନାକୁ ବି ଜାଣିନେଉଛି !''

ଆଗାସିଜ୍ କ୍ରମେ ବୁଢ଼ା ହୋଇ ଆସିଲେ । ତାଙ୍କ ମନରେ ଧାରଣା ଆସିଲା ଯେ ସେ ଆଉ ବେଶି ଦିନ ବଞ୍ଚିବେନି । ତେଣୁ ବାକିଥା କାମତକ ଚଞ୍ଚଳ ଚଞ୍ଚଳ ସାରିଦେବା ପାଇଁ ସେ ତତ୍ପର ହୋଇଉଠିଲେ । ବଜାର୍ଡ଼୍ ଉପସାଗରରେ ଥିଲା ପେନିକିଜ୍ ନାମକ ଏକ ନିର୍ଜନ ଦ୍ୱୀପ । ସେହି ଦ୍ୱୀପରେ ସେ ଏକ ବିଦ୍ୟାଳୟ ଖୋଲିବା ପାଇଁ ସ୍ଥିର କଲେ । ସମୁଦ୍ର କୂଳରୁ ଦ୍ୱୀପଟି ଥିଲା ପାଖାପାଖି ୩୦ କିଲୋମିଟର ଭିତରକୁ । କେଉଁ କାଳର ପୁରୁଣା ଭଙ୍ଗା ଦଦରା ଗୋଦାମ ଘରଟିଏ ଥିଲା ସେଠାରେ । କିନ୍ତୁ ପ୍ରକୃତି କୋଳରେ ହିଁ ଦିଆଯିବ ପ୍ରକୃତି ବିଷୟରେ ଶିକ୍ଷା । ଯେଉଁମାନେ ପ୍ରକୃତି ବିଜ୍ଞାନ ବିଷୟରେ ଗବେଷଣା କରିବାରେ ଆଗ୍ରହୀ, ସେମାନେ ସେଠାରେ ଶିକ୍ଷା ପାଇବେ । କେବଳ ଗ୍ରୀଷ୍ମକାଳରେ ହିଁ ଗବେଷଣାକରାଯିବ ବୋଲି ଠିକ୍ ହେଲା । ଆଗାସିଜ୍ ଗବେଷଣା କାର୍ଯ୍ୟକୁ ତଦାରଖ କରିବାର ଭାର ନେଲେ । କ୍ଲାସ୍ ଆରମ୍ଭ ହେବାର ଦିନ ପାଖେଇ ଆସିଲା । ଆଗାସିଜ୍ ଭାବି ନେଇଥିଲେ ଯେ ପୁରୁଣା ଗୋଦାମ ଘରଟିର ମରାମତି ସରିଯାଇଥିବ । କାରଣ ସେହିଠାରେ ହିଁ ସ୍କୁଲ୍‌ର କାମ ଚାଲିବା କଥା । ଛାତ୍ରମାନଙ୍କର ଆସିବାର ଅଳ୍ପ କିଛିଦିନ ଆଗରୁ ଆଗାସିଜ୍ ଆସି ଦ୍ୱୀପରେ ପହଞ୍ଚିଗଲେ । ସେତେବେଳକୁ ମରାମତି କାମ ଅଧା ହୋଇ ପଡ଼ିଥାଏ । ଜମା କେଇଟା ଦିନ ମାତ୍ର ବାକି । ତେବେ ଆଗାସିଜ୍ ଭାଙ୍ଗି ପଡ଼ିଲେନି ।

ବଢ଼େଇ, କମାର, ମୂଲିଆ ଏବଂ ମିସ୍ତ୍ରୀମାନଙ୍କୁ ସେ ପାଖକୁ ଡାକିଲେ । ସେମାନଙ୍କୁ କହିଲେ, ''ଦେଖ, ମୋ' ନିଜର ଏଥିରେ କିଛି ଫାଇଦା ନାହିଁ । ପିଲାମାନଙ୍କ ପାଠପଢ଼ା ଏବଂ ଗବେଷଣାରୁ କିଛି ଅର୍ଥ ଉପାର୍ଜନ ହେବ ନାହିଁ । ମୁଁ ଯାହାସବୁ କରୁଛି, ତାହା କେବଳ ସେମାନଙ୍କୁ ପଢ଼େଇବା ପାଇଁ । ସେମାନେ ନୂଆ ନୂଆ ବିଷୟ ଜାଣିଲେ ସେମାନଙ୍କର ଜ୍ଞାନ ବଢ଼ିବ । ଏଠାରେ ସେମାନେ ଯେଉଁ ଜ୍ଞାନ ପାଇବେ, ତାକୁ ପୁଣି ଅନ୍ୟମାନଙ୍କୁ ବାଣ୍ଟିଦେବେ । ତୁମ୍ଭେମାନେ କ'ଣ ମୋତେ ଏହି ପୁଣ୍ୟ କାମରେ ସାହାଯ୍ୟ କରିପାରିବନି ? ହାତରେ ତ ଆଉ ସମୟ ନାହିଁ । ପୁଣି ଆସନ୍ତା କାଲି ହେଉଛି ରବିବାର । କଅଣ କହୁଛ ? କାମ ନା ବିଶ୍ରାମ ?''

ଆଗାସିଜ୍‌ଙ୍କ କଥା ମନ୍ତ୍ରଭଳି କାମ କଲା । ସମସ୍ତେ ଏକ ସ୍ୱରରେ କହିଉଠିଲେ, ''ଆମେ ବିଶ୍ରାମ ନ ନେଇ କାମରେ ଲାଗିଯିବୁ ।''

ତାହାହିଁ ହେଲା । ମରାମତି କାମ ସୁରୁଖୁରୁରେ ଏବଂ ଠିକ୍ ସମୟରେ ସରିଗଲା । ଏକ ବୋଟ୍‌ରେ ବସି ଛାତ୍ର ଏବଂ ଶିକ୍ଷକ ଦଳ ନିଉ ବେଡ୍‌ଫୋର୍ଡ଼ ଛାଡ଼ି ପହଞ୍ଚିଲେ ପେନିକିଜ୍

ଦ୍ୱୀପରେ । କୂଳରେ ଠିଆ ହୋଇ ସେମାନଙ୍କୁ ସ୍ୱାଗତ ଜଣେଇଲେ ଆଗାସିଜ୍ ।

ଛାତ୍ର ଏବଂ ଶିକ୍ଷକମାନଙ୍କର ସେହି ଦଳକୁ ଭାଷଣ ଦେଇ ଆଗାସିଜ୍ କହିଥିଲେ, ''ଖାଲି ବହି ପଢ଼ି ଚାଲିଲେ ପ୍ରକୃତି ବିଷୟରେ ପ୍ରକୃତ ଜ୍ଞାନ ଅର୍ଜନ କରି ହେବନାହିଁ । କାରଣ ବହିପଢ଼ା ଜ୍ଞାନ ନେଇ ବାହାର ଦୁନିଆରେ ପହଞ୍ଚିଗଲେ ତୁମେ ପ୍ରକୃତିକୁ ଚିହ୍ନି ବି ପାରିବନି । ଆମର ପାଠ୍ୟପୁସ୍ତକ ଲୋଡ଼ା ନାହିଁ । ଲୋଡ଼ା କେବଳ ତୁମରି ଭଳି ଉତ୍ସାହୀ ଛାତ୍ର । ପ୍ରକୃତି ନିଜେ ହେଉଛି ଏକ ଖୋଲା ପୁସ୍ତକ । ପଢ଼ିବ ତ ତାକୁ ହିଁ ପଢ଼ । ସେହି ଆଲୋଚନାରେ ମଜ୍ଜି ରହ ।''

ପେନିକିଜ୍ ଦ୍ୱୀପରେ ପ୍ରକୃତି ପର୍ଯ୍ୟବେକ୍ଷଣ ବିଦ୍ୟାଳୟ ଖୋଲିବାର ଅଳ୍ପ କେତେ ମାସ ପରେ ଆଗାସିଜ୍‌ଙ୍କର ମୃତ୍ୟୁ ହେଲା । ତାହାଥିଲା ୧୮୭୩ ମସିହା । ମୃତ୍ୟୁ ବେଳକୁ ତାଙ୍କୁ ହୋଇଥିଲା ୬୬ ବର୍ଷ ।



# ଦୁଇପାଖରେ ମୁଣ୍ଡ ଥିବା ମୁଦ୍ରା

ମୋଣ୍ଡ ଲୁଡ୍‌ଉଇଗ୍ ଥିଲେ ଜଣେ ରସାୟନବିତ୍ । ହେଲେ ଧାତୁ ବିଜ୍ଞାନ ଥିଲା ତାଙ୍କର ପ୍ରଧାନ ଗବେଷଣା କ୍ଷେତ୍ର । ସେଇଥିପାଇଁ ତାଙ୍କୁ କୁହାଯାଉଥିଲା 'ଧାତୁର ଯାଦୁକର' ।

ଲୁଡ୍‌ଉଇଗ୍ ଥିଲେ ବେଶ୍ ଜଣାଶୁଣା । କିନ୍ତୁ ବଡ଼ ଏକଜିଦିଆ ସେ । ରହୁଥିଲେ ଇଂଲଣ୍ଡରେ । ବେଳେ ବେଳେ ଅତି କିମ୍ଭୂତକିମାକାର ଧାରଣାର ଦାସ ହୋଇପଡୁଥିଲେ ଲୁଡ୍‌ଉଇଗ୍ । ସେ କହୁଥିଲେ ଯେ ଖୁବ୍ ଥଣ୍ଡା କି ଖୁବ୍ ଗରମ ପ୍ରତି ଆମ ଚର୍ମର ପ୍ରତିକ୍ରିୟା ସମାନ । ଏହି ଧାରଣାର ସତ୍ୟତା ପରୀକ୍ଷା କରିବାକୁ ଚାହିଁଲେ ସେ ।

ଦିନେ ସେ ତାଙ୍କ ରୋଷେଇ ଘରକୁ ପଶିଗଲେ । କାଠ ହ୍ୟାଣ୍ଡଲ୍ ଲାଗିଥିବା ଲମ୍ବା ଲୁହାଛଡ଼ଟିଏ ନେଇ ତାକୁ ନିଆଁରେ ତତେଇବାରେ ଲାଗିଲେ । ରୋଷେଇ ଘରେ ବସି ଅଟା ଦଳୁଥାଏ ତାଙ୍କର ରୋଷେଇଆଣୀ । ଲୁଡ୍‌ଉଇଗ୍ କାହିଁକି ଲୁହାଛଡ଼କୁ ଲାଲ୍ ହେବା ପର୍ଯ୍ୟନ୍ତ ନିଆଁ ଉପରେ ରଖିଛନ୍ତି, ତାହା ସେ ବୁଝିପାରୁ ନ ଥାଏ । ଲୁଡ୍‌ଉଇଗ୍ ଛଡ଼ଟିକୁ ନିଆଁ ଉପରୁ ଉଠେଇ ଆଣି ରୋଷେଇଆଣୀର ମୁଣ୍ଡ ଉପରେ ଧରିଲେ ଓ ସେ ନ ଚାହିଁଥିଲା ବେଳେ ତା'ର ଫୁଙ୍ଗୁଳା ବେକରେ ଛୁଆଁଇ ଦେଲେ ବରଫ ଖଣ୍ଡେ । ବରଫ ଦ୍ୱାରା ଛୁଆଇଁ ଥିଲେ ମଧ ରୋଷେଇଆଣୀଟି ଛାନିଆରେ ପାଟିକରି ଉଠିଲା ''ଜଳିଗଲି, ଜଳିଗଲି ..... !''

ଆଉ ଦିନକର କଥା । ନିଜ ଘର ଗବେଷଣାଗାର ଭିତରେ କାର୍ଯ୍ୟରତ ଥାଆନ୍ତି ଲୁଡ୍‌ଉଇଗ୍ । ଏତିକିବେଳେ ତାଙ୍କ ପୁଅ ଆଲ୍‌ଫ୍ରେଡ୍ ଦୌଡ଼ି ଆସି କହିଲା, ''ବାପା, ଆମ ଘର ସାମନା ଦୋକାନୀ ପାଖରେ ଅଛି ଗୋଟିଏ ସୁନ୍ଦରିଆ ସାଇକଲ୍ । ମୁଁ ତାକୁ ତା'ର ଦାମ୍ ପଚାରିବାରୁ ସେ ଗୋଟିଏ ମୁଦ୍ରା ବୋଲି କହିଲା । ମୋତେ ମୁଦ୍ରାଟିଏ ଦିଅତ ! ମୁଁ ଦୋକାନୀକୁ ମୁଦ୍ରାଟି ଦେଇ ସାଇକଲ୍‌ଟି କିଣି ଆଣିବି ।''

ସାଙ୍ଗେ ସାଙ୍ଗେ ପକେଟ୍‌ରେ ହାତ ପୂରେଇ ଲୁଡ୍‌ଉଇଗ୍ ମୁଦ୍ରାଟିଏ ବାହାର କଲେ ଓ ତାକୁ ପୁଅ ହାତରେ ଧରେଇ ଦେଲେ ।

ଆଲ୍‌ଫ୍ରେଡ୍ ଖୁସି ହୋଇ ମୁଦ୍ରାଟି ନେଇ ଚାଲିଗଲା । କିନ୍ତୁ ଅଳ୍ପ ସମୟରେ ଫେରି ଆସି କହିଲା, ''ଦୋକାନୀ ଏହି ମୁଦ୍ରାଟି ନେବାକୁ ମନା କରିଦେଲା । ଯେଉଁ ମୁଦ୍ରାର

ଦୁଇଟିଯାକ ପାଖରେ ରାଜାଙ୍କ ମୁଣ୍ଡ ଥିବ, କେବଳ ସେହି ମୁଦ୍ରାଟି ପାଇଲେ ସେ ସାଇକେଲ୍‌ଟି ବିକିବ ବୋଲି କହିଲା ।''

ଲୁଡ୍‌ଉଇଗ୍ ଉତ୍ତର ଦେଲେ, ''ତେବେ ତ ମୋତେ ସେହି ଭଳି ମୁଦ୍ରାଟିଏ ଖୋଜିବାକୁ ପଡ଼ିବ । ହେଲେ ତାକୁ ଅଣ୍ଡାଳି ବାହାର କରିବା ପାଇଁ ଅଧଘଣ୍ଟାଏ ସମୟ ଲାଗିପାରେ । ତେଣୁ ତୁ' ଅଧଘଣ୍ଟାଏ ଛାଡ଼ି ଆସିବୁ ।''

ଆଲ୍‌ଫ୍ରେଡ୍ ଚାଲିଗଲା । ସେ ଚାଲିଗଲାପରେ ଲୁଡ୍‌ଉଇଗ୍ କାମରେ ଲାଗିପଡ଼ିଲେ । ଦୁଇଟି ମୁଦ୍ରାନେଇ ପ୍ରତ୍ୟେକକୁ ଦୁଇ ଦୁଇ ଫାଳ କରି କାଟି ଦେଲେ । ତାପରେ ଦୁଇଟି ମୁଣ୍ଡପଟ ଫାଳକୁ ନେଇ ଏକାଠି ପାଖପାଖ ରଖି ଝଳେଇ ଦେଲେ । ଆଲ୍‌ଫ୍ରେଡ୍ ଆସିବା ପୂର୍ବରୁ ଏ' କାମ ସାରିଦେଇ ପକେଟ୍‌ରେ ରଖିଦେଲେ ଦୁଇମୁଣ୍ଡ ଥିବା ମୁଦ୍ରାଟିକୁ ।

କିଛି ସମୟପରେ ଫେରିଲା ଆଲ୍‌ଫ୍ରେଡ୍ । ଲୁଡ୍‌ଉଇଗ୍ ଉକ୍ତ ମୁଦ୍ରାଟିକୁ ପକେଟ୍‌ରୁ ବାହାର କରି ବଢ଼େଇଦେଲେ ତା'କୁ ।

ମୁଦ୍ରାଟି ନେଇ ଆଲ୍‌ଫ୍ରେଡ୍ ଦୌଡ଼ିଲା ଦୋକାନୀ ପାଖକୁ । ଦୋକାନୀକୁ ଧରେଇ ଦେଲା ଦୁଇପଟେ ମୁଣ୍ଡ ରହିଥିବା ମୁଦ୍ରାଟିକୁ । ମୁଦ୍ରାଟି ଦେଖି ଦୋକାନୀ ଅବାକ୍ । ମୁଦ୍ରାଟିକୁ ରଖି ସାଇକେଲ୍‌ଟି ଆଲ୍‌ଫ୍ରେଡ୍‌କୁ ଦେଇଦେବାକୁ ବାଧ ହେଲା ସେ ।



# ଫୁଲ୍‌ଟନ୍‌ଙ୍କ ଗରିବୀ

ରବର୍ଟ ଫୁଲ୍‌ଟନ୍ ଜନ୍ମ ଗ୍ରହଣ କରିଥିଲେ ଆମେରିକାରେ । ସେ ଥିଲେ ଜଣେ ଉଦ୍ଭାବକ, ଇଞ୍ଜିନିୟର୍ ଏବଂ ଶିଳ୍ପୀ । ପ୍ରଥମ ବାଷ୍ପଚାଳିତ ଜାହାଜ ତିଆରି କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ ସେ । ସେ ଥିଲେ ବଡ଼ ଗରିବ । ଚିତ୍ର ଆଙ୍କି ଏବଂ ସେହି ଚିତ୍ରକୁ ବିକି ସେ ପରିବାର ଚଳାଉଥିଲେ ।

ତାଙ୍କ ତିଆରି ବାଷ୍ପଚାଳିତ ଜାହାଜ ପ୍ରତି ଘଣ୍ଟାରେ ଯାଉଥିଲା ପାଞ୍ଚ କିଲୋମିଟରରୁ କମ୍ । ଜାହାଜଟିକୁ ଚଳେଇବାରେ ପ୍ରଥମ ପରୀକ୍ଷା ସେ କଲେ ମିସିସିପି ନଦୀରେ । ଏହା ଦେଖିବା ପାଇଁ ନଈଧାରରେ ଆସି ଗଦା ହୋଇଗଲେ ଶହ ଶହ ଲୋକ ।

ପ୍ରଥମେ ବାଷ୍ପ ବାହାର କରିବା ନିମନ୍ତେ ବ୍ୟବସ୍ଥା କଲେ ଫୁଲ୍‌ଟନ୍ । କିଛି ସମୟ ପରେ ଜାହାଜଟି ଦୋହଲିବାକୁ ଆରମ୍ଭ କଲା । ଚିମିନି ଦେଇ ବାହାରିବାରେ ଲାଗିଲା ଧୂଆଁ । ଲୋକେ କିନ୍ତୁ ପାଟିକରି ଉଠିଲେ, ''ଜାହାଜ ଜମା ଚାଲିବନି । ଚାଲି ପାରିବନି ଆଦୌ ।'' କାରଣ ସେମାନେ ସିନା ପାଲଟଣା ଜାହାଜ ଦେଖିଥିଲେ । ହେଲେ ବାଷ୍ପରେ ଚାଲିପାରିବା ଜାହାଜକୁ ସେମାନେ କଳ୍ପନାରେ ଆଣି ପାରିଲେନି ।

ସେ ଯାହାହେଉ, ଖୁବ୍ ଜୋରରେ ଶବ୍ଦକରି ଜାହାଜଟି ପାଣିରେ ଆଗକୁ ଆଗକୁ ଚାଲିବାରେ ଲାଗିଲା । ଲୋକେ ପୁଣି ପାଟିକଲେ, ''ଚାଲିଲା ସିନା, ହେଲେ ତାକୁ ଆଉ ବନ୍ଦ କରିହେବ ନାହିଁ ।'' କିନ୍ତୁ ଫୁଲ୍‌ଟନ୍ କଳ ମୋଡ଼ି ଜାହାଜ ଚାଲିବା ବନ୍ଦ କରେଇଦେଲେ ।

ଜାହାଜ ଚଳେଇ ଫୁଲ୍‌ଟନ୍ ପହଞ୍ଚିଗଲେ ଆଲ୍‌ବାନିରେ । ଏପରି ଏକ ବିସ୍ମୟକର ଯାନଟିକୁ ଦେଖିବା ନିମନ୍ତେ ଛୁଟିଲେ ଲୋକ । ସେତିକିବେଳର ନିଜର ଏକ ଅନୁଭୂତି ବିଷୟରେ ଲେଖିଛନ୍ତି ଜଣେ ବ୍ୟକ୍ତି । ସେ ଲେଖିଛନ୍ତି, ''ଜାହାଜଟି ନିୟୁୟର୍କ ଫେରି ଯାଉଥିବାର ଖବର ପାଇ ମୁଁ ଯାଇ ସେଠାରେ ପହଞ୍ଚିଗଲି । ଉଠିଗଲି ଜାହାଜ ଉପରକୁ । 'ଫୁଲ୍‌ଟନ୍ କାହାନ୍ତି' ବୋଲି ପଚାରିବାରୁ ଜାହାଜରେ କାମ କରୁଥିବା ଲୋକ ଜଣକ ମୋତେ ଗୋଟିଏ କୋଠରି ଦେଖେଇଦେଲେ ।

''ଜାହାଜ ଭିତରେ ଥିବା ସେହି କ୍ୟାବିନ୍ ଭିତରକୁ ପଶିଗଲି ମୁଁ । କ୍ୟାବିନ୍ ଭିତରେ ବସିଥାନ୍ତି ଜଣେ ଅତି ସାଧାସିଧା ବ୍ୟକ୍ତି । ଅତ ଭଦ୍ର ଜଣାପଡୁଥାନ୍ତି ସେ । ଏକୁଟିଆ ବସି ସେ କିଛି ଲେଖାଲେଖିରେ ବ୍ୟସ୍ତ ଥାଆନ୍ତି ।

ମୁଁ ପଚାରିଲି, – ''ଆପଣ କ'ଣ ଶ୍ରୀଯୁକ୍ତ ଫୁଲ୍‌ଟନ୍ ?''

''ହଁ, ଆଜ୍ଞା'' – ସେ ଉତ୍ତର ଦେଲେ ।

'' ମୁଁ ଆପଣଙ୍କ ଜାହାଜରେ ଯିବାକୁ ଚାହୁଁଛି । ସୁବିଧା ହେବ କି ?''

''ଏ'ତ ବଡ଼ ଖୁସିର କଥା ଆମପାଇଁ ।''

''କେତେ ଭଡ଼ା ଲାଗିବ ବୋଲି ମୁଁ ପଚାରିବାରୁ ସେ ୬ ଡଲାର୍ ବୋଲି କହିଲେ । ପକେଟ୍‌ରୁ ୬ ଡଲାର ବାହାରକରି ମୁଁ ତାଙ୍କ ହାତରେ ରଖିଦେଲି । ସେ ଗୋଟିଏ ଆଖି ତା ଉପରେ ନିବଦ୍ଧ ରଖି ହଠାତ୍ ନିଶ୍ଚଳ ହୋଇଗଲେ । ତାଙ୍କୁ ଚୁପ୍ ହୋଇଯିବାର ଦେଖି ମୋତେ ବି ଟିକିଏ ଅଡୁଆ ଲାଗିଲା । ମୁଁ ଭାବିଲି ବୋଧହୁଏ ମୋର ପଇସା ଗଣିବା ଭୁଲ୍ ହୋଇଯାଇଛି । ସେଇଥିପାଇଁ ମୁଁ ପଚାରିଲି – ''ପଇସା ଠିକ୍ ଅଛିତ ଆଜ୍ଞା ?''

''ମୋ' ପ୍ରଶ୍ନ ଶୁଣି ହଠାତ୍ ଯେପରି ସେ ଚେଇଁ ଉଠିଲେ । ଅତି ନିର୍ଲିପ୍ତ ଭାବରେ ଚାହିଁ ରହିଲେ ମୋ' ମୁହଁକୁ । ଆଖି ଦୁଇଟି ତାଙ୍କର ଲୁହରେ ଢଳଢଳ ।''

ଥର ଥର ଗଳାରେ ସେ କହିଲେ, ''ମୋତେ ଆଜ୍ଞା କ୍ଷମା କରିବେ । ହାତରେ ଏ ଟଙ୍କା କେତୋଟି ଦେଖି ଅତୀତ କଥା ମନେପଡ଼ିଯାଉଛି ମୋର । ବାଷ୍ପକୁ ଜାହାଜ ଚଳେଇବାରେ ବ୍ୟବହାର କରିବା ପାଇଁ ମୁଁ ଯେତେ କଷ୍ଟ ସହିଛି, ଆପଣ ଦେଇଥିବା ଏ ଟଙ୍କାତକ ତା'ର ପ୍ରଥମ ପୁରସ୍କାର । ଏଇ ଖୁସିରେ ଆପଣଙ୍କ ସାଙ୍ଗରେ ବସି ପାଟି ମିଠା କରିବା କଥା । କିନ୍ତୁ କ'ଣ କରିବି କହନ୍ତୁ । ମୁଁ ଏତେ ଗରିବ ଯେ ସାଙ୍ଗ ହୋଇ ଖାଇବା ନିମନ୍ତେ ବି ମୋ ପାଖରେ ପଇସା ନାହିଁ । ମୋର ଆଶା, ଆପଣ ମୋତେ ଭୁଲ୍ ବୁଝିବେନି ।''





# ବାହାହେବାକୁ ସମୟ କାହିଁ ?

ଜନ୍ ଡାଲ୍‌ଟନ୍ ଥିଲେ ଜଣେ ରସାୟନ ବିଜ୍ଞାନୀ । ମୌଳିକ ଉପାଦାନଗୁଡ଼ିକର ଆକାର ଏବଂ ଓଜନ ସମ୍ପର୍କରେ ସେ ପ୍ରଥମ କରି ତଥ୍ୟ ପ୍ରଦାନ କରିଥିଲେ । ସେଥିପାଇଁ ସେ ପୃଥିବୀ ପ୍ରସିଦ୍ଧ । ସେ ସ୍କୁଲ୍ -କଲେଜରେ ବିଶେଷ ପଢ଼ାପଢ଼ି କରି ନ ଥିଲେ । କହିବାକୁ ଗଲେ ସେ ନିଜେ ଥିଲେ ନିଜର ଶିକ୍ଷକ ।

୧୭୯୪ ମସିହାର କଥା । ମାଞ୍ଚେଷ୍ଟର୍ ସାହିତ୍ୟ ଏବଂ ଦର୍ଶନ ପରିଷଦର ସେ ସଭ୍ୟରୂପେ ନିର୍ବାଚିତ ହୋଇଥାନ୍ତି । ରବିବାର ଦିନ ବସେ ସଭା । ସଭାରେ ଯୋଗ ଦିଅନ୍ତି ଡାଲ୍‌ଟନ୍ । ଥରେ ତାଙ୍କର ବନ୍ଧୁମାନେ ଡାଲ୍‌ଟନ୍‌ଙ୍କୁ କହିଲେ ଯେ ସେ ଗାଢ଼ ଲାଲ୍ ରଙ୍ଗର କୋଟ୍ ପିନ୍ଧି ସଭାକୁ ଆସିବା ଆଦୌ ଶୋଭା ପାଉନି । ଏ କଥା ଶୁଣି ସେ ଆଶ୍ଚର୍ଯ୍ୟ ହୋଇଗଲେ । ବନ୍ଧୁମାନେ ତାଙ୍କୁ ଥଟ୍ଟା କରୁଛନ୍ତି ବୋଲି ଭାବିଲେ ସେ । ସେ ପଚାରିଲେ, ''ଲାଲ୍‌ରଙ୍ଗର କୋଟ୍ ? ମୁଁ ତ ଫିକା ବାଦାମୀ ରଙ୍ଗର କୋଟ୍ ପିନ୍ଧି ସଭାକୁ ଆସେ ।'' ସେତିକିବେଳେ ଜଣାପଡ଼ିଲା ଯେ ତାଙ୍କ ଆଖିରେ ରହିଛି ଏକ ଜନ୍ମ ଦୋଷ । ତେଣୁ ସେ ଲାଲ୍ ରଙ୍ଗ ବାରି ପାରନ୍ତି ନାହିଁ । ଏହାପରେ ସେ ଆଖିର ରଙ୍ଗ ବାରି ନ ପାରିବା ବିଷୟରେ ଗବେଷଣା କଲେ । ସେ ବିଷୟରେ ପ୍ରବନ୍ଧ ଲେଖି ପ୍ରକାଶ କଲେ ।

ଡାଲ୍‌ଟନ୍ ଥିଲେ ବଡ଼ ଗରିବ । ଗବେଷଣା କରିବା ସଙ୍ଗେ ସଙ୍ଗେ ସେ ଘରେ ଛାତ୍ରମାନଙ୍କୁ ଟିଉସନ୍ କରୁଥିଲେ । ଏପରିକି ରାତିବେଳା ମଧ୍ୟ ଟିଉସନ୍ କରି ପଇସା ରୋଜଗାର କରୁଥିଲେ ।

ପରମାଣୁ ତତ୍ତ୍ୱ ବିଷୟରେ ଧାରଣା ଦେଲାପରେ ଡାଲ୍‌ଟନ୍ ବେଶ୍ ଜଣାଶୁଣା ହୋଇଗଲେ । ସାରା ଇଉରୋପରେ ତାଙ୍କର ନାଁ ହୋଇଗଲା । ଥରେ ତାଙ୍କୁ ଦେଖିବାକୁ ଆସିଲେ ପେଲ୍ଲେଟିଅର୍ । ପେଲ୍ଲେଟିଅର ଥିଲେ ଫ୍ରାନ୍‌ସର ଜଣେ ମହାପଣ୍ଡିତ । ତାଙ୍କର ଧାରଣା ଥିଲା ଯେ ଡାଲ୍‌ଟନ୍ ଜଣେ ଖୁବ୍ ଧନୀଲୋକ । ପ୍ରାସାଦ ଭଳି ଘରେ ରହୁଥିବେ ସେ ।

ପେଲ୍ଲେଟିଅର୍ ମାଞ୍ଚେଷ୍ଟର୍‌ରେ ଆସି ପହଞ୍ଚିଲେ । ଡାଲ୍‌ଟନ୍‌ଙ୍କର କେଉଁଠି ଦେଖାମିଳିବ ବୋଲି ବହୁତ ପଚରା ପଚରି କଲେ । ଅନେକ ଖୋଜାଖୋଜି କଲାପରେ ଜଣେ ଲୋକ ତାଙ୍କୁ ବାଟ କଢ଼େଇ ନେଲା । ଅନ୍ଧାରିଆ ଗଳି ଦେଇ ସେମାନେ ପହଞ୍ଚିଲେ ଏକ ଅସନା ଛୋଟ କୋଠାରେ । କୋଠା ପଛକୁ ଥାଏ ଏକ ଛୋଟ କୋଠରି । କୋଠରି ଭିତରେ ବସିଥାଏ ପିଲାଟିଏ । ତା ହାତରେ ଖଣ୍ଡେ ସିଲଟ । ସେ ସିଲଟରେ କିଛି ଲେଖୁଥାଏ ଓ ତା କାନ୍ଧ ଉପରେ ନଇଁପଡ଼ି ଜଣେ ବୁଢ଼ାଲୋକ ସିଲଟର ଲେଖା ଦେଖୁଥାନ୍ତି ।

ପେଲ୍ଲେଟିଅର୍ ପଚାରିଲେ, ''ଆଜ୍ଞା, ଆପଣ କ'ଣ ଜନ୍ ଡାଲ୍‌ଟନ୍ ?''

ବୃଦ୍ଧ ବ୍ୟକ୍ତି ଜଣକ ଉତ୍ତର ଦେଲେ, ''ହଁ । ତେବେ ଆପଣ ଟିକିଏ ଦୟାକରି ଅପେକ୍ଷା କରନ୍ତୁ । ଏ' ପିଲାଟି ଗଣିତରେ ବଡ଼ ଦୁର୍ବଳ । ତାକୁ ମୁଁ ଗଣିତ ବତେଇ ଦେଉଛି । ଏହି ଅଙ୍କଟି ସାରିଦେଲେ ଆମେ କଥାବାର୍ତ୍ତା ହେବା ।''

ଡାଲ୍‌ଟନ୍‌ଙ୍କ ଭଳି ଜଣେ ବିଖ୍ୟାତ ବୈଜ୍ଞାନିକ ଛୋଟ ପିଲାଟିକୁ ଗଣିତ ବୁଝେଇବାପାଇଁ ଯେ ସମୟ ଦେଇପାରନ୍ତି, ଏହା ଦେଖି ବିସ୍ମିତ ହୋଇପଡ଼ିଲେ ପେଲ୍ଲେଟିଅର୍ ।

ପରେ ଡାଲ୍‌ଟନ୍ ମାଞ୍ଚେଷ୍ଟର୍ କଲେଜ୍‌ରୁ ଇସ୍ତଫା ଦେଇଦେଲେ । ଦିନେ ସକାଳେ ସେ ରାସ୍ତାରେ ଚାଲିଚାଲିଯାଉଥାନ୍ତି । ରାସ୍ତାରେ ପଡ଼ିଲା ରେଭ୍‌ରେଣ୍ଡ ଜନ୍‌ସନ୍‌ଙ୍କ ଘର । ଜନ୍‌ସନ୍‌ଙ୍କ ସ୍ତ୍ରୀ ଠିଆ ହୋଇଥାଆନ୍ତି ଝରକାପାଖରେ । ତାଙ୍କୁ ଶୁଭେଚ୍ଛା ଜଣେଇବା ନିମନ୍ତେ ଡାଲ୍‌ଟନ୍ ଝରକା ପାଖକୁ ଚାଲିଗଲେ ।

ଡାଲ୍‌ଟନ୍‌ଙ୍କୁ ଦେଖି ସେ ପଚାରିଲେ, ''କଅଣ ଡାଲ୍‌ଟନ୍ ? ତମର ତ ଜମା ଦେଖାନାହିଁ । ଆମକୁ ପାସୋରି ଦେଲ ବୋଧହୁଏ ?''

ଡାଲ୍‌ଟନ୍ ଉତ୍ତର ଦେଲେ, ''ନା,ନା, ଆପଣମାନଙ୍କୁ ପାସୋରି ପକେଇବି କାହିଁକି ? ବରଂ ଭାବୁଛି ଆସି ଆପଣମାନଙ୍କ ପାଖରେ ରହିଯିବି ।''

ସତକୁ ସତ ସେ ସେଇଆ କଲେ । ଚାଲି ଆସିଲେ ଜନ୍‌ସନ୍‌ଙ୍କ ଘରକୁ । ସେଇଠି ରହିଗଲେ ପୂରା ତିରିଶବର୍ଷ !

ବୟସ ଗଡ଼ି ଚାଲିଥାଏ । ବିବାହ କରିବାର ନାଁ ଧରୁ ନ ଥାନ୍ତି ଡାଲ୍‌ଟନ୍ । ଥରେ ତାଙ୍କର ବନ୍ଧୁମାନେ ପଚାରିଲେ, ''ହଇଓ ଡାଲ୍‌ଟନ୍ । କଅଣ ବାହା ହେବାପାଇଁ ମନେ ପଡୁନି ?''

''ଡାଲଟନ୍ ହସି ହସି ଉତ୍ତର ଦେଲେ, ବାହାହେବାପାଇଁ ମୋ ପାଖରେ ସମୟ କାହିଁ ? ମୋ ମୁଣ୍ଡ ଭିତର ସାରା ଖେଳୁଛି 'ତ୍ରିଭୁଜ, ରାସାୟନିକ କ୍ରିୟା', ଓ 'ବୈଦ୍ୟୁତିକ

ପରୀକ୍ଷା ନିରୀକ୍ଷା' ଇତ୍ୟାଦି । ମୁଣ୍ଡକୁ ଫୁରୁସତ ମିଳିଲେ ସିନା ବାହାହେବା ଭଳି ବାଜେ କଥାରେ ସେ ମାତିବ ।''

ସାରା ପୃଥିବୀରେ ଜଣେ ଉଚ୍ଚ କୋଟୀର ବୈଜ୍ଞାନିକ ହିସାବରେ ଡାଲ୍‌ଟନ୍ ସମ୍ମାନ ପାଇଲେ । ଏହି ଉଦ୍ଦେଶ୍ୟରେ କେତେକ ସଂସ୍ଥାମିଶି ନିର୍ମାଣ କଲେ ଡାଲ୍‌ଟନ୍‌ଙ୍କର ଏକ ପ୍ରତିମୂର୍ତ୍ତି । ପ୍ରତିମୂର୍ତ୍ତିଟି ଗଢ଼ା ସରିଲାପରେ ସେମାନେ ତାଙ୍କୁ ଆଣି ମୂର୍ତ୍ତିଟିକୁ ଦେଖାଇଲେ । ଡାଲ୍‌ଟନ୍ ନିଜର ପ୍ରତିମୂର୍ତ୍ତିକୁ ନିରେଖି ଚାହିଁଲେ । ଟିକିଏ ନିରବ ହୋଇଯାଇ ସେ କହିଲେ, ''ହଁ ଏହା ସେହି ପ୍ରଖ୍ୟାତ ରସାୟନ ବିଜ୍ଞାନୀ ଜନ୍ ଡାଲ୍‌ଟନ୍‌ଙ୍କର ପ୍ରତିମୂର୍ତ୍ତି । କିନ୍ତୁ ମୁଁ ହେଉଛି ଏକ ଫମ୍ପା ନଗଣ୍ୟ ମଣିଷଟିଏ ମାତ୍ର !''



# ତୁମେ କଅଣ ଘରର ଚାକରାଣୀ ?



''ମେରୀ, ତୋ'ର କ'ଣ ପଢ଼ିବାକୁ ଇଛା, କହିଲୁ ? ''

ବାପାଙ୍କର ଏହି ପ୍ରଶ୍ନରେ ମେରୀ ତୁରନ୍ତ ଉତ୍ତର ଦେଲେ, ''ମୁଁ ଡାକ୍ତରି ପଢ଼ିବାକୁ ପ୍ୟାରିସ୍ ଯିବି । ସେଠାରେ ଝିଅମାନେ ଡାକ୍ତରି ପଢୁଥିବାର ମୁଁ ଶୁଣିଛି ।''

ଏ'କଥା ଶୁଣି ବାପାଙ୍କର ମୁହଁ ଶୁଖିଗଲା । ମନରେ ବଡ଼ ଦୁଃଖ ଆସିଲା ତାଙ୍କର । ସେ ରହି ରହି କହିଲେ, ''ତୋ' ବଡ଼ ଭଉଣୀ ପ୍ରୋଞ୍ଜା ବି ଡାକ୍ତରି ପଢ଼ିବା ପାଇଁ ଜିଦ୍ ଧରିଛି । ମୁଁ କେଉଁଠୁ ଏତେ ପଇସା ପାଇବି ଯେ ତୁମ ଦୁଇଜଣଙ୍କୁ ପ୍ୟାରିସ୍‌ରେ ଡାକ୍ତରି ପଢେଇ ପାରିବି ? ମୋତେ ତ କିଛି ବୁଦ୍ଧିବାଟ ଦିଶୁନି, ମେରୀ ? ''

ମେରୀ ବାପାଙ୍କୁ ସାନ୍ତ୍ୱନା ଦେଇ କହିଲେ, ''ଏଥିରେ ବ୍ୟସ୍ତ ହୋଇ ପଡୁଛ କାହିଁକି ? ଆଗେ ପ୍ରୋଞ୍ଜା ଡାକ୍ତରି ପଢ଼ିବାକୁ ଯାଉ । ମୁଁ ଚାକିରି କରି ତା' ପଢ଼ାଖର୍ଚ୍ଚ ତୁଲେଇବି । ସେ ପଢ଼ିସାରିଲେ ମୋ' ପଢ଼ାର ଦାୟିତ୍ୱ ନବ ।'' ସେଇଆ ହେଲା । ପାଞ୍ଚ ବର୍ଷରୁ ଅଧିକ ସମୟ ସେ ଘରୋଇ ମାଷ୍ଟରାଣୀ ହିସାବରେ ଚାକିରି କଲେ । ପାଉଥିଲେ

ଖୁବ୍ କମ୍ ଦରମା । କିନ୍ତୁ ନିୟମିତ ଟଙ୍କା ପଠାଉଥିଲେ ବଡ ଭଉଣୀ ପ୍ରୋଞ୍ଜା ପାଖକୁ ।

ତା' ପରେ ଗଲେ ପ୍ୟାରିସ୍ । କିନ୍ତୁ ସେଠାରେ ଡାକ୍ତରି ପଢ଼ିବା ନୋହିଲା । ପଢ଼ିଲେ ପଦାର୍ଥ ବିଜ୍ଞାନ, ରସାୟନ ବିଜ୍ଞାନ ଏବଂ ଗଣିତ । ରହୁଥିଲେ ଗୋଟିଏ ଛୋଟିଆ ଘରେ । ସେଘରେ ଝରକା ନ ଥିଲା । ରାତି ହେବାମାତ୍ରେ ମାଡ଼ି ଆସୁଥିଲା ଶୀତ । ଘର ଉଷୁମେଇବାରେ ବ୍ୟବସ୍ଥା ନ ଥିଲା । ପାଣି କଳଟିଏବି ନ ଥିଲା ସେଠାରେ । ପାଖରେ ପଇସା ନ ଥିବାରୁ ସବୁଦିନେ ଚା' ଆଉ ପାଉଁରୁଟି ଥିଲା ତାଙ୍କର ଆହାର । କାଁ ଭାଁ ଅବା ଅଣ୍ଡାଟିଏ ପାଟିରେ ବାଜୁଥିଲା । ଏପରିକି ଅଖିଆ ରହିବାରୁ ଦିନେ ସେ ଅଚେତ ହୋଇପଡ଼ିଥିଲେ ।

୧୮୯୫ ମସିହାରେ ମେରୀ ବିବାହ କଲେ ପେରୀ କ୍ୟୁରୀଙ୍କୁ । ତା'ପରଠାରୁ ତାଙ୍କର ନାଁ ହେଲା ମେରୀ କ୍ୟୁରୀ । ମେରୀ କ୍ୟୁରୀ ଏବଂ ପେରୀ କ୍ୟୁରୀ ଉଭୟ ୧୯୦୩ ମସିହାରେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ । ସେମାନେ ଆବିଷ୍କାର କରିଥିଲେ ରେଡ଼ିଅମ୍ । ପରେ ଏକ ରାସ୍ତା ଦୁର୍ଘଟଣାରେ ପଡ଼ି ପେରୀ ପ୍ରାଣତ୍ୟାଗ କଲେ । ଏଥିରେ ବହୁତ ଭାଙ୍ଗି ପଡ଼ିଲେ ମେରୀ । ତଥାପି ଗବେଷଣା କାମ ଛାଡ଼ିଲେନି । ୧୯୧୧ ମସିହାରେ ତାଙ୍କୁ ରସାୟନ ବିଜ୍ଞାନରେ ନୋବେଲ୍ ପୁରସ୍କାର ମିଳିଲା । ପଦାର୍ଥ ବିଜ୍ଞାନ ଏବଂ ରସାୟନ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇବାରେ ସେ ହେଉଛନ୍ତି ଏକମାତ୍ର ବ୍ୟକ୍ତି । ଦୁଇଥର ନୋବେଲ ପୁରସ୍କାର ପାଇବାରେ ମଧ୍ୟ ମେରୀ କ୍ୟୁରୀ ଏକମାତ୍ର ମହିଳା । ତାଙ୍କର ଝିଅ ଆଇରିନ୍ ଏବଂ ଜ୍ୱାଇଁ ଫ୍ରେଡେରିକ୍ ରସାୟନ ବିଜ୍ଞାନ-ନୋବେଲ୍ ପୁରସ୍କାର ପାଇଥିଲେ ୧୯୩୫ ମସିହାରେ । କ୍ୟୁରୀ ପରିବାରର ଘନିଷ୍ଠ ବନ୍ଧୁ ଏବଂ ପଡ଼ୋଶୀ ଡକ୍ଟର ପେରିନ୍ ଥିଲେ ମଧ୍ୟ ଜଣେ ନୋବେଲ ପୁରସ୍କାର ବିଜେତା ।

ମେରୀଙ୍କଠାରେ ଦେଖେଇ ହେବା ଗୁଣ ନ ଥିଲା । ତେଣୁ ଗବେଷଣା ଭଲ ତ ସେ' ଭଲ । ଦିନେ ଆମେରିକାର ଜଣେ ସାମ୍ବାଦିକ ଆସି ପହଞ୍ଚିଲେ ମେରୀକ୍ୟୁରୀଙ୍କ ଘରେ । ସେତେବେଳକୁ ମେରୀ କ୍ୟୁରୀ ମ୍ୟାଡାମ୍ କ୍ୟୁରୀ ନାମରେ ପୃଥିବୀ ସାରା ଜଣାଶୁଣା । ସାମ୍ବାଦିକ ଜଣକ ଘରୁ ଖବର ନେଇ ପହଞ୍ଚିଲେ ଏକ କେଉଟ ବସ୍ତିରେ । ସେଇଠି ଛୁଟି କଟାଉଥାନ୍ତି ମ୍ୟାଡାମ୍ କ୍ୟୁରୀ ।

କେଉଟ ବସ୍ତିରେ ଛୋଟିଆ କୁଡ଼ିଆଟିଏ । କୁଡ଼ିଆର ପାହାଚ ଉପରେ ବସିଥାଏ ସ୍ତ୍ରୀ ଲୋକଟିଏ । ପାଦରେ ଜୋତା ନ ଥାଏ ।

ସ୍ତ୍ରୀ ଲୋକଟିକୁ ସାମ୍ବାଦିକ ଜଣକ ପଚାରିଲେ, ''ତୁମେ କଅଣ ଏ ଘରର ଚାକରାଣୀ ?''

– ''ହଁ'', ସ୍ତ୍ରୀ ଲୋକଟି ଉତ୍ତର ଦେଲା ।

– ''ମାଲିକାଣୀ ଘରେ ଅଛନ୍ତି ?''

– ''ନା, ସେ ବାହାରକୁ ଯାଇଛନ୍ତି ।''

–''କେତେବେଳେ ଫେରିବେ ?''

–''ଜଣାନାହିଁ ।''

–''ଆଚ୍ଛା, ତାଙ୍କ ବିଷୟରେ ମୋତେ କଛି କହିପାରିବ ?'' ଏଇଆ କହି ସାମ୍ବାଦିକ ଜଣକ କାଗଜ-କଲମ ବାହାର କଲେ ।

–''ମୁଁ ତ କିଛି କହି ପାରିବିନି । ତେବେ ମ୍ୟାଡାମ୍ ସବୁବେଳେ କହନ୍ତି ଯେ ଲୋକଙ୍କ ବିଷୟରେ କମ୍ ଆଗ୍ରହୀହୋଇ ତାଙ୍କ ଗବେଷଣା ବିଷୟରେ ବେଶୀ ଆଗ୍ରହୀ ହେବା ତାଙ୍କର ପସନ୍ଦ ।''

ସାମ୍ବାଦିକ ଜଣକ ମୁହଁ ଶୁଖେଇ ଫେରିଗଲେ । ପାହାଚ ଉପରେ ବସିଥିବା ସ୍ତ୍ରୀ ଲୋକ ଜଣକ ଚାକରାଣୀ ନଥିଲେ । ସେ ଥିଲେ ନିଜେ ମ୍ୟାଡାମ୍ କ୍ୟୁରୀ । ସେଇଥିପାଇଁ ମ୍ୟାଡାମ୍ କ୍ୟୁରୀଙ୍କ ବିଷୟରେ କହିବାକୁ ଯାଇ ଆଇନ୍‌ଷ୍ଟାଇନ୍ ମତ ଦେଇଥିଲେ,'' ନାଁ କମେଇଥିବା ଲୋକଙ୍କ ଭିତରେ ମେରୀ ହେଉଛନ୍ତି ଏକମାତ୍ର ବ୍ୟକ୍ତି ଯାହାଙ୍କୁ 'ନାଁ' ଛୁଇଁପାରିନି ।''

ନିଜର ପରିଚୟ ଦେବାକୁ ଅନୁରୋଧ କରିବାରୁ ମ୍ୟାଡାମ୍ କ୍ୟୁରୀ କହିଥିଲେ, ''ମୁଁ ଜନ୍ମ ହୋଇଥିଲି ପୋଲାଣ୍ଡର ୱ୍ୱାର୍ସଠାରେ । ମୋ' ବାପ ମା' ଥିଲେ ଶିକ୍ଷକ । ମୁଁ ବାହା ହୋଇଥିଲି ପେରୀ କ୍ୟୁରୀଙ୍କୁ । ଆମର ଦୁଇଟି ପିଲା । ମୁଁ ଗବେଷଣା କରିଛି ଫ୍ରାନ୍‌ସ୍‌ରେ ।'' ବାସ୍, ଏତିକି ।''

ମ୍ୟାଡାମ୍ କ୍ୟୁରୀ ଆବିଷ୍କାର କରିଥିଲେ ରେଡ଼ିଅମ୍ । ରେଡ଼ିଅମ୍ ଏବେ କର୍କଟରୋଗର ଚିକିତ୍ସାରେ ବ୍ୟବହାର କରାହେଉଛି । କିନ୍ତୁ ରେଡିଅମ୍‌ର ସଂସ୍ପର୍ଶରେ ଆସିବାରୁ ତାଙ୍କୁ ହୋଇଗଲା ରକ୍ତ କର୍କଟରୋଗ । ମଲାପୂର୍ବରୁ ସେ ଅନ୍ଧ ହୋଇ ଯାଇଥିଲେ । ତାଙ୍କର ମୃତ୍ୟୁ ହେଲା ୧୯୩୪ ମସିହାରେ ।





# କବିତା ଲେଖା ନୋହିଲା

ସାର୍ ହମ୍ଫ୍ରେ ଡାଭି ଥିଲେ ଜଣେ ଇଂରେଜ ରସାୟନ ବିଜ୍ଞାନୀ । ସୋଡିଅମ୍ ଏବଂ ପୋଟାସିଅମ୍ ଧାତୁ ନିଷ୍କାସନ କରିବାରେ ସେ ସଫଳ ହୋଇଥିଲେ । ୧୮୧୩ ମସିହାରେ ଆବିଷ୍କାର କରିଥିଲେ ଆୟୋଡିନ୍ । କ୍ଲୋରିନ୍‌ର ଗୁଣ ବିଷୟରେ ମଧ୍ୟ ସେ ଧାରଣା ଦେଇଥିଲେ । ଅନ୍ଧାରିଆ ଖଣି ଭିତରେ ଆଲୁଅ ଜଳେଇବା ତ ବଡ ବିପଦ । କିନ୍ତୁ ଖଣି ଭିତରେ କାମ କରୁଥିବା କର୍ମଚାରୀମାନଙ୍କ ପାଇଁ ସେ ଆବିଷ୍କାର କରିଥିଲେ ଏକ ବତି । ଏହାକୁ 'ଡାଭିଙ୍କ ବତି' ବୋଲି କୁହାଯାଉଥିଲା । ଏହି ବତିର ଆଲୁଅରେ ଖଣି ଭିତର ଆଲୋକିତ ହୋଇପାରୁଥିଲା । ତେଣୁ ଖଣିଭିତରେ କାମ କରିବାରେ ସୁବିଧା ହୋଇଗଲା ।

ଡାଭିଙ୍କ ଛାତ୍ରଜୀବନ ବଡ଼ କଷ୍ଟରେ କଟିଥିଲା । ବିଶେଷ କରି ଜଣେ ଶିକ୍ଷକ ସବୁବେଳେ ଡାଭିଙ୍କ ଉପରେ ଦାଉ ସାଧୁଥିଲେ । ପ୍ରତିଦିନ ଶିକ୍ଷକଙ୍କଠାରୁ ସେ ବେତମାଡ଼ ଖାଉଥିଲେ । ମାଡ଼ ଖାଇ ତାଙ୍କର ପିଚାରେ ନୋଳା ଫାଟି ଯାଉଥିଲା । ବିଶେଷକରି ସମସ୍ତଙ୍କ ଆଗରେ ମାଡ଼ ଦେବାକୁ ଶିକ୍ଷକଙ୍କୁ ଖୁସି ଲାଗୁଥିଲା । ମାଡ଼ ମାରିଲା ବେଳେ ସେ ହସି ହସି ଗାଉଥିଲେ,

''ଶ୍ରୀମାନ୍ ବାବୁ ଡାଭିରେ,
ବେତ ବାଡ଼ିଆ ଖାଇଲା ବେଳେ କିଏ ପଡ଼ିବ ପିଠିରେ ?''

୧୭୭୨ ମସିହାରେ ପ୍ରିଷ୍ଟ୍‌ଲି ଆବିଷ୍କାର କରିଥିଲେ 'ନାଇଟ୍ରସ୍' ଅକ୍‌ସାଇଡ୍ ଗ୍ୟାସ୍ । କିନ୍ତୁ ଡାଭି ଏହି ଗ୍ୟାସ୍‌ର ନାମକରଣ କରିଥିଲେ । ଏହାର ପ୍ରକୃତି ବିଷୟରେ ଧାରଣା ଦେଇଥିଲେ ।

ନାଇଟ୍ରସ୍ ଅକ୍‌ସାଇଡ୍‌କୁ କୁହାଯାଏ 'ଲାଫିଙ୍ଗ୍ ଗ୍ୟାସ୍' । କାରଣ ଟିକିଏ ମିଠାଳିଆ ଗନ୍ଧର ଏହି ଗ୍ୟାସ୍‌କୁ ଅମ୍ଳଜାନ ସହ ମିଶେଇ ଶୁଙ୍ଘିଲେ ମନକୁ ମନ ହସର ସୁଅ ଛୁଟେ । କିନ୍ତୁ ବେଶୀ ସମୟ ଯାଏ ଶୁଙ୍ଘିବାରେ ବିପଦ ।

ହସ ସୃଷ୍ଟି କରୁଥିବା ଏହି ଗ୍ୟାସ୍‌ର ପ୍ରଭାବକୁ ନିଜେ ଥରେ ଅନୁଭବ କରିବା ନିମନ୍ତେ ଚାହିଁଲେ ଡାଭି । ଚାହିଁବାମାତ୍ରେ କାମ । ସେ ଗ୍ୟାସ୍ ଶୁଙ୍ଘିଲେ । ନିଜର ଅନୁଭୂତି ବିଷୟରେ

ସେ ଲେଖିଥିଲେ, ''ଗ୍ୟାସ୍ ଶୁଙ୍ଘିବାକ୍ଷଣି ମୋ' ନାଡ଼ି ଜୋରରେ ଚାଲିଲା । ଛାତି ଦାଉଁ ଦାଉଁ ପଡ଼ିଲା । ମୁଁ ଘରଭିତରେ ପାଗଳଙ୍କ ଭଳି ନାଚିବାରେ ଲାଗିଲି ।''

ଥରେ ସେ ତାଙ୍କର ତିନିଜଣ ବନ୍ଧୁଙ୍କୁ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ନାଇଟ୍ରସ୍ ଅକ୍ସାଇଡ୍ ଶୁଙ୍ଘିବାର ମଜା ଚାଖିବାପାଇଁ ସେମାନଙ୍କୁ ଲୋଭ ଦେଖେଇଲେ । ଡାଭିଙ୍କ କଥାରେ ଭଳିଗଲେ ସେମାନେ । ଜଣେ ବନ୍ଧୁ ଗ୍ୟାସ୍ ଶୁଙ୍ଘିବାମାତ୍ରେ ଠୋ ଠୋ କରି ହସି ଘରସାରା ବୁଲି ନାଚ ଆରମ୍ଭ କରିଦେଲେ । ଅନ୍ୟଜଣେ ଗ୍ୟାସ୍‌ର ପ୍ରଭାବରେ ଡାଭିଙ୍କ ମୁଣ୍ଡରେ ବସେଇଲା ଏକ ନିର୍ଘାତିଆ ମୁଥ । ତୃତୀୟ ଜଣକ ଥିଲେ ଜଣେ ସ୍ତ୍ରୀଲୋକ । ଗ୍ୟାସ୍ ଶୁଙ୍ଘିଲା ପରେ ସେ ଖୁସିରେ ଅତି ଉତ୍ତେଜିତ ହୋଇପଡ଼ିଲେ । ଝଡ଼ ବେଗରେ ଘରୁ ପଦାକୁ ବାହାରି ଆସିଲେ । ଅଜାଣତରେ ଚଢ଼ିଗଲେ ଗୋଟିଏ ବିରାଟ କୁକୁର ଉପରେ । ଧାଇଁଯାଇ ଚଢ଼ିଗଲେ ପାଚିରି ଉପରେ । ପାଚିରି ଡେଇଁ ହସି ହସି ଦୌଡ଼ିବାରେ ଲାଗିଲେ । ହଠାତ୍ ତାଙ୍କୁ ଅଟକେଇ ନ ଥିଲେ ତାଙ୍କ ଅବସ୍ଥା କ'ଣ ହୋଇଥାନ୍ତା, କିଏ ଜାଣେ ?

ନିଜର ଗ୍ୟାସ୍ ଶୁଙ୍ଘିବା ଅନୁଭୂତି ବିଷୟ ଲେଖି ଡାଭି ଏକ ଚିଠି ଦେଇଥିଲେ ତାଙ୍କର ବନ୍ଧୁଙ୍କୁ । ଚିଠିଟିରେ ସେ ଲେଖିଥିଲେ, ''କଲେରିଜ୍ ଥରେ ମତଦେଇଥିଲେ ଯେ ମୁଁ ଯଦି ବିଖ୍ୟାତ ରସାୟନ ବିଜ୍ଞାନୀ ହୋଇନଥାନ୍ତି ତେବେ ହୋଇଥାନ୍ତି, ଏକ ବିରାଟ କବି । କବିତା ଲେଖା ଉପରେ ନାଇଟ୍ରସ୍ ଅକ୍ସାଇଡ୍‌ର ପ୍ରଭାବ ପରିଖିବା ପାଇଁ ଚାହିଁଲି ମୁଁ । କବିତା ଲେଖିବାପାଇଁ ଖାତା, କଲମ ଆଣି ରଖି ଗ୍ୟାସ୍ ଶୁଙ୍ଘିଲି । କେତେବେଳେ କବିତାର ସୁଅ ଛୁଟିବ, ସେଥିପାଇଁ ଅପେକ୍ଷା କଲି । କବିତା ନା ଫବିତା ! ଯେଉଁ ଦୁଇ ଚାରିଧାଡ଼ି କବିତା ଲେଖିଲି, ତା କଥା ନ କହିବା ଭଲ ।''



# ମଉସା, ଏଇଟା କି ପୋକ ?



ପୃଥିବୀରେ ପ୍ରାଣୀମାନେ କିପରି ସୃଷ୍ଟି ହେଲେ ସେ ବିଷୟରେ ଧାରଣା ଦେଇଛନ୍ତି ଚାର୍ଲସ୍ ଡାରଉଇନ୍ । ତାଙ୍କ ମତରେ ପ୍ରଥମେ ଜଳ ଭିତରେ ଜନ୍ମ ନେଲା 'ଆମିବା' ନାମକ ଏକକୋଷୀ ଜୀବ । ପରେ ପରେ ଜାତ ହେଲେ ଜଳଚର, ଉଭୟଚର ଏବଂ ସ୍ଥଳଚର ଜୀବଗୋଷ୍ଠୀ । ସିମ୍ପାଞ୍ଜି ନାମକ ମାଙ୍କଡ଼ ଜାତିର ଜୀବଠାରୁ କୁଆଡ଼େ ବିକାଶ ଲାଭ କରିଛି ମଣିଷ । ଯେଉଁ ଧାରାରେ ଏହି ବିକାଶ ସମ୍ଭବ ହେଲା ତାହାକୁ ବିବର୍ତ୍ତନ ପ୍ରକ୍ରିୟା ବୋଲି କୁହାଯାଉଛି । ଡାର୍‌ଉଇନ୍‌ଙ୍କର ଏହି ତଥ୍ୟ ବିବର୍ତ୍ତନବାଦ ନାମରେ ପୃଥିବୀ ପ୍ରସିଦ୍ଧ ।

କୌଣସି ଜିନିଷକୁ ଟିକିନିଖିଭାବରେ ପରୀକ୍ଷା କରିବା ଥିଲା ଡାର୍‌ଉଇନ୍‌ଙ୍କର ଅଭ୍ୟାସ । ଏହି ଅଭ୍ୟାସ ରହି ଆସିଥିଲା ପିଲାବେଳୁ । ସବୁବେଳେ ସେ କିଛି ନା କିଛି ଭାବୁଥାନ୍ତି । ତେଣୁ ଅଧିକାଂଶ ସମୟରେ ସେ ଅନ୍ୟମନସ୍କ ରହୁଥିବାର ଦେଖାଯାଏ । ଏପରିକି ଥରେ ଅନ୍ୟମସ୍କ ହୋଇ ସେ କୋଠାରୁ ତଳେ ଗଳିପଡ଼ିଲେ । ମରୁ ମରୁ ବଞ୍ଚିଗଲେ ।

ଡାର୍‌ଉଇନ୍ ଆଦୌ ଭଲ ଛାତ୍ର ନ ଥିଲେ । ତାଙ୍କ ବାପା ଭାବୁଥିଲେ ଯେ ଡାର୍‌ଉଇନ୍ କେଉଁ କୁଳର ହେବନି । ସେ ତାଙ୍କୁ 'ବାଳୁଙ୍ଗା' ଟିଏ ବୋଲି ଧରି ନେଇଥିଲେ । କାଳେ ବୁଦ୍ଧିବୃତ୍ତି ଟିକିଏ ମୁଣ୍ଡରେ ଢୁକିବ, ଏଇ ଆଶାରେ ତାଙ୍କ ବାପା ଡାର୍‌ଉଇନ୍‌ଙ୍କୁ ଏକ ସ୍କୁଲରେ ଭର୍ତ୍ତି କରିଦେଲେ । କିନ୍ତୁ ପାଠ ଶାଠର ନାଁ ଧରିଲେନି ଡାର୍‌ଉଇନ୍ । ଶିକ୍ଷକମାନଙ୍କ ପ୍ରତି ତାଙ୍କର ଜମା ଖାତର ନ ଥିଲା । ପଢ଼ିବା ଛାଡ଼ି ସେ ବଗିଚା ଭିତରେ ଲୁଚେଇକରି ଖୋଲିଲେ ଏକ ଗବେଷଣାଗାର । ସେଇଠି ବିତେଇ ଦେଉଥିଲେ ଘଣ୍ଟା ପରେ ଘଣ୍ଟା । ଶିକ୍ଷକମାନେ ଡାର୍‌ଉଇନ୍‌ଙ୍କୁ ଡାକୁଥିଲେ 'ପାଗଳା', ଆଉ ଛାତ୍ରମାନେ ତାଙ୍କର ନାଁ ଦେଇଥିଲେ 'ପବନା',

ସ୍କୁଲ୍‌ର ହେଡ୍‌ମାଷ୍ଟରଙ୍କ ମତରେ ଡାରଉଇନ୍ ଥିଲେ ଜଣେ 'ଅପଦାର୍ଥ' । ସେହି 'ବାଲୁଙ୍ଗା', 'ପାଗଳା', 'ପବନା' ଏବଂ 'ଅପଦାର୍ଥ' ଡାର୍‌ଉଇନ୍ ବିବର୍ତ୍ତନବାଦର ଜନକ ରୂପେ ଆଜି ବିଶ୍ୱବିଖ୍ୟାତ ।

ବିଭିନ୍ନ ଜାତିର ପ୍ରାଣୀମାନଙ୍କ ସୃଷ୍ଟି ବିଷୟରେ ଡାର୍‌ଉଇନ୍ ଦୀର୍ଘ କୋଡ଼ିଏ ବର୍ଷ ଧରି ଗବେଷଣା ଚଳେଇ ଆସିଥିଲେ । ନିଜ ଗବେଷଣାର ଫଳାଫଳ ବିଷୟରେ ହୃଦ୍‌ବୋଧ ହେଲାପରେ ସେ ଏହାକୁ ଲେଖି ସମସ୍ତଙ୍କୁ ଜଣେଇବା ନିମନ୍ତେ ଠିକ୍ କଲେ । ପ୍ରବନ୍ଧ ଲେଖା ହେଲା । ପ୍ରକାଶନ ପାଇଁ ପଠାଇବାକୁ ଯାହା ଡେରି । ଏତିକିବେଳେ ସେ ଡାକ ଯୋଗେ ପାଇଲେ ଅନ୍ୟ ଗୋଟିଏ ପ୍ରବନ୍ଧ । ପ୍ରବନ୍ଧଟି ଆସିଥିଲା ମାଳୟରୁ । ପଠାଇଥିଲେ ତାଙ୍କର ବନ୍ଧୁ ଆଲ୍‌ଫ୍ରେଡ୍ ରସେଲ୍ ୱାଲେସ୍ ।

ଆଲ୍‌ଫ୍ରେଡ୍ ମଧ ଥିଲେ ଜଣେ ବୈଜ୍ଞାନିକ । ଯୋଗକୁ ସେ ମଧ ସେହି ବିବର୍ତ୍ତନବାଦ ଉପରେ ହିଁ ପ୍ରବନ୍ଧଟିକୁ ଲେଖିଥିଲେ । ଡାର୍‌ଉଇନ୍‌ଙ୍କ ବିବର୍ତ୍ତନବାଦ ତଥ୍ୟ ବିଷୟରେ ତାଙ୍କର କିଛି ଧାରଣା ନ ଥିଲା । ଆଲ୍‌ଫ୍ରେଡ୍ ଏବଂ ଡାର୍‌ଉଇନ୍ ସ୍ୱତନ୍ତ୍ର ଭାବରେ ଗବେଷଣା କରି ସମାନ ସିଦ୍ଧାନ୍ତରେ ପହଞ୍ଚିଥିଲେ ।

ଆଲ୍‌ଫ୍ରେଡ୍ ଡାର୍‌ଉଇନ୍‌ଙ୍କୁ ଲେଖିଥିଲେ, ''ମୋ ଗବେଷଣା ପ୍ରବନ୍ଧଟିକୁ ପଠାଇଲି । ଅନ୍ୟ କାହାର ସାହାଯ୍ୟ ନ ନେଇ ମୁଁ ଏହି ଗବେଷଣା କରିଛି । ମୋ ପୂର୍ବରୁ ଅନ୍ୟ କୌଣସି ବୈଜ୍ଞାନିକ ଏଭଳି ଧାରଣା ଦେଇ ନାହାନ୍ତି । ତେଣୁ ବିବର୍ତ୍ତନବାଦର ସ୍ରଷ୍ଟାରୂପେ ମୋତେ ଜଗତରେ ପରିଚିତ କରାଇବା ନିମନ୍ତେ ମୁଁ ଆପଣଙ୍କୁ ଅନୁରୋଧ କରୁଛି ।''

ଡାର୍‌ଉଇନ୍ ଚିଠିଟିକୁ ପଢ଼ିଲେ । ଆଲ୍‌ଫ୍ରେଡ୍‌ଙ୍କୁ ବିବର୍ତ୍ତନବାଦର ସ୍ରଷ୍ଟାବୋଲି ପରିଚିତ କରେଇ ଦେଲେ ନିଜର ପ୍ରତିଷ୍ଠା ମାଟି ହୋଇଯିବ । ତାଙ୍କର ଗବେଷଣା ପାଣିରେ ପଡ଼ିବ । କିନ୍ତୁ ସେ ନିଜର ସ୍ୱାର୍ଥପ୍ରତି ଆଦୌ ଧ୍ୟାନ ଦେଲେନାହିଁ । ସେ ଭାବିଲେ, ''ମୁଁ ବରଂ ମୋର ପ୍ରବନ୍ଧଟିକୁ ନିଆଁରେ ଲଗେଇ ପୋଡ଼ିଦେବି, ହେଲେ ଆଲ୍‌ଫ୍ରେଡ୍‌ଙ୍କ ପ୍ରତି ବିଶ୍ୱାସଘାତକତା କରିପାରିବିନି, ''

ତେବେ ଡାର୍‌ଉଇନ୍‌ଙ୍କର କେତେଜଣ ବନ୍ଧୁ ପରାମର୍ଶ ଦେଲେ ଯେ ଆଲ୍‌ଫ୍ରେଡ୍ ଏବଂ ଡାର୍‌ଉଇନ୍ ଉଭୟଙ୍କ ନାମରେ ପ୍ରବନ୍ଧ ପ୍ରକାଶ କରାଯାଉ । ଏ 'କଥା ଆଲ୍‌ଫ୍ରେଡ୍‌ଙ୍କ କାନକୁ ଗଲା । ସେ ମଧ ଥିଲେ ଡାର୍‌ଉଇନ୍‌ଙ୍କ ଭଳି ମହାନ୍ । ସେ ଲେଖିଥିଲେ, ''ବିବର୍ତ୍ତନବାଦ ତଥ୍ୟ ପାଇଁ ମୋର କୌଣସି ଦାବି ନାହିଁ । ଏ ବିଷୟରେ ସମସ୍ତ ପ୍ରଶଂସା ଡାରଉଇନ୍‌ଙ୍କର ପ୍ରାପ୍ୟ ।'' ବିବାଦର ସମାଧାନ ହୋଇଗଲା । ଆଲ୍‌ଫ୍ରେଡ୍ ଏବଂ ଡାର୍‌ଉଇନ୍ ପ୍ରତ୍ୟେକ ନିଜ ଗୌରବ ପ୍ରତି ଦୃଷ୍ଟି ନ ଦେଇ ଅପରର ଗୌରବ ବୃଦ୍ଧି ପାଇଁ ଚେଷ୍ଟା କରିବା ଏକ ବିରଳ ଉଦାହରଣ ।

ଥରେ ଡାର୍‌ଉଇନ୍ ବୁଲି ଯାଇଥାନ୍ତି ଏକ ଗାଆଁକୁ । ସେହି ଗାଆଁରେ ତାଙ୍କର ଜଣେ ବନ୍ଧୁଙ୍କ ଘର । ବନ୍ଧୁଙ୍କ ଘରେ ପହଞ୍ଚି ଅତିଥି ହୋଇଥାନ୍ତି ସେ । ବନ୍ଧୁଙ୍କର ଦୁଇପୁଅ ଡାର୍‌ଉଇନ୍‌ଙ୍କ ସହ ମଜା କରିବାକୁ ଚାହିଁଲେ । ସେମାନେ ଧରି ଆଣିଲେ ଏକ ପ୍ରଜାପତି, ଗୋଟିଏ ଝିଣ୍ଟିକା, ଗୋଟିଏ ଗୋବର ପୋକ ଏବଂ ଏକ ବିଛା । ପ୍ରତ୍ୟେକ ପ୍ରାଣୀଠାରୁ ଖଣ୍ଡେ ଖଣ୍ଡେ ଅଂଶ କାଟିନେଇ ତାକୁ ଅଠାରେ ଯୋଡ଼ିଦେଲେ । ଏହା ଫଳରେ ତିଆରି ହୋଇଗଲା ଏକ ଅଦ୍ଭୁତ ପ୍ରାଣୀ । 'ପ୍ରାଣୀ'ଟିକୁ ଧରି ସେମାନେ ଡାର୍‌ଉଇନ୍ ରହୁଥିବା ଘରର କବାଟ ଠକ୍ ଠକ୍ କଲେ । କବାଟ ବାଡ଼େଇବା ଶବ୍ଦ ଶୁଣି କବାଟ ଖୋଲି ବାହାରି ଆସିଲେ ଡାରଉଇନ୍ । ପିଲା ଦୁଇଟି ତାଙ୍କୁ ପଚାରିଲେ "ମଉସା, ଆମ ବଗିଚାରୁ ମିଳିଲା ଏଇ ପୋକଟି । କହିଲ ଦେଖି, ଏଇଟା କି ପୋକ (Bug) ?"

ଡାର୍‌ଉଇନ୍ ପଚାରିଲେ, "ଆରେ ପିଲାଏ, ତୁମେ ଯେତେବେଳେ ଏହାକୁ ଦେଖିଲ, ସେ ଗୁଣୁଗୁଣୁ ଶବ୍ଦ (Hum) କରୁଥିଲା ଟି ?"

ଦୁଇଜଣଯାକ ମୁଣ୍ଡ ଟୁଙ୍ଗାରି ଉତ୍ତର ଦେଲେ, "ହଁ, ମଉସା ଗୁଣୁଗୁଣୁ ଶବ୍ଦ କରୁଥିଲା ।"

"ତାହା ହେଲେ ତ ଏ'ଗୋଟାଏ 'ହମ୍‌ବଗ୍' (Humbug) (ଭଣ୍ଡାମି) !"

ପିଲାଏ ସେତିକିରେ ଚୁପ୍ ।

ଅନ୍ୟମାନଙ୍କର ସୁଖ ସୁବିଧା ଦେଖିବା ଥିଲା ଡାର୍‌ଉଇନ୍‌ଙ୍କର ଏକ ମହତ୍ ଗୁଣ । ନିଜ ସ୍ୱାର୍ଥ ପାଇଁ ସେ କେବେହେଲେ କାହାକୁ ବ୍ୟବହାର କରୁ ନ ଥିଲେ । କାହା ମନରେ କଷ୍ଟ ଦେଉ ନ ଥିଲେ ।

୭୩ ବର୍ଷ ବୟସରେ ସେ ଯାଇଥିଲେ ଲଣ୍ଡନ୍ । ନିଜର ଜଣେ ବନ୍ଧୁଙ୍କ ଘରେ ପହଞ୍ଚିଲେ । ଘର ବାରଣ୍ଡାକୁ ଚଢ଼ିଲା ବେଳେ ତାଙ୍କର ମୁଣ୍ଡ ଘୂରେଇଦେଲା । ଚେତା ଚାଲିଗଲା ଭଳି ଲାଗିଲା । ସେତେବେଳେ ତାଙ୍କର ବନ୍ଧୁ ଜଣକ ଘରେ ନ ଥିଲେ । ହଠାତ୍ ଘର ଚାକର ଡାର୍‌ଉଇନ୍‌ଙ୍କ ଟଳଟଳ ଅବସ୍ଥା ଦେଖି ଦଉଡ଼ି ଆସିଲା । ତାଙ୍କୁ ଘର ଭିତରକୁ ଯିବାପାଇଁ ବହୁତ କରି କହିଲା । କିନ୍ତୁ ଡାର୍‌ଉଇନ୍ ଏଥିରେ ରାଜି ହେଲେନି । ସେ ଉତ୍ତର ଦେଲେ, "ମୋ' ପାଇଁ ତୁମେ କାହିଁକି ଅଯଥାରେ ହଇରାଣ ହେବ ? ମୁଁ ଘୋଡାଗାଡ଼ିଟିଏ କରି ଘରକୁ ଫେରିଯିବି ।" ଏଇଆ କହି ସେ ଫେରିଗଲେ । ଏହାର ଅଳ୍ପ କିଛି ଦିନ ପରେ ତାଙ୍କର ମୃତ୍ୟୁ ହୋଇଗଲା ।



# ସଂଜବୁଲାରୁ ଆବିଷ୍କାର

ଅତି ସାମାନ୍ୟ ଏବଂ ସରଳ କାମରୁ ଯେ ଅତି ଉପକାରୀ ଆବିଷ୍କାର ସମ୍ଭବ ହୋଇ ପାରେ, ତା'ର ଅନେକ ଉଦାହରଣ ରହିଛି । ଏହିଭଳି ଏକ ଆବିଷ୍କାର ହେଉଛି ''ବୋର୍‌ଡେକ୍‌ସ୍ ମିକ୍‌ସ୍‌ଚର୍ ।'' ଗଛଲତାର ଫିମ୍ପିରୋଗର ଚିକିତ୍ସାପାଇଁ ଏହି ଔଷଧ ବ୍ୟବହାର କରାଯାଇଥାଏ ।

ମଦ ତିଆରି କରିବାରେ ଫ୍ରାନ୍‌ସ ପ୍ରସିଦ୍ଧ । ଭଳିକି ଭଳି ଭଲ କିସମର ମଦ ପ୍ରସ୍ତୁତ କରିବାରେ ଫ୍ରାନ୍‌ସ୍‌ର ସମକକ୍ଷ କେହି ନ ଥିଲେ ।

୧୮୮୨ ମସିହାର କଥା । ସେତେବେଳେ ଭାରି ଜୋରରେ ଚାଲିଥାଏ ମଦ ବ୍ୟବସାୟ । ଏହି ବ୍ୟବସାୟରୁ ପ୍ରଚୁର ଲାଭ ପାଉଥାଏ ଫ୍ରାନ୍‌ସ୍ । ମଦ ତିଆରି ହେଉଥାଏ ଅଙ୍ଗୁରରୁ । ଅଙ୍ଗୁର ଗଛରେ ବେଳେବେଳେ ପୋକ ଲାଗେ । ପୋକ ଲାଗିଲେ ମରିଯାଏ ଅଙ୍ଗୁର ଗଛ । ତେଣୁ ମଦ ତିଆରି ବାଧା ପଡ଼େ । ବ୍ୟବସାୟୀମାନେ ବହୁତ କ୍ଷତି ସହନ୍ତି । ପୋକମାନଙ୍କୁ ମାରିବା ପାଇଁ ଚେଷ୍ଟା କରୁଥାନ୍ତି ଅଙ୍ଗୁରଚାଷୀମାନେ । ହଠାତ୍ କେମିତି କେଜାଣି ଅଙ୍ଗୁରଗଛକୁ ଆକ୍ରମଣ କରିବସିଲା ଏକ ଧରଣର ଫିମ୍ପି ।

ଫିମ୍ପି ଆକ୍ରମଣ ଯୋଗୁ ଗଛ ଗୁଡିକ ଆକ୍ରାନ୍ତ ହୋଇ ପଡ଼ିଲେ । ଗଛସବୁ ମରିଗଲେ । ଜିଅନ୍ତା ଅଙ୍ଗୁର ଗଛରେ ଭଲ ଫଳ ଧରିଲାନି । ମଦବ୍ୟବସାୟ ବୁଡ଼ି ଯିବାକୁ ବସିଲା ।

ସେତେବେଳେ ଥାଆନ୍ତି ଜଣେ ଉଦ୍ଭିଦ ବିଜ୍ଞାନର ପ୍ରଫେସର୍ । ତାଙ୍କର ପୂରା ନାଁ ପିଏରି ମେରୀ ଆଲେକ୍‌ସିସ୍ ମିଲାର୍‌ଡେଟ୍ । ସବୁଦିନେ ସଂଜବେଳେ ସେ ବୁଲି ବାହାରନ୍ତି । ଏହା ଥିଲା ତାଙ୍କର ନିତିଦିନିଆ ଅଭ୍ୟାସ ।

ଦିନେ ସେ ବୁଲୁବୁଲୁ ଏକ ଅଙ୍ଗୁର ବଗିଚା ପାଖରେ ପହଞ୍ଚିଗଲେ । ଆଗରୁ ଯେ ସେ ଅଙ୍ଗୁର ବଗିଚା ଦେଇ ଯାଇ ନ ଥିଲେ, ତାହା ନୁହେଁ । କିନ୍ତୁ ସେଦିନ ଅଙ୍ଗୁର ବଗିଚା ଉପରେ ତାଙ୍କର ଦୃଷ୍ଟି ଅଟକି ଗଲା ।

ସେ ଦେଖିଲେ ଯେ ରାସ୍ତାକଡ଼କୁ ଲାଗି ଯେଉଁ ଅଙ୍ଗୁର ପେନ୍ଥାମାନ ଓହଳିଛି, ସେଥିରେ ଚାଷୀଟି ବୋଳି ଦେଇଛି ତୁତିଆ ଆଉ ଚୂନ । ଫଳରେ ଅଙ୍ଗୁରମାନ ଦେଖାଯାଉଛି ନୀଳ ରଙ୍ଗର । ନେଳିଆ ଅଙ୍ଗୁରକୁ ବିଷାକ୍ତ ଭାବି କେହ ଚୋରି କରିବାକୁ ହୁଏତ ମନ ବଳେଇବେନି – ଏହା ହିଁ ଥିଲା ଚାଷୀର ଉଦ୍ଦେଶ୍ୟ ।

ଆମେ ହୋଇଥିଲେ, ସେଇଆ ଦେଖି ପୁଣି ବାଟେ ବାଟେ ଚାଲି ଯାଇଥାନ୍ତୁ । କିନ୍ତୁ ମିଲାର୍‌ଡେଟ୍ ସେଇଠି ଟିକିଏ ଅଟକିଗଲେ । ଅଙ୍ଗୁର ବଗିଚାର ବାଡ ପାଖକୁ ଚାଲିଯାଇ ଗଛଗୁଡିକୁ ନିରେଖି ଚାହିଁଲେ । ସେ ଦେଖିଲେ ଯେ ବଗିଚା ଭିତରର ଗଛ ଗୁଡ଼ିକ ଝାଉଁଳି ପଡ଼ିଛି । କିନ୍ତୁ ବାଡ଼ ପାଖରେ ଥିବା ଯେଉଁ ଗଛରେ ତୁତିଆ ଆଉ ଚୂନ ବୋଳା ହୋଇଛି, ସେଗୁଡ଼ିକ ରହିଛନ୍ତି ତାଜା ଆଉ ସତେଜ । କିନ୍ତୁ ଏପରି ତଫାତ୍ କାହିଁକି ?

ମିଲାର୍‌ଡେଟ୍‌ଙ୍କ ମୁଣ୍ଡରେ ସେହି ଚିନ୍ତା ପଶିଲା । ଏହାର କାରଣ ଖୋଜିବା ନିମନ୍ତେ ସେ ଆରମ୍ଭ କରିଦେଲେ ଗବେଷଣା । ସେତେବେଳେ ଫିମ୍ପିରୋଗର ନିରାକରଣପାଇଁ ଯେଉଁ ବୋର୍‌ଡେକ୍ସ୍ ମିକ୍ସ୍‌ଚର୍ ବ୍ୟବହୃତ ହେଉଥିଲା ତାହା ବିଶେଷ ସନ୍ତୋଷଜନକ ନ ଥିଲା । କିନ୍ତୁ ମିଲାର୍‌ଡେଟ୍ ଉକ୍ତ ଗବେଷଣାରେ ମନୋନିବେଶ କରି ବୋର୍‌ଡେକ୍ସ୍ ମିକ୍ସଚରକୁ ଯଥେଷ୍ଟ ଉନ୍ନତ କରାଇ ପାରିଲେ । ସେହିଦିନଠାରୁ ଆଜି ପର୍ଯ୍ୟନ୍ତ ଫିମ୍ପିରୋଗରେ ଏହା ବ୍ୟବହୃତ ହୋଇ ଆସୁଛି ଓ ଅଙ୍ଗୁର ଚାଷୀମାନେ ଶ୍ରଦ୍ଧାରେ ମନେ ପକାଉଛନ୍ତି ମିଲାର୍‌ଡେଟ୍‌ଙ୍କୁ ।

ସଂଜବେଳର ବୁଲାଭଳି ଏକ ଅତି ସାଧାରଣ କାମରେ ବାହାରିଥିଲେ ବୈଜ୍ଞାନିକ ମିଲାର୍‌ଡେଟ୍ । କିନ୍ତୁ ନିଜର ଆଖି ଏବଂ ମନକୁ ସଜାଗ ରଖିଥିବାରୁ ଏକ ଆଖିଦୃଶିଆ ଆବିଷ୍କାର କରିବାରେ ସଫଳତା ପାଇଗଲେ ।

ତୁମ୍ଭମାନଙ୍କ କ୍ଷେତ୍ରରେ ଯେ ଏଭଳି ସୁଯୋଗ ନ ଆସିବ ତାହା କିଏ କହିବ ?



# ଆଳୁ ଖୋଳିବା ଏତିକି



ଅର୍ନେଷ୍ଟ ରଥରଫୋର୍ଡ଼ ଜଣେ ପଦାର୍ଥ ବିଜ୍ଞାନୀ । କିନ୍ତୁ ଏହି ଇଂରେଜ ପଦାର୍ଥ ବିଜ୍ଞାନୀଙ୍କୁ ୧୯୦୮ ମସିହାରେ ରସାୟନ ବିଜ୍ଞାନ ପାଇଁ ନୋବେଲ୍ ପୁରସ୍କାର ମିଳିଥିଲା । ରଥରଫୋର୍ଡ୍ ଜନ୍ମ ହୋଇଥିଲେ ନିଉଜିଲାଣ୍ଡରେ । ସେହିଠାରେ ମଧ୍ୟ ଶିକ୍ଷାଲାଭ କରିଥିଲେ ।

ଅନ୍ୟ ବିଶ୍ୱବିଦ୍ୟାଳୟରେ ସ୍ନାତକ ଶିକ୍ଷା ପାଇଥିବା ଛାତ୍ରମାନଙ୍କୁ ଡିଗ୍ରୀ ଦେବା ନିମନ୍ତେ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ନିଷତ୍ତି ନେଲା ୧୮୯୫ ମସିହାରେ । ଡିଗ୍ରୀ ପାଇବା ପାଇଁ ମନୋନୀତ ହୋଇଥିବା ସ୍ନାତକ ମାନଙ୍କର ଯେଉଁ ପ୍ରଥମ ତାଲିକାଟି ବାହାରିଲା, ସେଥିରେ ଥିଲା ରଥରଫୋର୍ଡ୍‌ଙ୍କର ନାଁ । ଏହି ସମ୍ବାଦ ପ୍ରଥମେ ଜାଣିଲେ ତାଙ୍କର ମାଆ । ରଥରଫୋର୍ଡ୍ ସେତେବେଳକୁ ନିଜ ଜମିରେ ଆଳୁ ଖୋଳିବାରେ ବ୍ୟସ୍ତ । ବେଶ୍ ମନଧ୍ୟାନ ଦେଇ ଆଳୁ ଖୋଳିବା କାମରେ ଲାଗିପଡ଼ିଥାନ୍ତି ସେ । ତାଙ୍କୁ ଏହି ଶୁଭ ସମ୍ବାଦଟି ଦେବାପାଇଁ ମାଆ ଜମି ପାଖକୁ ଧାଇଁଗଲେ । କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରୁ ଡିଗ୍ରୀ ମିଳିବାର ଖବର ଶୁଣି ରଥରଫୋର୍ଡ୍ ହାତରେ ଧରିଥିବା କୋଦାଳଟିକୁ ଫୋପାଡ଼ି ଦେଇ ଖୁସିରେ କହି ଉଠିଲେ, ''ବୁଝିଲ ମାଆ, ଆଳୁ ଖୋଳିବା ଏତିକି । ମୋତେ ଜୀବନରେ ଆଉ କେବେ ଆଳୁ ଖୋଳିବାକୁ ପଡ଼ିବନି ।''

ବିଖ୍ୟାତ କ୍ୟାଭେଣ୍ଡିସ୍ ଲାବୋରେଟରୀର ସେ ଥିଲେ ନିର୍ଦ୍ଦେଶକ । ସେଠାରେ ସମସ୍ତେ ତାଙ୍କୁ ନାଁ ଦେଇଥିଲେ 'କ୍ରୋକୋଡାଇଲ୍' ବା 'କୁମ୍ଭୀର' । 'କୁମ୍ଭୀର' ବୋଲି ଡାକିବା ପଛରେ ରହିଛି ଏକ ଗପ । ଗପଟି କହିଥାନ୍ତି ଅନ୍ୟତମ ନୋବେଲ୍ ପୁରସ୍କାର ବିଜେତା ଅଟୋହାନ୍ । ଥରେ କୁଆଡ଼େ କୁମ୍ଭୀରଟିଏ ଏଣୁତେଣୁ କଅଣ ଗୁଡ଼ାଏ ଖାଇଦେଲା । ସେ ଖାଦ୍ୟ ତା' ପେଟରେ ହଜମ ହେଲାନି । ତେଣୁ ସବୁବେଳେ ତା' ପେଟ ଗଡ଼ଗଡ଼ ହେଲା । ସେ ଯୁଆଡ଼େ ଗଲା, ସମସ୍ତେ ତା' ପେଟ ଗଡ଼ଗଡ଼ ଶବ୍ଦକୁ ଶୁଣିପାରିଲେ । ତେଣୁ ଗଡ଼ଗଡ଼ ଶବ୍ଦ ଶୁଣିଲେ 'ହେଇଟି କୁମ୍ଭୀର ଆସିଗଲା' ବୋଲି ସମସ୍ତେ ଜାଣି ନେଉଥିଲେ ।

ରଥରଫୋର୍ଡ୍‌ଙ୍କର କଣ୍ଠସ୍ୱର ଥିଲା ଖୁବ୍ ଘାଗଡ଼ା । କଥା କହିଲା ବେଳେ ସେ ଖୁବ୍ ବଡ଼ ପାଟିରେ ଜୋରଦେଇ କଥାବାର୍ତ୍ତା କରୁଥିଲେ । ତେଣୁ ସେ ପାଟି ଖୋଲିଲା ମାତ୍ରେ ତାଙ୍କ କଣ୍ଠସ୍ୱର ଅନ୍ୟକୋଠରିରେ ଥିବା ସହକର୍ମୀମାନେ ସହଜରେ ଶୁଣିପାରିନ୍ତି । ସେଇଥିପାଇଁ ଅଟୋହାନ୍‌ଙ୍କ କୁମ୍ଭୀର ଗପକୁ ମନେ ପକାଇ ସେମାନେ ରଥର୍ ଫୋର୍ଡ଼୍‌ଙ୍କୁ ଡାକୁଥିଲେ 'କୁମ୍ଭୀର' ।

ଥଟ୍ଟା ପରିହାସ କରିବାରେ ରଥର୍‌ଫୋର୍ଡ଼୍‌ଥିଲେ ବଡ଼ ଧୁରନ୍ଧର । ବିଶେଷକରି ତାଙ୍କର ଛାତ୍ର ରସେଲଙ୍କୁ ସେ ସବୁବେଳେ ଥଟ୍ଟା କରୁଥିଲେ । ରସେଲ୍ ଥିଲେ ସ୍କଟ୍‌ଲ୍ୟାଣ୍ଡର ବାସିନ୍ଦା । ଦିନେ ଚା' ଖାଉଥାନ୍ତି ସମସ୍ତେ । ରସେଲ୍ ମଧ୍ୟ ଥାଆନ୍ତି ପାଖରେ । ରଥର୍‌ଫୋର୍ଡ କହିଲେ, ''ହେ ରସେଲ୍, ତମ ସ୍କଟ୍‌ଲ୍ୟାଣ୍ଡର ପ୍ରଫେସର୍‌ମାନେ ତମ ଜ୍ଞାନଗାରିମା ବିଷୟରେ ଏମିତି ପ୍ରଶଂସା କରି ସାର୍ଟିଫିକେଟ୍‌ମାନ ଦେଉଛନ୍ତି ଯେ ମୁଁ ବଡ଼ ଅଡୁଆରେ ପଡିଯାଉଛି । ମୁଁ ତ ଛାର ଜିଅନ୍ତା ମଣିଷଟିଏ । କିନ୍ତୁ ପରଲୋକ ଗମନ କରିସାରିଥିବା ମାଇକେଲ୍ ଫାରାଡେ ଏବଂ କ୍ଲାର୍କ ମ୍ୟାକ୍‌ସ୍‌ୱେଲ୍‌ଙ୍କ ଭଳି ପ୍ରଖ୍ୟାତ ବୈଜ୍ଞାନିକମାନେ ବି ତମମାନଙ୍କ ପାସଙ୍ଗରେ ପଡ଼ିବା ନିମନ୍ତେ ପ୍ରତିଯୋଗିତା ଚଳେଇ ଫେଲ୍ ମାରିବେ !''

୧୯୩୧ ମସିହାରେ ରଥର୍‌ଫୋର୍ଡ଼୍‌ଙ୍କୁ 'ଲର୍ଡ଼' ଉପାଧିରେ ଭୂଷିତ କରାଗଲା । ତାଙ୍କୁ ସମ୍ବର୍ଦ୍ଧନା ଜଣେଇବା ନିମନ୍ତେ ଆୟୋଜିତ ହେଲା ଏକ ସଭା । ସେହି ସଭାରେ ଯୋଗ ଦେଇଥାନ୍ତି ୧୯୨୨ ମସିହାରେ ପଦାର୍ଥ ବିଜ୍ଞାନ ନୋବେଲ୍ ପୁରସ୍କାର ପାଇଥିବା ଡକ୍ଟର ନିଲ୍‌ସ୍ ବୋହର୍ । ରଥର୍‌ଫୋର୍ଡ୍ ଏବଂ ବୋହର୍ ଥିଲେ ଘନିଷ୍ଠ ବନ୍ଧୁ ।

ସମ୍ବର୍ଦ୍ଧନା ସଭାରେ ବୋହର୍ ରଥର୍‌ଫୋର୍ଡ୍‌ଙ୍କୁ 'ଲର୍ଡ୍ ରଥର୍‌ଫୋର୍ଡ' ବୋଲି ସମ୍ବୋଧନ କରି ଭାଷଣ ଆରମ୍ଭ କଲେ । ଏହା ଶୁଣି ବଡ଼ ମର୍ମାହତ ହୋଇପଡ଼ିଲେ ରଥରଫୋର୍ଡ୍ । ସଭା ସରିବାମାତ୍ରେ ସେ ବୋହରଙ୍କ ପାଖକୁ ଯାଇ ବଡ଼ ଦୁଃଖରେ କହିଲେ, ''ତୁ' ବି ମୋତେ 'ଲର୍ଡ୍' ବୋଲି କହିପାରିଲୁ ? ଆମ ବନ୍ଧୁତାର ବନ୍ଧନ କ'ଣ ଏଡ଼େ ଦୁର୍ବଳ ?''

ସେମାନଙ୍କର ଅନାବିଳ ବନ୍ଧୁତାକୁ ବହୁତ ସମ୍ମାନ କରୁଥିଲେ ଶ୍ରୀମତୀ ରଥର୍ଫୋର୍ଡ୍ । ୧୯୩୭ ମସିହାରେ ରଥର୍ଫୋର୍ଡ୍‌ଙ୍କର ମୃତ୍ୟୁହେଲା । ତାଙ୍କ ମୃତ୍ୟୁପରେ ସେ ବ୍ୟବହାର କରୁଥିବା ସିଗାରେଟ୍ ଡବାଟିକୁ ଶ୍ରୀମତୀ ରଥର୍ଫୋର୍ଡ୍ ନିଲ୍ସ୍ ବୋହରଙ୍କ ପାଖକୁ ପଠେଇ ଦେଇଥିଲେ । ସିଗାରେଟ୍ ଡବାଟିକୁ ପାଇ ବଡ ଅଭିଭୂତ ହୋଇପଡ଼ିଲେ ବୋହର୍ । ସେ ମନ୍ତବ୍ୟ ଦେଇଥିଲେ, ''ରଥର୍ଫୋର୍ଡ୍ ଏବଂ ମୁଁ ବନ୍ଧୁ ଥିଲୁ ସତ । କିନ୍ତୁ ମୁଁ ତାଙ୍କଠାରୁ ପିତୃସ୍ନେହ ବି ପାଉଥିଲି । ତାଙ୍କୁ ସମ୍ମାନ କରୁଥିଲି ମଧ । ତାଙ୍କର ସେହି ସ୍ନେହ, ଶ୍ରଦ୍ଧା, ମମତା ଏବଂ ଶୁଦ୍ଧ ବନ୍ଧୁତ୍ୱର ସ୍ମାରକୀ ହେଉଛି ତାଙ୍କ ଦ୍ୱାରା ବ୍ୟବହୃତ ହୋଇ ଆସିଥିବା ଏହି ସିଗାରେଟ୍ ଡବାଟି । ପ୍ରତିଦିନ ସିଗାରେଟ୍ ଖାଇବାପାଇଁ ଡବାଟିକୁ ଖୋଲିବାମାତ୍ରେ ରଥର୍ଫୋର୍ଡ୍ ମୋର ନିଶ୍ଚୟ ମନେ ପଡ଼ିବେ । ଏହି ଅମୂଲ୍ୟ ଉପହାରଟି ପାଇଁ ମୁଁ ଶ୍ରୀମତୀ ରଥର୍ଫୋର୍ଡ୍‌ଙ୍କ ନିକଟରେ ଅତି କୃତଜ୍ଞ ।''





# ଫାଇନ୍‌ମ୍ୟାନ୍‌ଙ୍କ ଚଗଲାମି

ରିଚାର୍ଡ ଫାଇନ୍‌ମ୍ୟାନ୍ ଥିଲେ ଜଣେ ପଦାର୍ଥ ବିଜ୍ଞାନୀ । ୧୯୬୫ ମସିହାରେ ତାଙ୍କୁ ନୋବେଲ୍ ପୁରସ୍କାର ମିଳିଥିଲା । ଜଟିଳ ବିଷୟକୁ ଚିତ୍ରକାଟି ଅତି ସରଳ ଭାବରେ ବୁଝେଇ ଦେଇ ପାରୁଥିଲେ ସେ । ଏପରିକି ସେ ଯେଉଁ ଗାଡ଼ି ଚଢି ଯିବା ଆସିବା କରୁଥିଲେ ସେହି ଗାଡ଼ିସାରା ବି ତ୍ରିଭୁଜ, ଚତୁର୍ଭୁଜ ଆଦି ବିଭିନ୍ନ ଚିତ୍ର ଆଙ୍କିଥିଲେ ଫାଇନ୍‌ମ୍ୟାନ୍ । ଆମେରିକାରେ ପରମାଣୁ ବୋମା ତିଆରି କାମରେ ମଧ୍ୟ ସେ ଅଂଶ ଗ୍ରହଣ କରିଥିଲେ ।

ନୋବେଲ୍ ପୁରସ୍କାର ପାଇଲା ପରେ ନିୟୁୟର୍କ ସହରରେ ଥିବା ନିଜ ପିଲାବେଳର ସ୍କୁଲକୁ ବୁଲିଗଲେ ଫାଇନ୍‌ମ୍ୟାନ୍ । ସ୍କୁଲ୍‌ରେ ପୁରୁଣା ନଥିପତ୍ର ଖୋଜି ନିଜ ନାଁ ବାହାରକଲେ । ବାହାରକଲେ ତାଙ୍କ ସମୟର ନମ୍ବର ତାଲିକା । ସେଥିରୁ ଜଣାପଡ଼ିଲା ଯେ ସେ ଜଣେ ଭଲଛାତ୍ର ନ ଥିଲେ । ପରୀକ୍ଷାରେ ପାଉଥିଲେ କମ୍ ନମ୍ବର । ସେ ଖୁବ୍ ବୁଦ୍ଧିଆ ଥିବାର କୌଣସି ପ୍ରମାଣ ମିଳିଲାନି ।

ଘରକୁ ଫେରି ଫାଇନ୍‌ମ୍ୟାନ୍ ତାଙ୍କ ସ୍ତ୍ରୀଙ୍କୁ କହିଥିଲେ, '' ବୁଝିଲ, ମୋ'ର ନୋବେଲ୍ ପୁରସ୍କାର ପାଇବାଟାକୁ ଆଦୌ ଗୁରୁତ୍ୱ ଦିଅନି । ବରଂ ମୋ' ଭଳି ଜଣେ ମାମୁଲି ଛାତ୍ରଟିଏ ଯେ ଦିନେ ନୋବେଲ୍ ପୁରସ୍କାର ପାଇପାରିଲା, ତାହା ହିଁ ହେଉଛି ସବୁଠାରୁ ବଳି ଆଶ୍ଚର୍ଯ୍ୟର କଥା । ''

ସେହି ଫାଇନ୍‌ମ୍ୟାନ୍ ଥିଲେ ଭାରି ମଉଜିଆ । ଚଗଲାମି କରିବା ଥିଲା ତାଙ୍କର ସଉକ । ପରମାଣୁ ବୋମା ତିଆରି ବେଳର କଥା । ବୋମା ତିଆରି ପାଇଁ ଖୁବ୍ ଗୋପନରେ ଗବେଷଣା କାମ ଚାଲିଥାଏ । ଗବେଷଣାଗାର ଭିତରକୁ ବାହାର ଲୋକ ଆସିବାରେ ଜାରି ହୋଇଥାଏ କଟକଣା । ଭିତରୁ କୌଣସି କାଗଜ ପତ୍ର ବାହାରକୁ ଯିବା କି ବାହାରୁ କୌଣସି କାଗଜପତ୍ର ଭିତରକୁ ଆସିବା ଥାଏ କାଠିକର ପାଠ । ଏପରିକି ବୈଜ୍ଞାନିକମାନଙ୍କ ଘରୁ ଆସୁଥିବା ଚିଠିପତ୍ର ଗୁଡ଼ିକ ମଧ୍ୟ ସୁରକ୍ଷା କର୍ମଚାରୀମାନେ ଆଗେ ପଢିସାରିଲା ପରେ ହିଁ ଯେଝା ଯେଝା ଚିଠି ସେମାନଙ୍କ ପାଖକୁ ପଠେଇ ଦିଆଯାଏ ।

ଏହି ସବୁ କଟକଣା ଫାଇନ୍‌ମ୍ୟାନ୍‌ଙ୍କୁ ଭଲ ଲାଗୁ ନ ଥାଏ । ବିଶେଷ କରି ଘରୁ ଆସିଥିବା ନିଜର ଚିଠି ଗୁଡ଼ିକୁ ସୁରକ୍ଷା କର୍ମଚାରୀମାନେ ଆଗେ ପଢିନେବା କଥା ଭାବିଲା

ବେଳକୁ ତାଙ୍କର ହାଡ଼ ଜଳିଯାଏ । ଥରେ ସେ ସୁରକ୍ଷା କର୍ମଚାରୀମାନଙ୍କ ସାଙ୍ଗରେ ଖେଚେଡ଼ାମି କରିବା ପାଇଁ ସ୍ଥିର କଲେ । ମୁଣ୍ଡକୁ ବି ଜୁଟିଗଲା ଦୁଷ୍ଟବୁଦ୍ଧି ।

ଥରେ ଘରକୁ ଯାଇଥିଲା ବେଳେ ସେ ତାଙ୍କ ସ୍ତ୍ରୀଙ୍କୁ କହିଲେ, '' ଶୁଣ, ସୁରକ୍ଷା କର୍ମଚାରୀଙ୍କୁ ପାନେ ଦେବାପାଇଁ ମୋର ଇଚ୍ଛା । ଏମିତି ପାନେ ଦେବି ଯେ ବାପାକୁ ମଉସା ବୋଲି ଡାକିବେ । ତୁମେ ଏଣିକି ମୋତେ ଯେଉଁ ଚିଠିସବୁ ଲେଖିବ, ଚିଠି ଲେଖିସାରି ତାକୁ ଆଗେ ଖଣ୍ଡ ଖଣ୍ଡ କରି ଚିରି ପକେଇବ । ସେହି ଛିଣ୍ଡା ଖଣ୍ଡଗୁଡ଼ିକୁ ଲଫାପାରେ ବନ୍ଦ କରି ପଠେଇଦେବ ମୋ ଠିକଣାରେ । ସେମାନେ ଲଫାପାଖୋଲି ସେଗୁଡ଼ିକ ପାଇବେ । ଆଗେ ସନ୍ଦେହ କରି ବସିବେ ଲେଖାକୁ । ଖଣ୍ଡି ଖଣ୍ଡି କାଗଜଯାକ ଠିକ୍ ଭାବରେ ଯୋଡ଼ି ତାକୁ ପଢିବାକୁ ଚେଷ୍ଟା କରିବେ ସେମାନେ । ଏଭଳି ଖଣ୍ଡିଏ ଚିଠିକୁ ଯୋଡ଼ି ପଢିବାପାଇଁ ବେଶ୍ କିଛି ହଇରାଣ ହେବାକୁ ପଡ଼ିବ ସେମାନଙ୍କୁ । ସେମାନେ ହେବେ ହଇରାଣ, ମୁଁ ଦେଖିବି ମଜା । ''

ବିଭିନ୍ନ ନମ୍ବର ମିଳେଇ ଗୁପ୍ତ ତାଲା ଖୋଲିବା ଥିଲା ତାଙ୍କର ଅନ୍ୟତମ ସଉକ । ପରମାଣୁ ବୋମା ସଂକ୍ରାନ୍ତ ଗୋପନୀୟ କାଗଜ ପତ୍ର ରହୁଥିଲା ଏକ ଷ୍ଟିଲ୍ ଆଲମିରା ଭିତରେ । ଆଲମିରା ଏବଂ କାଗଜପତ୍ର ଦାୟିତ୍ୱରେ ଥିଲେ ତାଙ୍କର ଅନ୍ୟ ଜଣେ ସହକର୍ମୀ ।

ସହକର୍ମୀ ଜଣକ ନ ଥିଲାବେଳେ ଫାଇନ୍‌ମ୍ୟାନ୍ ନମ୍ବର ଏପଟ ସେପଟ କରି ଆଲମିରାର ତାଲା ଖୋଲିବା ନିମନ୍ତେ ଚେଷ୍ଟା କରନ୍ତି । ଦିନେ ସତକୁ ସତ ତାଲା ଖୋଲିଗଲା । ଫାଇନ୍‌ମ୍ୟାନ୍ ଆଲମିରା ଖୋଲି ଗବେଷଣା ସମ୍ବନ୍ଧୀୟ ଗୁପ୍ତ ଫାଇଲକୁ ବାହାର କରି ଆଣିଲେ । ଫାଇଲ୍ ରହିଥିବା ଥାକରେ ରଖିଦେଲେ କାଗଜ ଖଣ୍ଡେ । କାଗଜରେ ଲେଖାଥିଲା, '' ଏ ବଦମାସି କାହାର, ଅନୁମାନ ଲଗାଅ । ''

ସହକର୍ମୀ ଜଣକ ଯେବେ ଆଲମିରା ଖୋଲିଲେ ସେତେବେଳକୁ ଗୁପ୍ତ ଫାଇଲ୍ ଗାଏବ୍ । ବଡ଼ ଘାବରେଇ ଗଲେ ସେ । ଛାନିଆଁରେ ତାଙ୍କ ଦେହରୁ ଝାଳ ବୋହିଗଲା ।

ଫାଇନ୍‌ମ୍ୟାନ୍ କିଛି ନ ଜାଣିଲାପରି ବସିଥାନ୍ତି । ସହକର୍ମୀଜଣକ ବହୁତ ବ୍ୟସ୍ତ ହୋଇପଡୁଥିବାର ଦେଖି ସେ ହସି ହସି ପଚାରିଲେ, '' କଅଣ ? ଚୋର ଧରି ପାରୁନ ? ନିଅ ତମ ଫାଇଲ୍ । ''

ସେତେବେଳେ ଯାଇ ସହକର୍ମୀଙ୍କ ପିଣ୍ଡରେ ପ୍ରାଣ ପଶିଲା । ଏଡ଼େ ବଡ଼ ବୈଜ୍ଞାନିକ ହୋଇମଧ୍ୟ ପିଲାଳିଆମି ଛାଡ଼ି ପାରି ନ ଥିଲେ ଫାଇନ୍‌ମ୍ୟାନ୍ ।

୭୦ ବର୍ଷ ବୟସରେ ୧୯୮୮ ମସିହାରେ ତାଙ୍କର ମୃତ୍ୟୁ ହୋଇଥିଲା ।





# ଫେର୍‌ମି ବନେଇଲେ ବୋକା

ଏନ୍‌ରିକୋ ଫେର୍‌ମି ଥିଲେ ଜଣେ ପଦାର୍ଥ ବିଜ୍ଞାନୀ । ୧୯୩୮ ମସିହାରେ ସେ ନୋବେଲ୍ ପୁରସ୍କାର ପାଇବାର ସୌଭାଗ୍ୟ ଅର୍ଜନ କରିଥିଲେ । ତାଙ୍କୁ ସମ୍ମାନ ଜଣେଇବା ପାଇଁ ଶତତମ ମୌଳିକ ପଦାର୍ଥର ନାମ ରଖାଯାଇଛି 'ଫେର୍‌ମିଅମ୍' ।

ଲୋକଙ୍କ ସହିତ ବେଶୀ ମିଳାମିଶା କରିବାକୁ ସେ ଭଲ ପାଉ ନ ଥିଲେ । ବିଶେଷ କରି ସଭାସମିତିରେ ଯୋଗଦେବା ତାଙ୍କର ଆଦୌ ପସନ୍ଦ ନ ଥିଲା । ୧୯୨୯ ମସିହାରେ ତାଙ୍କୁ ପ୍ରସିଦ୍ଧ ଇଟାଲିଆନ୍ ଏକାଡେମୀରେ ନିଯୁକ୍ତି ମିଳିଲା । ତାଙ୍କ ଭଳି ଜଣେ ବିଖ୍ୟାତ ବୈଜ୍ଞାନିକଙ୍କ ସହ ପରିଚିତ ହେବାପାଇଁ ସରକାରଙ୍କ ଉଚ୍ଚପଦବୀରେ କାମ କରୁଥିବା କର୍ମଚାରୀମାନେ ଖୁବ୍ ଆଗ୍ରହୀ ଥିଲେ । ତେଣୁ ସରକାରଙ୍କ ଦ୍ୱାରା ଆୟୋଜିତ ଉତ୍ସବ ଆଦିରେ ଯୋଗଦେବା ନିମନ୍ତେ ଫେର୍‌ମିଙ୍କୁ ବହୁ ନିମନ୍ତ୍ରଣ ମିଳୁଥିଲା । ଗବେଷଣା କାମ ଛାଡ଼ି ଅନ୍ୟ କେଉଁଠି ବୃଥାରେ ସମୟ ନଷ୍ଟ କରିବା ସେ କିନ୍ତୁ ଚାହୁଁ ନ ଥିଲେ ।

୧୯୩୦ ମସିହାରେ ଇଟାଲୀର ରାଜକୁମାର ତଥା ଭାବୀ ସମ୍ରାଟ୍‌ଙ୍କର ବିବାହ ଅନୁଷ୍ଠିତ ହେଲା । ରାଜକୁମାରଙ୍କର ବିବାହ । ପୁଣି ସେ ହେବେ ପରବର୍ତ୍ତୀ ସମ୍ରାଟ୍ । ତେଣୁ ଭାରି ଧୁମ୍‌ଧାମ୍‌ରେ ଚାଲିଥାଏ ଉତ୍ସବ । ବିବାହ ଉତ୍ସବରେ ଯୋଗଦାନ କରିବା ନିମନ୍ତେ ଫେର୍‌ମିଙ୍କୁ ମଧ୍ୟ ନିମନ୍ତ୍ରଣ ମିଳିଥାଏ ।

ବିବାହ ଭୋଜି ଏବଂ ବନ୍ଧୁମିଳନରେ ଯେଉଁଦିନ ଯୋଗ ଦେବାକଥା, ସେଦିନ ଗବେଷଣାଗାର ଛାଡ଼ି ଯିବାପାଇଁ ଫେର୍‌ମିଙ୍କର ମନ ଡାକିଲା ନାହିଁ । ସାରାଦିନଟା ଗବେଷଣାଗାର ଭିତରେ କଟେଇ ଦେବା ନିମନ୍ତେ ସେ ସ୍ଥିରକଲେ । କିନ୍ତୁ ସେଠାକୁ ଯିବେ କେମିତି ? ଯେଉଁ ରାସ୍ତାଦେଇ ଗବେଷଣାଗାରକୁ ଯିବାକୁ ପଡ଼େ, ବାହାଘର ଯୋଗୁ ସେ ରାସ୍ତାରେ ଜନସାଧାରଣଙ୍କର ଯିବା ଆସିବା ନିଷେଧ କରାଯାଇଥାଏ । କାଳେ କିଏ ପଶି ଆସିବ, ସେଥିପାଇଁ ଜଗିଥାନ୍ତି ବନ୍ଧୁକଧାରୀ ସୈନ୍ୟ ।

ନିଜର ସେହି ଚିରାଚରିତ କୋଟ୍‌ପ୍ୟାଣ୍ଟ ପିନ୍ଧି ଓ ନିଜ ପୁରୁଣା ଧଡଡ଼ା କାର୍‌ଟିକୁ ଚଳେଇ ରାସ୍ତା ଉପରକୁ ଆସିଗଲେ ଫେର୍‌ମି । ତାଙ୍କୁ ଦେଖି ତୁରନ୍ତ ଧାଇଁ ଆସିଲେ କେତେଜଣ ସୈନ୍ୟ । ଅଟକେଇ ଦେଲେ ତାଙ୍କର ଗାଡ଼ିକୁ ।

ସୈନ୍ୟମାନଙ୍କୁ ଦେଖି ଫେର୍‌ମି ଗାଡ଼ି ବନ୍ଦ କରିଦେଲେ । ସେମାନଙ୍କୁ ସାଲ୍ୟୁଟ୍‌ମାରି କହିଲେ,'' ଆଜ୍ଞା, ମୁଁ ହେଉଛି ମହାମାନ୍ୟ ଫେର୍‌ମି ସାହେବଙ୍କର ଡ୍ରାଇଭର୍ । ସେ ଏବେ ଗବେଷଣାଗାରରେ ଗବେଷଣା କାମରେ ବ୍ୟସ୍ତ । ତାଙ୍କୁ ଚଞ୍ଚଳ ଆଣିଲେ ସେ ରାଜକୁମାରଙ୍କ ବିବାହ ଉତ୍ସବରେ ଯାଇ ଯୋଗଦେବେ । ମୋତେ ଟିକିଏ ଦୟାକରି ଛାଡ଼ି ଦିଅନ୍ତୁନା । ମୋତେ ଏ'ପଟେ ଯିବାପାଇଁ ଅନୁମତି ନ ଦେଲେ ବିଚ୍‌ରା ଫେର୍‌ମି ସାହେବ ରାଜକୁମାରଙ୍କ ବିବାହ ଉତ୍ସବରେ ଉପସ୍ଥିତ ହୋଇପାରିବେନି । ''

ଫେର୍‌ମିଙ୍କ ନାଁ ଶୁଣି ସୈନିକମାନେ ଗବେଷଣାଗାରକୁ ଯିବା ନିମନ୍ତେ ତାଙ୍କୁ ବାଟ ଛାଡ଼ିଦେଲେ । ଫେରମି ସାରାଦିନ ଗବେଷଣାଗାରରେ କଟେଇ ଫେରିଲେ ଘରକୁ । ବିବାହ ଭୋଜିରେ ଯୋଗ ଦେବା ନୋହିଲା ।

କାର୍ ମରାମତି କରିବାରେ ବଡ଼ ଓସ୍ତାଦ୍ ଥିଲେ ଫେର୍‌ମି । ଥରେ ତାଙ୍କ ସାଙ୍ଗର ଗାଡ଼ିଟି ଗୋଟିଏ ପେଟ୍ରୋଲ୍ ପମ୍ପରେ ଖରାପ ହୋଇଗଲା । ଏହାଦେଖି ଫେର୍‌ମି ଗାଡ଼ି ପାଖକୁ ଧାଇଁ ଗଲେ । ଖୋଲାଖୋଲି କରି ମରାମତିରେ ଲାଗିପଡ଼ିଲେ । ମରାମତି ସରିଲା । ବନ୍ଧୁ ତାଙ୍କର ଗାଡ଼ିଟିକୁ ଷ୍ଟାର୍ଟ୍‌କରି ଚାଲିଗଲେ ।

ତାଙ୍କର ଏହି ଗାଡ଼ି ମରାମତି କାମକୁ ବଡ଼ ଆଗ୍ରହର ସହିତ ଦେଖୁଥାଆନ୍ତି ପେଟ୍ରୋଲ୍ ପମ୍ପର ମାଲିକ । ବନ୍ଧୁଜଣକ ଗାଡ଼ି ଚଳେଇ ଚାଲିଗଲା ପରେ ସେ ଫେର୍‌ମିଙ୍କ ପାଖକୁ ଚାଲିଆସିଲେ । ସେ ତ ଫେର୍‌ମିଙ୍କୁ ଚିହ୍ନି ନ ଥିଲେ । କିନ୍ତୁ ତାଙ୍କ ଗାଡ଼ି ମରାମତି କରିବା କଳାକୁ ମନେ ମନେ ବେଶ୍ ତାରିଫ୍ କରୁଥିଲେ ପେଟ୍ରୋଲ୍ ପମ୍ପର ମାଲିକ ।

ସେ ଆସି ଫେର୍‌ମିଙ୍କୁ ପଚାରିଲେ,'' ତୁମେ ତ ଜଣେ ଖୁବ୍ ଭଲ ମେକାନିକ୍ । ମୋ' ପାଖରେ ଗୋଟିଏ ମେକାନିକ୍ ଚାକିରି ଖାଲି ଅଛି । ତୁମେ ' ହଁ ' କଲେ ସାଙ୍ଗେ ସାଙ୍ଗେ ତୁମକୁ ନିଯୁକ୍ତି ଦେଇଦେବି । ତୁମେ ରାଜି କି ? ''

ଟିକିଏ ମୁରୁକି ହସାଦେଇ ଫେର୍‌ମି ନିଜ ବାଟରେ ଚାଲିଗଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ସରିଗଲାପରେ ପରମାଣୁ ବୋମାର କାହାଣୀକୁ ନେଇ ଏକ ଛବି କରିବାକୁ ଚାହିଁଲେ ହଲିଉଡ୍‌ର ଜଣେ ପ୍ରଯୋଜକ । ସିକାଗୋର ଏକ ହୋଟେଲ୍

କୋଠରିରେ ସିନେମାର ଫଟୋ ଉଠାଇବା ପାଇଁ ସ୍ଥିର ହେଲା । କୋଠରି ଭିତରେ ଉପସ୍ଥିତ ଥିଲେ ପ୍ରଥମ ନିଉକ୍ଲିଆର୍ ରିଆକ୍ଟର୍ ନିର୍ମାଣର ନେତା ଫେର୍ମି ଏବଂ ପରମାଣୁ ବୋମା ପ୍ରସ୍ତୁତିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିବା ପ୍ରଖ୍ୟାତ ବୈଜ୍ଞାନିକ ସାମୁଏଲ୍ ଆଲ୍ଲିସନ୍ ।

କାମ ସରିଲା । ଦୁଇ ବୈଜ୍ଞାନିକଙ୍କୁ ଘରେ ଛାଡ଼ିଦେଇ ଆସିବା ନିମନ୍ତେ ପ୍ରଯୋଜକ ଜଣକ ପ୍ରସ୍ତାବ ଦେଲେ । ଏହା ସେମାନଙ୍କୁ ଭଲ ଲାଗିଲାନି । କିନ୍ତୁ ପ୍ରଯୋଜକ ବାଧ୍ୟ କରିବାରୁ ସେମାନେ ଶେଷରେ ରାଜିହେଲେ । ସେମାନେ ଯେଉଁ ଗାଡ଼ିରେ ବସି ଘରକୁ ଗଲେ, ତାହା ଥିଲା ଏକ ଦାମିକା କାଡିଲାକ୍ । ଗାଡ଼ିର ଟାୟାର୍ ଚାରିଟି ଥିଲା ଧଳା ।

ଏଭଳି ଏକ ଜାକଜମକିଆ ବିରାଟ କାଡିଲାକ୍ ଗାଡ଼ିରୁ ସେମାନଙ୍କୁ ଓହ୍ଲାଇବାର ଦେଖି ଫେର୍ମିଙ୍କ ଭଡ଼ାଘରର ମାଲିକାଣୀ ମନ୍ତବ୍ୟ ଦେଲେ, " ତୁମ୍ଭେମାନେ ହଠାତ୍ ଏପରି ଜଣାଶୁଣା ହୋଇଉଠିବା ସତରେ ବଡ଼ ଆଶ୍ଚର୍ଯ୍ୟର କଥା । ଛୋଟଲୋକରୁ କେଇଟା ଦିନରେ ବଡ଼ଲୋକ । ମୁଁ ତ ଏହାକୁ ଆଦୌ ବିଶ୍ୱାସ କରିପାରୁନି । "





# ବୈଜ୍ଞାନିକଙ୍କ ମର ଶରୀର ପ୍ରତି ସମ୍ମାନ

ଫ୍ରେଡେରିକ୍ ଜୋଲିଅଟ୍ ବିଜ୍ଞାନରେ ସ୍ନାତକ ଡିଗ୍ରୀ ହାସଲ କଲାପରେ ନିଜର ପ୍ରଫେସର୍ ଡକ୍ଟର୍ ଲାଙ୍ଗେଭିନ୍‌ଙ୍କ ସହ ଦେଖାକଲେ । ଏବେ କ'ଣ କରିବେ, ସେ ବିଷୟରେ ପରାମର୍ଶ ଲୋଡ଼ିଲେ ଲାଙ୍ଗେଭିନ୍‌ଙ୍କର, ସେତେବେଳେ ରେଡିଅମ୍ ଇନ୍‌ଷ୍ଟିଚିଉଟ୍‌ରେ ଗବେଷଣା କରୁଥାନ୍ତି ମ୍ୟାଡାମ୍ କ୍ୟୁରି । ଚାରିଆଡ଼େ ତାଙ୍କର ନାଁ ଡାକ୍ ।

ଲାଙ୍ଗେଭିନ୍‌ଙ୍କ କଥାମାନି ଜୋଲିଅଟ୍ ରେଡିଅମ୍ ଇନ୍‌ଷ୍ଟିଚିଉଟ୍‌ରେ ପହଞ୍ଚିଗଲେ । ମ୍ୟାଡାମ୍ କ୍ୟୁରିଙ୍କ ସହ ଦେଖା କରିବା ନିମନ୍ତେ ତାଙ୍କର ଅନୁମତି ମାଗିଲେ । ସାଙ୍ଗେ ସାଙ୍ଗେ ଅନୁମତି ମିଳିଗଲା । ବଡ଼ ସନ୍ତର୍ପଣରେ କ୍ୟୁରିଙ୍କ କୋଠରି ଭିତରକୁ ପଶିଲେ ଜୋଲିଅଟ୍ । ଭୟରେ ତାଙ୍କର ପାଦ ଥରୁଥାଏ ।

ମ୍ୟାଡାମ୍ କ୍ୟୁରି ପଚାରିଲେ, '' ଆସନ୍ତା କାଲି ସକାଳୁ ଏଠାରେ କାମ ଆରମ୍ଭ କରିବ ତ ? ''

ଜୋଲିଅଟ୍ ଉତ୍ତର ଦେଲେ, '' ମ୍ୟାଡାମ୍, ମୁଁ ଏବେ ସୈନ୍ୟ ବାହିନୀରେ କାମ କରୁଛି । ମୋତେ ଯେଉଁ ଦାୟିତ୍ୱ ଦିଆ ଯାଇଛି, ତାକୁ ପୂରଣ କରିବା ପାଇଁ ଆଉ ତିନି ସପ୍ତାହ ଲାଗିଯିବ । ''

''କ'ଣ ତୁମ କର୍ଣ୍ଣେଲ୍‌ଙ୍କ ନାଁ ? ମୁଁ ଆଜି ତାଙ୍କ ସାଙ୍ଗେ କଥାବାର୍ତ୍ତା କରୁଛି । ସେ ତୁମକୁ ଆଜି ହିଁ ଛାଡ଼ କରିଦେବେ । ତେଣୁ ତୁମେ କାଲି ସକାଳୁ ଆସି ଗବେଷଣା ଆରମ୍ଭ କରିଦିଅ, '' କହିଲେ ମ୍ୟାଡାମ୍ କ୍ୟୁରି ।

ତାହା ହିଁ ହେଲା । କ୍ୟୁରିଙ୍କ ଅନୁରୋଧ ରକ୍ଷାକରି କର୍ଣ୍ଣେଲ୍ ଜୋଲିଅଟ୍‌ଙ୍କୁ ସୈନ୍ୟବିଭାଗରୁ ଅବ୍ୟାହତି ଦେଇଦେଲେ । ଠିକ୍ ପରଦିନ କ୍ୟୁରିଙ୍କ ଅଧୀନରେ ଗବେଷଣା କାମ ଆରମ୍ଭ କରିଦେଲେ ଜୋଲିଅଟ୍ । ସେ ଥିଲେ କ୍ୟୁରିଙ୍କର ସହକାରୀ ।



ପରବର୍ତ୍ତୀ କାଳରେ ଜୋଲିଅଟ୍ ବିବାହ କରିଥିଲେ ମ୍ୟାଡ଼ାମ୍‌କ୍ୟୁରିଙ୍କ ଝିଅ ଆଇରିନ୍‌ଙ୍କୁ । ଜୋଲିଅଟ୍ -ଆଇରିନ୍ ଦମ୍ପତି ଆବିଷ୍କାର କରିଥିଲେ 'କୃତ୍ରିମ ତେଜସ୍କ୍ରିୟତା' । ଏହି ଆବିଷ୍କାର ପାଇଁ ଉଭୟଙ୍କୁ ରସାୟନ ବିଜ୍ଞାନରେ ୧୯୩୫ ମସିହାରେ ନୋବେଲ୍ ପୁରସ୍କାର ମିଳିଥିଲା । ଏହା ପୂର୍ବରୁ ଆଇରିନ୍‌ଙ୍କ ପିତା ପିଏରୀ କ୍ୟୁରୀ ଏବଂ ମାତା ମ୍ୟାଡାମ୍ କ୍ୟୁରି ୧୯୦୩ ମସିହାରେ ପଦାର୍ଥ ବିଜ୍ଞାନରେ ପାଇଥିଲେ ନୋବେଲ୍ ପୁରସ୍କାର । ୧୯୧୧ ମସିହାରେ ମ୍ୟାଡାମ୍ କ୍ୟୁରି ପୁନର୍ବାର ନୋବେଲ୍ ପୁରସ୍କାର ପାଇଥିଲେ ରସାୟନ ବିଜ୍ଞାନରେ । ଝିଅ-ଜ୍ୱାଇଁ ନୋବେଲ ପୁରସ୍କାର ପାଇବାର ବର୍ଷକ ପୂର୍ବରୁ ପରଲୋକ ଗମନ କରିଥିଲେ ମ୍ୟାଡାମ୍ କ୍ୟୁରି ।

ବିଶ୍ୱଯୁଦ୍ଧ ଲାଗିଗଲା । ଶତ୍ରୁ ସୈନ୍ୟମାନେ ଅଧିକାର କରିନେଲେ ଫ୍ରାନ୍‌ସ୍‌କୁ । ଛାନିଆଁହୋଇ ବହୁ ଗବେଷକ ଫ୍ରାନ୍‌ସ୍ ଛାଡ଼ି ଅନ୍ୟ ଦେଶରେ ଆଶ୍ରୟ ନେଲେ । ଆଇରିନ୍ ମଧ୍ୟ ନିଜର ଦୁଇଟି ପିଲାଙ୍କୁ ସାଙ୍ଗରେ ନେଇ ଚାଲିଗଲେ ସୁଇଜରଲାଣ୍ଡ୍ । କିନ୍ତୁ ଫ୍ରାନ୍‌ସ୍ ବିଶ୍ୱବିଦ୍ୟାଳୟରେ ପ୍ରଫେସର ପଦବୀରେ ଥାଇ ଗବେଷଣା କାର୍ଯ୍ୟ ଜାରି ରଖିଥା'ନ୍ତି ଜୋଲିଅଟ୍ ।

ଯୁଦ୍ଧ ସରିଗଲା । ଚାର୍ଲସ୍ ଡିଗଲ୍ ହେଲେ ଫ୍ରାନ୍‌ସ୍‌ର ରାଷ୍ଟ୍ରପତି । ସେ ଜୋଲିଅଟ୍‌ଙ୍କୁ 'ଆଟୋମିକ୍ ଏନର୍ଜି' ( ପରମାଣୁ ଶକ୍ତି) ବିଭାଗର ଚେୟାରମ୍ୟାନ୍ ହିସାବରେ ନିଯୁକ୍ତି ଦେଇଦେଲେ । ୧୯୫୮ ମସିହାରେ ଜୋଲିଅଟ୍‌ଙ୍କର ମୃତ୍ୟୁ ହେଲା । ମୃତ୍ୟୁ ବେଳକୁ ତାଙ୍କର ବୟସ ହୋଇଥିଲା ୫୮ ବର୍ଷ । ମୃତ୍ୟୁର ସାତବର୍ଷ ପୂର୍ବରୁ ତାଙ୍କୁ ପ୍ରଦାନ କରାଯାଇଥିଲା ଷ୍ଟାଲିନ୍ ଶାନ୍ତି ପୁରସ୍କାର ।

ଫ୍ରାନ୍‌ସ୍‌ର ପରମାଣୁ ବିଜ୍ଞାନ କ୍ଷେତ୍ରକୁ ଫ୍ରେଡେରିକ୍ ଜୋଲିଅଟ୍‌ଙ୍କ ଅବଦାନ ଥିଲା ଅବିସ୍ମରଣୀୟ । ତେଣୁ ସେ ମରିଗଲାପରେ ତାଙ୍କ ଶବକୁ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ସଂସ୍କାର କରାଯାଇଥିଲା । ଏଭଳି ସମ୍ମାନ ଜଣାଇ ଫ୍ରାନ୍‌ସ୍ ଜୋଲିଅଟ୍‌ଙ୍କ ପ୍ରତି ନିଜର କୃତଜ୍ଞତା ଜଣାଇଥିଲା ।

ମ୍ୟାଡାମ୍ କ୍ୟୁରିଙ୍କର ପୁଅ ନ ଥିଲେ । ତେଣୁ ତାଙ୍କୁ ମୃତ୍ୟୁ ପରେ ' କ୍ୟୁରି ' ନାଁ ଟା ଲୋପ ପାଇ ଯାଇଥାନ୍ତା । କ୍ୟୁରିଙ୍କ ନାଁକୁ ଅମର ରଖିବା ନିମନ୍ତେ ଫ୍ରେଡେରିକ୍ ଜୋଲିଅଟ୍ 'କ୍ୟୁରି' ସାଂଙ୍ଗାକୁ ଗ୍ରହଣ କରିନେଇଥିଲେ । ତେଣୁ ସେ ଫ୍ରେଡ଼େରିକ୍ ଜୋଲିଅଟ୍ କ୍ୟୁରି ନାମରେ ହିଁ ପରିଚିତ ।

କିନ୍ତୁ ଫ୍ରାନ୍ସ୍‌ରେ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ପ୍ରଥମ ଶବ ସଂସ୍କାର କରାଯାଇଥିଲା କ୍ଲଡେ ବର୍ଣ୍ଣାର୍ଡ୍‌ଙ୍କର । ଲେଖକ ହେବେ ବୋଲି ଅଧାରୁ ପାଠପଢ଼ା ଛାଡ଼ି ଦେଇଥିଲେ ସେ । ୨୧ ବର୍ଷ ବୟସରେ ରଚନା କରିଥିଲେ ପାଞ୍ଚ ଅଙ୍କ ବିଶିଷ୍ଟ ଏକ ଦୁଃଖାନ୍ତ ନାଟକ । ନାଟକଟିର ଭଲ ମନ୍ଦ ବିଚାର କରିବାପାଇଁ ତାକୁ ପଢିବାକୁ ଦେଇଥିଲେ ପ୍ୟାରିସ୍‌ରେ ରହୁଥିବା ଜଣେ ସମାଲୋଚକଙ୍କୁ । ସମାଲୋଚକ ଜଣକ ନାଟକଟିକୁ ମୂଳରୁ ଶେଷ ଯାଏ ପଢିଲେ । ତା'ପରେ ତାକୁ କ୍ଲଡେ ବର୍ଣ୍ଣାଡ୍‌ଙ୍କୁ ଫେରେଇଦେଇ ପରାମର୍ଶ ଦେଲେ, '' ତୁମଦ୍ୱାରା ଲେଖାଲେଖି ହେବନି । ମୋ' କଥାମାନି ସ୍କୁଲ୍‌ରେ ପୁଣି ନାମ ଲେଖାଇ ପଢା ସାରିଦିଅ । ବୁଝି ଖବର୍‌ଦାର, ଆଉ ଦିନେ ଲେଖାଲେଖିରେ ମନ ବଳେଇବନି । ''

ତାହା ହିଁ କଲେ କ୍ଲଡେ ବର୍ଣ୍ଣାଡ୍ । ସୁଫଳ ଫଳିଲା, ବିଜ୍ଞାନ ଇତିହାସରେ ସେ ଜଣେ ପ୍ରଖ୍ୟାତ ଜୀବବିଜ୍ଞାନୀର ମାନ୍ୟତା ପାଇଲେ । ପରୀକ୍ଷାମୂଳକ ଶରୀରବିଜ୍ଞାନର ମୂଳଦୁଆ ପକେଇଥିଲେ ସେ । ୧୮୭୮ ମସିହାରେ ତାଙ୍କର କାଳ ହୋଇଗଲା । ସଂପୂର୍ଣ୍ଣ ରାଷ୍ଟ୍ରୀୟ ମର୍ଯ୍ୟାଦା ସହକାରେ ତାଙ୍କର ଶବ ସଂସ୍କାର କରିଥିଲେ ଫ୍ରାନ୍ସ୍ ସରକାର ।

ଜମା ଦଶବର୍ଷ ବୟସରୁ ସ୍କୁଲ ଛାଡ଼ି ଦେଇଥିଲେ ନାଥାନିଏଲ୍ ବାଓଡିଚ୍ । କିନ୍ତୁ ଜ୍ଞାନ ଅର୍ଜନ କରିବାରେ ପ୍ରବଳ ଆଗ୍ରହ ଥିଲା ତାଙ୍କର । ନିଜ ପ୍ରଚେଷ୍ଟାରେ ସେ ଲାଟିନ୍, ଫ୍ରେଞ୍ଚ୍, ଜର୍ମାନ୍, ସ୍ପାନିଶ୍ ଏବଂ ଇଟାଲିଆନ୍ ଭାଷା ଶିକ୍ଷା କରିବା ସଙ୍ଗେ ସଙ୍ଗେ ବୀଜଗଣିତକୁ ମଧ୍ୟ ଆୟତ୍ତ କରିପକେଇଥିଲେ । ବିଶେଷ କରି ସମୁଦ୍ରରେ ଜାହାଜ ଚଳାଚଳ କ୍ଷେତ୍ରରେ ଗଣିତ ଜ୍ଞାନର ପ୍ରୟୋଗ କରିଥିଲେ ସେ । ନୌଚଳାଚଳ ବିଷୟରେ ଶିକ୍ଷାଦେବା ପାଇଁ ଆଗରୁ ଯେଉଁ ବହିର ସାହାଯ୍ୟ ନିଆ ହେଉଥିଲା, ସେଥିରେ ହଜାର ହଜାର ତ୍ରୁଟିଥିବାର ସେ ଦର୍ଶାଇଥିଲେ । ଏ ସଂକ୍ରାନ୍ତରେ ନିଜେ ରଚନା କରିଥିଲେ ଏକ ପୁସ୍ତକ । ଉକ୍ତ ପୁସ୍ତକ ନୌଚାଳକମାନଙ୍କ ନିକଟରେ ଖୁବ୍ ଆଦୃତ ହେଲା । ନୌଚାଳନା ହୋଇଉଠିଲା ଅଧିକ ନିରାପଦ ।

୧୮୩୮ ମସିହାରେ ପରଲୋକ ଗମନ କଲେ ନାଥାନିଏଲ୍ ବାଓଡିଚ୍ । ତାଙ୍କର ମୃତ୍ୟୁ ସମ୍ବାଦ ପୃଥିବୀରେ ପ୍ରଚାରିତ ହେଲା । ଏହି ଖବରପାଇ ମର୍ମାହତ ହୋଇପଡ଼ିଲେ ନାବିକମାନେ । ତାଙ୍କର ସମ୍ମାନାର୍ଥେ ସବୁଦେଶର ଜାହାଜରେ ଜାହାଜର ପତାକାକୁ ଅର୍ଦ୍ଧନମିତ

କରି ଦିଆ ଯାଇଥିଲା । ଜଣେ ବୈଜ୍ଞାନିକଙ୍କ ମୃତ୍ୟୁରେ ଏଭଳି ସମ୍ମାନ ପ୍ରଦାନ ବିରଳ ।

ସେହିଭଳି ଇଂଲଣ୍ଡର ଓ୍ୱେଷ୍ଟମିନିଷ୍ଟାର୍ ଆବେ' ରେ କବର ଦିଆଯିବା ଏକ ବିରଳ ସମ୍ମାନ । ଗ୍ରେଟବ୍ରିଟେନ୍ ନିଜର କୃତୀ ସନ୍ତାନମାନଙ୍କୁ ଏଭଳି ମର୍ଯ୍ୟାଦା ପ୍ରଦାନ କରିଥାଏ । ଉକ୍ତ ସମ୍ମାନର ଅଧିକାରୀ ହୋଇପାରିଥିଲେ ବିବର୍ତ୍ତନବାଦର ପ୍ରବର୍ତ୍ତକ ଚାର୍ଲସ୍ ଡାର୍‌ଉଇନ୍ । ସେ ମଧ୍ୟ ଥିଲେ ଜଣେ ବିଶିଷ୍ଟ ଜୀବବିଜ୍ଞାନୀ ଏବଂ ପ୍ରକୃତିବିଜ୍ଞାନୀ । ମହାରାଣୀ ଭିକ୍‌ଟୋରିଆଙ୍କ ଆଦେଶରେ ପରଂପରା ଭାଙ୍ଗି ଚାର୍ଲସ୍ ଡାର୍‌ଉଇନ୍‌ଙ୍କ ଶବକୁ ଓ୍ୱେଷ୍ଟମିନିଷ୍ଟର୍ ଆବେରେ କବର ଦେଇଥିଲେ ସରକାର । ଡାରଉଇନ୍ ଅବଦାନ ପ୍ରତି ଏଭଳି ମର୍ଯ୍ୟାଦା ପ୍ରଦାନ ଥିଲା ଅଭୂତପୂର୍ବ ।



ଟେଲିଫୋନ୍‌ର ଉଦ୍ଭାବକ ଆଲେକ୍‌ଜାଣ୍ଡାର ଗ୍ରାହାମ୍ ବେଲ୍ ପରଲୋକ ଗମନ କରିଥିଲେ ୧୯୨୨ ମସିହା ଅଗଷ୍ଟ ମାସ ୨ ତାରିଖରେ । ମୃତ୍ୟୁର ଦୁଇଦିନ ପରେ ହେଲା ତାଙ୍କର ଶବ ସଂସ୍କାର । ସେଦିନ ବେଲ୍‌ଙ୍କ ସମ୍ମାନାର୍ଥେ ଆମେରିକା ଏବଂ କାନାଡାର ସମସ୍ତ ଟେଲିଫୋନ୍‌କୁ ଏକ ମିନିଟ୍ ପାଇଁ ଅଚଳ କରି ଦିଆଯାଇଥିଲା । କହିବାକୁ ଗଲେ ବେଲ୍‌ଙ୍କ ଆତ୍ମାର ସଦ୍‌ଗତି ପାଇଁ ଟେଲିଫୋନ୍ ଗୋଷ୍ଠୀ ଏକ ମିନିଟ ନୀରବତା ପାଳନ କରିଥିଲେ ।





# ଯାହା ବୁଝିଥିବେ ସେଇଆ

ୱାରବର୍ଗଙ୍କର ପୂରା ନାଁ ହେଉଛି ଅଟ୍ଟୋ ହେନ୍‌ରିକ୍ ୱାରବର୍ଗ୍ । ୧୮୮୩ ମସିହା ଅକ୍ଟୋବର ମାସ ଆଠ ତାରିଖରେ ଫ୍ରି'ବର୍ଗ୍‌ଠାରେ ସେ ଜନ୍ମଗ୍ରହଣ କରିଥିଲେ । ୧୯୦୨ ମସିହାର ରସାୟନ ବିଜ୍ଞାନ ନୋବେଲ୍ ବିଜେତା ଏମିଲ ଫିସର୍ ଥିଲେ ତାଙ୍କର ଶିକ୍ଷକ । ୧୯୧୧ ମସିହାରେ ଡାକ୍ତରି ପାସ୍ କଲେ ସିନା, କିନ୍ତୁ ଡାକ୍ତରି ଛାଡ଼ି ଆଦରିନେଲେ ଜୀବରସାୟନ ବିଜ୍ଞାନରେ ଗବେଷଣାକୁ । ଚିକିତ୍ସାବିଜ୍ଞାନରେ ୧୯୩୧ ମସିହାର ନୋବେଲ୍ ପୁରସ୍କାର ମିଳିଥିଲା ତାଙ୍କୁ ।

ସାରା ଜୀବନ ଅବିବାହିତ ରହିଥିଲେ ୱାରବର୍ଗ୍ । ହେଲେ ନିଜ ସ୍ୱାସ୍ଥ୍ୟପ୍ରତି ଥିଲେ ବଡ଼ ସଚେତନ । ବିଛଣାରୁ ଉଠୁଥିଲେ ସାଢେ ପାଞ୍ଚଟାରେ । ଘୋଡ଼ାଚଢ଼ାଥିଲା ଦୈନନ୍ଦିନ ବ୍ୟାୟାମ । ଠିକ୍ ଆଠଟାବେଳେ ପହଞ୍ଚିଯାଉଥିଲେ ଲାବୋରେଟରୀରେ । ତାଙ୍କୁ ସତୁରି ବର୍ଷ ହେଲା ବେଳକୁ ଏହି ନିୟମରେ ସାମାନ୍ୟ ପରିବର୍ତ୍ତନ ହେଲା । ସେତେବେଳେ ଲାବୋରେଟରୀକୁ ଆଠଟା ବଦଳରେ ନଅଟା ବେଳକୁ ଯାଇ ଫେରୁଥିଲେ ଛଅଟାବେଳେ । ଶନିବାର ଦିନ ମଧ୍ୟ କାମ କରୁଥିଲେ ।

ଦୋକାନରୁ କିଣା ଖାଦ୍ୟଦ୍ରବ୍ୟ ଉପରେ ତାଙ୍କର ବଡ଼ ସନ୍ଦେହ ଥିଲା । ସେଥିପାଇଁ ନିଜର ଏକ ବଗିଚା କରିଥିଲେ । ନିଜ ବଗିଚାରୁ ଉତ୍ପାଦିତ ଫଳ ଆଉ ପନିପରିବା ବ୍ୟତୀତ ଅନ୍ୟ ଫଳ ଓ ପନିପରିବା ସେ ଆଦୌ ଛୁଉଁ ନ ଥିଲେ । ନିଜେ ଘରେ ପାଳିଥିଲେ କୁକୁଡ଼ା, ବତକ ଆଉ ହଂସ । କାଳେ ଅଟାରେ କିଏ କ'ଣ ମିଶେଇଦେବ, ସେଇଥିପାଇଁ ଘରେ ତିଆରି କରୁଥିଲେ ପାଉଁରୁଟି । ତାଙ୍କର ଦୃଢ ଧାରଣାଥିଲା ଯେ ଧୂମପାନକଲେ କ୍ୟାନ୍‌ସର୍ ହୁଏ । ତେଣୁ ଧୂମପାନର ଧାର ଧରୁ ନ ଥିଲେ ୱାରବର୍ଗ୍ । ଏହା ଫଳରେ ସାରାଜୀବନ ସେ ସୁସ୍ଥ ଏବଂ କାର୍ଯ୍ୟକ୍ଷମ ରହି ପାରିଥିଲେ । ୨୮ ବର୍ଷ ବୟସରେ ପାଇଥିଲେ ଡକ୍ଟରେଟ୍ । ମାତ୍ର ଚାରିବର୍ଷପାଇଁ ପ୍ରଥମ ବିଶ୍ୱଯୁଦ୍ଧ ବେଳେ ସେନାବାହିନୀରେ କାମ କରିଥିଲେ ସେ । ନୋହିଲେ ତାଙ୍କର ଅବଶିଷ୍ଟ ଜୀବନକାଳ କଟିଥିଲା ଗବେଷଣାଗାରରେ । ୧୯୭୦ ମସିହା ଅଗଷ୍ଟ ଏକ ତାରିଖରେ ପଶ୍ଚିମ ବର୍ଲିନ୍‌ଠାରେ ସେ ପ୍ରାଣତ୍ୟାଗ କରିଥିଲେ । ମୃତ୍ୟୁବେଳକୁ ତାଙ୍କୁ ହୋଇଥିଲା ୮୭ ବର୍ଷ ।

ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ୧୯୫୩ ମସିହାରେ ନୋବେଲ୍ ବିଜେତା ହେଉଛନ୍ତି ହାନ୍‌ସ୍ କ୍ରେବ୍‌ସ୍ । ନିଜର ଅନୁଭୂତି ସମ୍ବନ୍ଧରେ ବର୍ଣ୍ଣନା କରିବାକୁ ଯାଇ କ୍ରେବ୍‌ସ୍ କହିଛନ୍ତି, '' ମୁଁ ଯଦି ନିଜକୁ ପଚାରେ, ହଠାତ୍ ଦିନେ ଷ୍ଟକ୍‌ହୋମ୍‌ରେ ନୋବେଲ୍ ପୁରସ୍କାର ପାଇଁ ପହଞ୍ଚିଯିବାର ସୌଭାଗ୍ୟ ମୋତେ ମିଳିଲା କିପରି, ତେବେ ମୁଁ ବିନା ଦ୍ୱିଧାରେ ସ୍ୱୀକାର କରୁଛି ଯେ ମୋ' ବିଜ୍ଞାନୀ ଜୀବନର ଏକ ଘଡିସନ୍ଧି ମୁହୂର୍ତ୍ତରେ ମୁଁ ମୋର ଗୁରୁ ଅଟ୍ଟୋ ୱାରବର୍ଗଙ୍କ ସାନ୍ନିଧ୍ୟରେ ଆସିବାର ସୁଯୋଗ ଲାଭ କରିଥିଲି । ବୈଜ୍ଞାନିକ ଗବେଷଣାର ବର୍ଣ୍ଣମାଳା ମୁଁ ତାଙ୍କଠାରୁ ହିଁ ଶିଖିଛି । ନିଜକୁ ନିଜେ ସମାଲୋଚନା କରିବାରେ ସେ ଅତ୍ୟନ୍ତ ନିଷ୍ଠୁର ଥିଲେ । ଗବେଷଣାର ଫଳାଫଳକୁ ପର୍ଯ୍ୟାଲୋଚନା କରିବା ନିମନ୍ତେ ଦିନରାତି ଲାଗି ପଡୁଥିଲେ । ସିଦ୍ଧାନ୍ତ ଉପସ୍ଥାପନା ଭଙ୍ଗୀଥିଲା ତାଙ୍କର ଖୁବ୍ ସରଳ, ସଂକ୍ଷିପ୍ତ ଏବଂ ବୋଧଗମ୍ୟ । ଜୀବନ ଯେ ଏକ ଶୁଦ୍ଧ ମୂଲ୍ୟବୋଧ ଉପରେ ପର୍ଯ୍ୟବସିତ, ତାହା ସେ ହୃଦୟଙ୍ଗମ କରିଥିଲେ ଓ ତା'ର ପ୍ରସାରପାଇଁ ସତତ ଚେଷ୍ଟିତ ଥିଲେ ।''





# ବିଜ୍ଞାନ ଜଗତରେ ବାଜିମରା

ବୈଜ୍ଞାନିକମାନେ କ'ଣ ଜୁଆରୀ ? ଗବେଷଣାର ଫଳାଫଳକୁ ନେଇ ସେମାନେ କ'ଣ ବାଜି ମରାମରି ହୁଅନ୍ତି ? ବାଜିରେ ହାରିଗଲେ ପଣ ରଖିଥିବା ଟଙ୍କା ପଇସା କି ଜିନିଷପତ୍ର ପଇଠ କରିଥାନ୍ତି ? ଏ' ସଂପର୍କରେ ଏବେ ପ୍ରକାଶ ପାଇଛି କେତେକ ମଜାଳିଆ ଘଟଣା ।

୧୯୩୩ ମସିହାରେ କ୍ଷମତା ଅକ୍ତିଆର କରିନେଲେ ହିଟ୍‌ଲର୍ । ତାଙ୍କର ଦୌରାତ୍ମ୍ୟରୁ ତ୍ରାହି ପାଇବା ନିମନ୍ତେ ଜର୍ମାନୀ ଛାଡ଼ି ପଳେଇଲେ ଅନେକ ବୈଜ୍ଞାନିକ । ପଳାତକ ବୈଜ୍ଞାନିକମାନଙ୍କ ଭିତରେ ଥିଲେ ମରିସ୍ ଏବଂ ଜେର୍‌ସନ୍ ଗୋଲ୍‌ଡ଼୍‌ହାବର୍ । ମରିସ୍ ଏବଂ ଜେରସନ୍ ଥିଲେ ଦୁଇଭାଇ । ପରସ୍ପରଠାରୁ ବିଚ୍ଛିନ୍ନ ହୋଇ ସେମାନେ ଦୀର୍ଘ ପନ୍ଦର ବର୍ଷ ଧରି ଏଣେ ତେଣେ ବୁଲିବାରେ ଲାଗିଲେ । ଆମେରିକାରେ ସେମାନଙ୍କର ମିଳନ ହେଲା । ଦୁଇଜଣ ଯାକ ଥିଲେ କଣିକା ପଦାର୍ଥବିତ୍ । ଜେର୍‌ସନ୍ ଲାଗି ପଡ଼ିଥିଲେ ପ୍ରତିବସ୍ତୁସଦୃଶ ଆଣ୍ଟିପ୍ରୋଟୋନ୍‌ର ଆବିଷ୍କାରରେ । ମରିସ୍ ନିଜ ଭାଇଙ୍କର ଏହି ପ୍ରଚେଷ୍ଟାର ସଫଳତା ପ୍ରତି ଥିଲେ ସନ୍ଦିହାନ । ସେ ଯୁକ୍ତି କରିଥିଲେ ଯେ 'ଆଣ୍ଟିପ୍ରୋଟୋନ୍' ବୋଲି କିଛି ନାହିଁ , ଏହା କେବଳ ଜେର୍‌ସନ୍‌ଙ୍କ କଳ୍ପନାସମ୍ଭୂତ ମାତ୍ର । ତେଣୁ ସେ ନିଜର ଜଣେ ସହକର୍ମୀଙ୍କ ସହ ବାଜି ମାରିଥିଲେ ଯେ ଆଣ୍ଟିପ୍ରୋଟୋନ୍‌ର ସ୍ଥିତି ପ୍ରମାଣିତ ହୋଇଗଲେ ସେ ତାଙ୍କୁ ୫୦୦ ଡଲାର୍ ଦେବେ ।

ମରିସ୍‌ଙ୍କର ଏହି ବାଜିମରାରେ ନିଜ ଭାଇଙ୍କ ପ୍ରତି କୌଣସି ଅନାସ୍ଥା ପ୍ରଦର୍ଶନର ଉଦ୍ଦେଶ୍ୟ ନଥିଲା । ବରଂ ସେ ସେତେବେଳକାରର ପ୍ରଚଳିତ ଚଳଣିକୁ ହିଁ ଦୋହରାଇଥିଲେ । ବିଭିନ୍ନ ଗବେଷଣାଗାର, ମାନମନ୍ଦିର, ସୁପରକମ୍ପ୍ୟୁଟର୍ କେନ୍ଦ୍ର ଇତ୍ୟାଦି ଅନୁଷ୍ଠାନରେ ଖେଳରେ ବାଜିମରାମରି ହେଲାଭଳି ଗବେଷଣାର ଫଳାଫଳକୁ ନେଇ ପଣ ରଖିବା ପ୍ରଥା ପ୍ରଚଳିତ ଥିଲା । ଏପରିକି ଜୋହାନ୍ନେସ୍ କେପ୍‌ଲର୍ ଏବଂ ଆଇଜାକ୍ ନିଉଟନ୍‌ଙ୍କ ଭଳି ବିଜ୍ଞାନ ଜଗତର ତୁଙ୍ଗ ବ୍ୟକ୍ତିତ୍ୱମାନେ ମଧ୍ୟ ଏଥିରୁ ବାଦ୍ ପଡ଼ି ନ ଥିଲେ ।

ତେବେ ବାଜି ମରାମରିରେ ହାରିଯାଇଥିବା କୌଣସି ବିଜ୍ଞାନୀ ଦେବାଳିଆ ହୋଇ ପଡ଼ିଥିବାର ପ୍ରମାଣ ନାହିଁ । କାରଣ ପଣର ପରିମାଣ ଥିଲା ଖୁବ୍ ସାଧାରଣ । ଏହା କେତେଶହ କିମ୍ବା ଅଳ୍ପ କେତେକ ଡଲାର୍‌ରେ ସୀମିତ ଥିଲା । କେହିକେହି ଭଲ ରାତ୍ରୀ ଭୋଜନ ଦେବାର ପଣ ରଖୁଥିଲେ ତ ଅନେକ ପଣ ରଖୁଥିଲେ ଦାମିକା ମଦ ବୋତଲଟିଏ । ଗୋଟିଏ ବାଜିମରାରେ ତ ପଣ ରଖାଯାଇଥିଲା ୧୦୦ ଗ୍ୟାଲନ୍ ଗ୍ୟାସୋଲିନ୍ ।

ତେବେ ପଣ ରଖିବା କି ବାଜି ମାରିବାର ପଶ୍ଚାତ୍‌ରେ କୌଣସି ମନ୍ଦ ଉଦ୍ଦେଶ୍ୟ ନ ଥିଲା । ବରଂ ନିଜ ପରିକଳ୍ପନା ପ୍ରତି ଦୃଢ ଆସ୍ଥା ପୋଷଣ କରୁଥିବା ବୈଜ୍ଞାନିକଙ୍କ ପାଇଁ ପଣ ଥିଲା ଏକ କୌତୁକିଆ ଆହ୍ୱାନ । ବୈଜ୍ଞାନିକ ଗବେଷଣାର ଫଳାଫଳକୁ ଏକ ଖେଳୁଆଡ ମନୋବୃତ୍ତି ନେଇ ଗ୍ରହଣ କରିବା ନିମନ୍ତେ ଉଦ୍ଦିଷ୍ଟ ଥିଲା ଉକ୍ତ ବାଜିମରାମରି । ସବୁ ବୈଜ୍ଞାନିକ ଯେ ଏହି ପ୍ରଥାପ୍ରତି ସମର୍ଥନ ଜଣାଉଥିଲେ ତାହା ନୁହେଁ । ଅନେକ ବିଜ୍ଞାନୀ ଥିଲେ ଏହାର ବିରୋଧୀ । ସେମାନେ ଏହାକୁ ଏକ ' ବିରକ୍ତିକର' ତାମସା ବୋଲି ଅଭିହିତ କରିଥିଲେ ।

ସେ ଯାହାହେଉ ନିଉ ଜର୍ସିଠାରେ ଅବସ୍ଥିତ ପୁରାତନ ବେଲ୍ ଲାବୋରେଟରୀରେ ରଖାଯାଇଥିଲା ବାଜିମରା ବିଷୟରେ ଲିପିବଦ୍ଧ କରିବା ପାଇଁ ଏକ ଖାତା । ପିଏରୀ ହୋହେନ୍‌ବର୍ଗ ନାମକ ବିଶିଷ୍ଟ ପଦାର୍ଥବିଜ୍ଞାନୀ ଲେଖିଛନ୍ତି ''ବାଜିମରାଖାତାଟି ରଖାଯାଇଥାଏ ଚା'ଖିଆ କୋଠରିରେ । ପ୍ରତିଦିନ ଅପରାହ୍ଣ ୪ଟା ବେଳେ ଆମେ ବୈଜ୍ଞାନିକମାନେ ଚା' ଖାଇବା ପାଇଁ ସେଠାରେ ସମବେତ ହେଉ । ଚା'ଖାଇଲା ସମୟରେ ନିଜ ନିଜର ଗବେଷଣା ଯୋଜନା ଓ ତା'ର ଫଳାଫଳ ବିଷୟରେ ଆମ ଭିତରେ ଆଲୋଚନା ପଡ଼େ । ଆମ ଭିତରୁ କେତେଜଣ ବାଜିମାରିବାରେ ବେଶୀ ଉତ୍ସାହ ଦେଖାଇଥାଉ । 'ବିନା ବାଜିରେ କି ଯୁକ୍ତି' ବୋଲି କହି ବାଜିମାରିବା ନିମନ୍ତେ ଅନ୍ୟମାନଙ୍କୁ ଉସୁକାଇବାରେ ଲାଗିପଡୁ । ନିଜେ ମଧ୍ୟ ସାମିଲ୍ ହୋଇଯାଉ ବାଜିମରାରେ । ତେବେ ଏହା କେବଳ ମଜା ଦେଖିବା ପାଇଁ ହିଁ ଅଭିପ୍ରେତ । ''

ସେହି ବାଜିମରା ବିଷୟରେ ଉଲ୍ଲେଖ କରିବାପାଇଁ ଉଦ୍ଦିଷ୍ଟ ଖାତାଟି ଥିଲା ଏକ ଲାବୋରେଟରୀ ନୋଟ୍ ଖାତା ଭଳି । ' ସୁପରକଣ୍ଡକ୍ଟର୍ ' ଭଳି ଅତି ଆଧୁନିକ ବିଜ୍ଞାନ ବିଷୟ ସମ୍ବଳିତ ତଥ୍ୟ ବିଷୟରେ ବାଜି ରଖାଯାଇଥିଲା ସେହି ଖାତାରେ । ରାଜନୈତିକ ଏବଂ ଅର୍ଥନୈତିକ ସମସ୍ୟା ବିଷୟରେ ଭିନ୍ନ ଭିନ୍ନ ମତ ପୋଷଣ କରୁଥିବା ବୈଜ୍ଞାନିକମାନେ ମଧ୍ୟ ଏହାର ଫଳାଫଳ ବିଷୟରେ ବାଜି ରଖୁଥିଲେ । କିନ୍ତୁ ବଡ଼ ଦୁଃଖର କଥା ଯେ ୧୯୯୦ ମସିହା ପାଖାପାଖି, କେହିଜଣେ ଚା' କୋଠରିରୁ ସେହି ଖାତାଟିକୁ ଚୋରେଇ ନେଇଗଲା । ହୁଏତ ପଣରେ ହାରିଯାଇଥିବା କୌଣସି ବିଜ୍ଞାନୀ ଏପରି କାଣ୍ଡ କରିଥାଇପାରନ୍ତି ! ୧୯୮୪

ମସିହାଠାରୁ ଆରମ୍ଭ ହୋଇ ୧୯୯୦ ମସିହା ପର୍ଯ୍ୟନ୍ତ ଖାତାଟିର ୨୮ ଟି ପୃଷ୍ଠା ବ୍ୟୟିତ ହୋଇଥିଲା ବାଜିମରା ସଂକ୍ରାନ୍ତ ବିବରଣୀ ଲିପିବଦ୍ଧ କରିବାରେ ।

ତେବେ ବିଜ୍ଞାନ ଜଗତରେ ବିଜ୍ଞାନୀ ମହଲରେ କେବେଠାରୁ ଆରମ୍ଭ ହେଲା ଏ ଜୁଆଖେଳ ? କୁହାଯାଏ ଯେ ବିଶିଷ୍ଟ ଜ୍ୟୋତିର୍ବିଜ୍ଞାନୀ ଜୋହାନେସ୍ କେପଲର୍ କୁଆଡ଼େ ଆରମ୍ଭ କରିଥିଲେ ଏହି ବାଜି ମରାମରି ଚଳଣି । ଏହା ୧୬୦୦ ମସିହାର କଥା । ଟାଇକୋ ବ୍ରାହେଙ୍କ ପର୍ଯ୍ୟବେକ୍ଷଣ ତଥ୍ୟକୁ ଭିତ୍ତିକରି ସୂର୍ଯ୍ୟଚାରିପଟେ ମଙ୍ଗଳ ଗ୍ରହର କକ୍ଷ ସମ୍ବନ୍ଧରେ ଆଲୋକପାତ କରିବାପାଇଁ କେପ୍‌ଲର୍‌ଙ୍କର ଉପରେ ଦାୟିତ୍ୱ ନ୍ୟସ୍ତ କରାଯାଇଥିଲା । ଦାୟିତ୍ୱ ଅର୍ପଣ କରିଥିଲେ ବ୍ରାହେଙ୍କର ବରିଷ୍ଠ ସହକାରୀ ଲୋଙ୍ଗୋମୋଣ୍ଟାନସ୍ ।

ମାସାଚୁସେଟ୍‌ସ୍ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଟେକ୍‌ନୋଲଜିର ବିଜ୍ଞାନ-ଐତିହାସିକ ଜେମ୍‌ସ୍ ଭୋଏଲ୍‌କେଲ୍ ଉଲ୍ଲେଖ କରିଛନ୍ତି ଯେ କେପ୍‌ଲର୍ ଲୋଙ୍ଗୋମୋଣ୍ଟାନସ୍‌ଙ୍କ ପ୍ରଦତ୍ତ ଦାୟିତ୍ୱ ଗ୍ରହଣ କରିନେଲେ ଏବଂ ପ୍ରାୟ ଏକ ସପ୍ତାହ ଭିତରେ ଉକ୍ତ ସମସ୍ୟାର ସମାଧାନ କରିଦେବେ ବୋଲି ବାହାସ୍ଫୋଟ ମାରିଲେ । ତେଣୁ ସେ ଦୁହିଁଙ୍କ ଭିତରେ ବାଜି ରହିଲା । କଅଣ ବାଜି ରହିଲା ତାହା କିନ୍ତୁ ଜଣାପଡ଼ିନି । ହେଲେ ବାଜିରେ କେପ୍‌ଲର୍ ହାରିଗଲେ, ଜିତାପଟ ମାରିନେଲେ ଲୋଙ୍ଗୋମୋଣ୍ଟାନସ୍ । ଉକ୍ତ ସମସ୍ୟାଟିକୁ ସମାଧାନ କରିବା ନିମନ୍ତେ କେପ୍‌ଲର୍‌ଙ୍କୁ ଲାଗିଯାଇଥିଲା ଦୀର୍ଘ ପାଞ୍ଚବର୍ଷ ସମୟ । ତେବେ କେପଲର୍‌ଙ୍କର ଏହା ଥିଲା ଏକ ଯୁଗାନ୍ତକାରୀ ଆବିଷ୍କାର । ଗ୍ରହର ଉପବୃତ୍ତୀୟ କକ୍ଷପଥ ଓ କକ୍ଷପଥରେ ଗ୍ରହର ଗତିପରିବେଗ ବିଷୟରେ ଆଲୋକପାତ କରିବାକୁ ସକ୍ଷମ ହୋଇଥିଲେ ସେ । କିନ୍ତୁ ଗ୍ରହଗୁଡ଼ିକ ଉପବୃତ୍ତୀୟ କକ୍ଷପଥରେ ଗତି କରିଥାଆନ୍ତି କାହିଁକି, ଏ' ବିଷୟରେ ସେତେବେଳେ କାହାରିକୁ କିଛି ମାଲୁମ୍ ନ ଥିଲା ।

ତେଣୁ ଏହି ସମସ୍ୟାର ସମାଧାନ କରିବାପାଇଁ ଲଣ୍ଡନ୍‌ର କ୍ରିଷ୍ଟୋଫର୍ ରେନ୍ ବିଜ୍ଞାନୀ ସମାଜକୁ ଆହ୍ୱାନ ଜଣାଇଥିଲେ ୧୬୮୪ ମସିହାରେ । ସେ ଘୋଷଣା କରିଥିଲେ ଯେ ଯଦି କେହି ପ୍ରତୀପ-ବର୍ଗ ନିୟମ ( Inverse-square law ) ର ଅବଲମ୍ବନରେ ଦୁଇମାସ ଭିତରେ କେପ୍‌ଲରଙ୍କ ନିୟମକୁ ପ୍ରମାଣ କରିଦେବେ, ସେ ତାଙ୍କୁ ୪୦ ଶିଲିଂ ଦାମ୍‌ର ପୁସ୍ତକ ଉପହାର ସ୍ୱରୂପ ପ୍ରଦାନ କରିବେ । ପ୍ରତୀପ-ବର୍ଗ ନିୟମ ଅନୁଯାୟୀ ସୂର୍ଯ୍ୟଠାରୁ ଗ୍ରହର ଦୂରତ୍ୱର ବର୍ଗକୁ ଚାହିଁ ସୂର୍ଯ୍ୟର ମାଧ୍ୟାକର୍ଷଣ ହ୍ରାସ ପାଇଥାଏ ( Sun's gravity decreases with the square of the planet's distance from the sun. ) ।



ନିଉଟନ୍ ଏହି ସମସ୍ୟା ସମାଧାନ କରିବାରେ ସଫଳ ହୋଇଥିଲେ । ଏ ବିଷୟ ତାଙ୍କ ରଚିତ 'ପ୍ରିନ୍‌ସିପିଆ' ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । ଉକ୍ତ ଗ୍ରନ୍ଥଟି ଆଧୁନିକ ପଦାର୍ଥ ବିଜ୍ଞାନର ଅପରିହାର୍ଯ୍ୟ ଭିତ୍ତିଭୂମିରୂପେ ସ୍ୱୀକୃତ ।ତେବେ ନିଉଟନ୍ ସମସ୍ୟାର ସମାଧାନ ଦେବାବେଳକୁ ବିତିଗଲାଣି ଅନେକ ବର୍ଷ । ସେ ଯାହା ହେଉ, ଅଷ୍ଟାଦଶ ଏବଂ ଊନବିଂଶ ଶତାବ୍ଦୀରେ ବିଜ୍ଞାନରେ ବେଶ୍ ବାଜି ମରାମରି ଚାଲିଥିଲା । କିନ୍ତୁ କେଉଁ କାରଣରୁ କେଜାଣି ବିଂଶ ଶତାବ୍ଦୀର ବୈଜ୍ଞାନିକମାନେ ଏଥିରୁ ବୀତସ୍ପୃହ ହୋଇପଡ଼ିଲେ ।

ତଥାପି ବାଜି ମାରିବା ଏବଂ ପଣ ରଖିବା ପାଇଁ ବିଜ୍ଞାନୀମାନଙ୍କର ମନ ଯେ ହାଇଁପାଇଁ ହେଉନି, ତାହା ନୁହେଁ । ଚିକାଗୋ ବିଶ୍ୱବିଦ୍ୟାଳୟର ଜ୍ୟୋତିର୍ପଦାର୍ଥବିତ୍ ମାଇକେଲ୍ ଟର୍‌ନର୍ ମତ ଦିଅନ୍ତି ଯେ ଆଜିକାଲିକାର ବିଜ୍ଞାନୀ ବାଜିମାରିବା ପ୍ରତି ବିଶେଷ ଆଗ୍ରହ ଦେଖାଉନାହାନ୍ତି । କୌଣସି ବିଜ୍ଞାନ-ଅଧିବେଶନରେ ନିଜର ବୈଜ୍ଞାନିକ ତଥ୍ୟ ପରିବେଷଣ କରିସାରିଲାପରେ କେହି ସେ ବିଷୟରେ ତାଙ୍କ ସହ ବାଜିପାଇଁ ଆହ୍ୱାନ ନ ଜଣେଇବାରୁ ବଡ଼ କ୍ରୋଧ ପ୍ରକାଶ କରିଥାନ୍ତି ଟର୍‌ନର୍ । ସେ କହନ୍ତି," ବାଜି ମାରିବା କି ପଣ ରଖିବା ଅଯୌକ୍ତିକ ସତ, ତଥାପି ମୁଁ ଏଥିରେ ଜଡ଼ିତ ହେବାକୁ ଭଲପାଏ । "

ଦର୍ପଣକୁ ସିନା ବାମ, ଡାହାଣ, ଉପର ଏବଂ ତଳ କଲେ ପ୍ରତିବିମ୍ବ ଦେଖାଯାଏ ସମାନ, ହେଲେ, ବାମ ଏବଂ ଡାହାଣ ଏବଂ ଉପର ଏବଂ ତଳ ଓଲଟପାଲଟ ହୋଇଗଲେ ପଦାର୍ଥବିଜ୍ଞାନର ନିୟମ ସମାନ ରହେ ନାହିଁ ବୋଲି ୧୯୫୭ ମସିହାରେ ପ୍ରମାଣିତ ହୋଇଗଲା । ଏହି ତଥ୍ୟ ସଂକ୍ରାନ୍ତ ଏକ ବାଜିମରାରେ ନୋବେଲ୍ ପୁରସ୍କାର ବିଜେତା ସ୍ୱର୍ଗତ ରିଚାର୍ଡ୍ ଫାଇନ୍‌ମ୍ୟାନ୍ ବାଜି ହାରିଯାଇ ଟଙ୍କା ପଇଠ କରିଥିଲେ । ଏ ବିଷୟରେ ବାଜିମରାରେ ସଂପୃକ୍ତଥିବା ପ୍ରାୟ ପ୍ରତ୍ୟେକ ବିଜ୍ଞାନୀ ଲାଭ କରିଥିଲେ ନୋବେଲ୍ ପ୍ରାଇଜ୍ । ୧୯୯୭ ମସିହାରେ ନୋବେଲ୍ ପୁରସ୍କାର ପ୍ରାପ୍ତ ହୋଇଥିବା ନେସ୍‌ନାଲ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଷ୍ଟାଣ୍ଡାର୍ଡ୍‌ର ବରିଷ୍ଠ ବିଜ୍ଞାନୀ ଉଇଲିୟମ୍ ଫିଲିପ୍‌ସ୍ ବାଜିମରାରୁ ଜିତିପାରିଥିଲେ ୧୦୦ ଡଲାର୍ ଓ ତା' ଉପରେ ଜମାହୋଇଥିବା ସୁଧ ।

କୃଷ୍ଣଗର୍ତ୍ତ ସମ୍ବନ୍ଧୀୟ ତଥ୍ୟକୁ ନେଇ ବିଶିଷ୍ଟ ଅନ୍ତରୀକ୍ଷ ବିଜ୍ଞାନୀ ଷ୍ଟିଫେନ୍ ହ'କିଙ୍ଗ୍‌ଙ୍କ ସହ କାଲିଫର୍ଣ୍ଣିଆ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଟେକ୍‌ନୋଲୋଜିର ବରିଷ୍ଠ ଗବେଷକ ଥୋର୍ଣ୍ଣେ ଏବଂ ପ୍ରେସ୍‌କିଲ୍‌ଙ୍କର ବାଜି ମରାମରି ହୋଇଥିଲା । ବାଜିରେ ହ'କିଙ୍ଗ୍ ହାରିଗଲେ । ଜିତି ଗଲେ ଥୋର୍ଣ୍ଣେ । ତେଣୁ ବାଜିର ସର୍ତ୍ତ ଅନୁଯାୟୀ ଥୋର୍ଣ୍ଣେଙ୍କ ନାମରେ 'ପେଣ୍ଟହାଉସ୍' ପତ୍ରିକାର ଗ୍ରାହକ ଚାନ୍ଦା ପଇଠ କରିବାକୁ ପଡ଼ିଥିଲା ଷ୍ଟିଫେନ୍ ହ'କିଙ୍ଗ୍‌ଙ୍କୁ ।



# ବୈଜ୍ଞାନିକ ଗଲେ ଠକି

ବହୁ ପୁରାତନ କାଳର ଗଛପତ୍ର, ପଶୁପକ୍ଷୀ, କୀଟପତଙ୍ଗ, ଏପରିକି ମଣିଷ ମଧ୍ୟ ମାଟିରେ ପୋତି ହୋଇ ରହିଛନ୍ତି । ସେଗୁଡ଼ିକ କିନ୍ତୁ ଜୀବନ୍ତ ଅବସ୍ଥାରେ ଯେଉଁଭଳି ଦେଖାଯାଉଥିଲେ, ହଜାର ହଜାର ବର୍ଷପରେ ଠିକ୍ ସେହିଭଳି ଦେଖା ଯାଆନ୍ତିନି । ହେଲେ ସେମାନଙ୍କ ଦେହର ଛାପ ଏବଂ ଶରୀରର ଅଂଶ ବିଶେଷ ମାତ୍ର ମାଟିତଳେ ଦେଖିବାକୁ ମିଳିଥାଏ । ଏହା ଜୀବଶରୀରର ଅଂଶ ବିଶେଷ ବା ଅବଶେଷ ହୋଇଥିବାରୁ ଏହାକୁ କୁହାଯାଏ ଜୀବାଶ୍ମ । ବୈଜ୍ଞାନିକମାନେ ମାଟି ତାଡ଼ି ଜୀବାଶ୍ମ ଖୋଜିବାରେ ଲାଗିପଡ଼ନ୍ତି ଓ ତାକୁ ସଂଗ୍ରହ କରି ଉଦ୍ଭିଦ କି ପ୍ରାଣୀର ଆକାର, ଶରୀରଗଠନ ଆଦି ବିଷୟରେ ତଥ୍ୟ ଯୋଗାଇଥାନ୍ତି । ଏହିପରି ଭାବରେ ସଂଗ୍ରହ କରାଯାଇଥିବା ହାଡ଼ମାନଙ୍କୁ ଯୋଡ଼ି ଡାଇନୋସରର କଙ୍କାଳ ତିଆରି କରିପାରିଛନ୍ତି ସେମାନେ ।

ଅଷ୍ଟାଦଶ ଶତାବ୍ଦୀ ବେଳକୁ ଜଣାପଡ଼ିଯାଇଥିଲା ଯେ ଜୀବାଶ୍ମ ହେଉଛି ପ୍ରାଚୀନ ଉଦ୍ଭିଦ ଏବଂ ପ୍ରାଣୀଙ୍କ ଶରୀରର ଅଂଶ ବିଶେଷ । ଅନେକ ବିଜ୍ଞାନୀ ଏହି ତଥ୍ୟକୁ ସ୍ୱୀକାର କରିନେଇଥିଲେ । ଅନ୍ୟ କେତେକ ବିଜ୍ଞାନୀଙ୍କ ମତ କିନ୍ତୁ ଥିଲା ଅଲଗା । ଯେଉଁ ବୈଜ୍ଞାନିକମାନେ ଅଲଗାମତ ଦେଉଥିଲେ, ସେମାନଙ୍କ ମଧ୍ୟରେ ଥିଲେ ପ୍ରଫେସର୍ ଜୋହାନ୍ ବେରିଞ୍ଜର୍ । ବେରିଞ୍ଜର୍ ଥିଲେ ଉର୍ଜ୍ବର୍ଗ ବିଶ୍ୱବିଦ୍ୟାଳୟର ପ୍ରଫେସର୍ ।

ବେରିଞ୍ଜର୍ ଥିଲେ ବଡ଼ ଏକ ଜିଦିଆ । ଯାହା ବୁଝିଥିବେ ସେଥିରୁ ଜମା ଟଳିବେନି । ତାଙ୍କର ଦୃଢ ଧାରଣା ଥିଲା ଯେ ଜୀବାଶ୍ମ ସହିତ ପ୍ରାଣୀ କିମ୍ବା ଉଦ୍ଭିଦର କୌଣସି ସଂପର୍କ ନାହିଁ । ବରଂ ଯେଉଁମାନେ ଏ'କଥା କହୁଥିଲେ, ସେମାନଙ୍କୁ ବେରିଞ୍ଜର୍ ବଡ଼ ତାଚ୍ଛଲ୍ୟ କରୁଥିଲେ । ସେ ଦାବି କରୁଥିଲେ, ଯେ '' ଜୀବାଶ୍ମକୁ ସୃଷ୍ଟି କରିଛନ୍ତି ନିଜେ ଈଶ୍ୱର । କାହିଁକି ସୃଷ୍ଟିକରିଛନ୍ତି, ତା'ର କାରଣ କେବଳ ସେହି ଈଶ୍ୱରଙ୍କୁ ହିଁ ଜଣା । ତେବେ ଏହା ମୂଳରେ କିଛି ମହତ୍ ଉଦ୍ଦେଶ୍ୟ ରହିଛି ନିଶ୍ଚୟ । ''

ବେରିଞ୍ଜର୍ ବିଭିନ୍ନ ଅଞ୍ଚଳ ବୁଲି ଅନେକ ଜୀବାଶ୍ମ ସଂଗ୍ରହ କଲେ । ସେଗୁଡ଼ିକୁ ନିଜ ଢଙ୍ଗରେ ତନ୍ନ ତନ୍ନ କରି ପରୀକ୍ଷା କଲେ । ସେସବୁର ଟିକିନିଖି ବର୍ଣ୍ଣନା ଦେଇ ୧୭୨୬ ମସିହାରେ ରଚନା କଲେ ଏକ ଗ୍ରନ୍ଥ । ଗ୍ରନ୍ଥଟିର ଦାମ୍ ବି ଥିଲା ବେଶୀ ।

ବେରିଞ୍ଜର୍ ଉଲ୍ଲେଖ କରିଥିଲେ ଯେ ତାଙ୍କ ଦ୍ୱାରା ସଂଗୃହୀତ ଜୀବାଶ୍ମ ମଧ୍ୟରୁ କେତେକ ଥିଲେ ଅତି ସାଧାରଣ । ଅନ୍ୟ କେତେକ ଜୀବାଶ୍ମରେ ରହିଥିଲା କିଛି ଲେଖା । ତାହା କୁଆଡ଼େ ଲେଖା ହୋଇଥିଲା ଅଜଣା ପ୍ରାଚୀନ ଭାଷାରେ । ପୁଣି ଅନ୍ୟ କେତେକ ଜୀବାଶ୍ମରେ କୁଆଡ଼େ ଅଙ୍କା ହୋଇଥିଲା ସୂର୍ଯ୍ୟ ଏବଂ ଚନ୍ଦ୍ରର ଛବି ।

ବେରିଞ୍ଜର୍‌ଙ୍କର ଦ୍ୱାରା ରଚିତ ଉକ୍ତ ପୁସ୍ତକଟି ଗବେଷକମାନଙ୍କୁ ବଡ଼ ସମସ୍ୟାରେ ପକେଇଦେଲା । ବହିଟିକୁ ନେଇ ସେମାନେ କିପରି ଉପଯୋଗ କରିବେ ତାହା ଜାଣିପାରିଲେନି । କିନ୍ତୁ କୌତୂହଳର କଥା ଯେ ବହିଟି ପ୍ରକାଶିତ ହେଲାପରେ ବେରିଞ୍ଜର୍ ଆହୁରି ଉତ୍ସାହିତ ହୋଇପଡ଼ିଲେ । ଜୀବାଶ୍ମ ସଂଗ୍ରହ କରିବାରେ ମନପ୍ରାଣ ଢ଼ାଳିଦେଲେ ସେ ।

ହଠାତ୍ ଦିନେ ଘଟିଲା ଏକ ଅଘଟଣ । ମାଟିଖୋଳି ଜୀବାଶ୍ମର ସନ୍ଧାନ କରୁଥାନ୍ତି ବେରିଞ୍ଜର୍ । ଅକସ୍ମାତ୍ ତାଙ୍କୁ ମିଳିଗଲା ଏକ ନୂଆ ପ୍ରକାରର ଜୀବାଶ୍ମ । ସେହି ଜୀବାଶ୍ମଟିରେ ଲେଖା ରହିଥିଲା ବେରିଞ୍ଜର୍‌ଙ୍କର ନିଜ ନାମ ! ନିଜ ନାଁ ଦେଖି ଆନନ୍ଦରେ କୁରୁଳି ଉଠିଲେ ସେ । ସେ ପ୍ରଥମେ ଭାବିନେଲେ, '' ଯାହାହେଉ, ଏତେଦିନେ ଭଗବାନ ମୋର ଗବେଷଣାକୁ ସ୍ୱୀକୃତି ଦେଲେ । ଜୀବାଶ୍ମ ଉପରେ ମୋ' ନାଁ ଲେଖିଦେଇ ମୋତେ ପୁରସ୍କାର ଦେଲେ । '' କିନ୍ତୁ ପର ମୁହୂର୍ତ୍ତରେ ସେ ଖଟେଇଲେ ତାଙ୍କର ସାଧାରଣଜ୍ଞାନ । ସେ ନିଶ୍ଚିତ ହୋଇଗଲେ ଯେ ତାଙ୍କୁ ଠକେଇବାପାଇଁ କୌଣସି ଖଳଲୋକ ହିଁ ଏହି ଚାଲ୍ ଖେଳିଛି ।

ପ୍ରକୃତରେ ଏହି ଖେଚେଡ଼ାମି କରିଥିଲେ ବେରିଞ୍ଜର୍‌ଙ୍କର ଛାତ୍ରମାନେ । ସେମାନେ ମିଳିମିଶି ଜୀବାଶ୍ମର ନକଲ ତିଆରି କରୁଥିଲେ । ସେହି ନକଲି ଜୀବାଶ୍ମଗୁଡ଼ିକୁ ବେରିଞ୍ଜର୍‌ଙ୍କ ପ୍ରିୟ ଜୀବାଶ୍ମ ଖୋଜିବା ଜାଗାଗୁଡ଼ିକରେ ପୋତି ଦେଇ ଆସୁଥିଲେ । ତେଣୁ ଜୀବାଶ୍ମର ସନ୍ଧାନ ନେବାପାଇଁ ଖୋଳାଖୋଳି କଲାବେଳେ ସେଗୁଡ଼ିକ ବେରିଞ୍ଜର୍‌ଙ୍କ ଆଖିରେ ପଡୁଥିଲା ଓ ସେଗୁଡ଼ିକୁ ସେ ପ୍ରକୃତ ଜୀବାଶ୍ମ ବୋଲି ଧରି ନେଉଥିଲେ ।

ନିଜଦ୍ୱାରା ସଂଗୃହୀତ ଜୀବାଶ୍ମଗୁଡ଼ିକ ମଧ୍ୟରୁ ଅନେକ ନକଲି ବୋଲି ଜାଣିନେଲାପରେ ବଡ଼ ମର୍ମାହତ ହୋଇପଡ଼ିଲେ ସେ । ବିଶେଷ କରି ନକଲି ଜୀବାଶ୍ମକୁ ଅସଲି ଜୀବାଶ୍ମ ବୋଲି ଧରିନେଇ ନିଜ ରଚିତ ପୁସ୍ତକରେ ତାର ଅବିକଳ ବର୍ଣ୍ଣନା ଦେଇଥିବାରୁ ନିଜକୁ ବଡ଼ ଅପରାଧୀ ବୋଲି ମନେକଲେ ବେରିଞ୍ଜର୍ । ତେଣୁ ଯେଉଁମାନଙ୍କ ପାଖରେ ଉକ୍ତ ପୁସ୍ତକ ଥିଲା ସେମାନଙ୍କ ପାଖରୁ ପୁସ୍ତକ ଗୁଡ଼ିକୁ କିଣିନେବାପାଇଁ ସେ ମନସ୍ଥ କଲେ । ଏଥିପାଇଁ ବିଜ୍ଞାପନ ଦେଲେ ମଧ୍ୟ । କିନ୍ତୁ ଜୀବାଶ୍ମର କିମ୍ଭୂତକିମାକାର ବର୍ଣ୍ଣନାରେ ଭରପୂର

ସେହି ପୁସ୍ତକକୁ କେହି ହାତଛଡ଼ା କରିବା ନିମନ୍ତେ ରାଜି ହେଲେନାହିଁ । ବରଂ ସେଭଳି ପୁସ୍ତକ ସଂଗ୍ରହ କରି ସାଇତି ରଖିବା ଯୋଗ୍ୟ ବୋଲି ମନେ କଲେ ପାଠକମାନେ । ତେଣୁ ପାଠକମାନେ ମଧ୍ୟ ସେହି ପୁସ୍ତକଟିକୁ କିଣିବାପାଇଁ ଯୋଗାଡ଼ ଯନ୍ତ୍ରରେ ଲାଗିପଡ଼ିଲେ ।

ନିଜର ଏହି ଭୁଲ୍‌ପାଇଁ ସାରାଜୀବନ ଅନୁତାପ କରିବାକୁ ପଡ଼ିଥିଲା ବେରିଞ୍ଜର୍‌ଙ୍କୁ । ସେ ହୋଇ ପଡ଼ିଲେ ସମସ୍ତଙ୍କ ଉପହାସର ପାତ୍ର ।

ବେରିଞ୍ଜର୍‌ଙ୍କ ମୃତ୍ୟୁପରେ ତାଙ୍କର ଜଣେ ଆତ୍ମୀୟ ଉକ୍ତ ପୁସ୍ତକଟିକୁ ପୁଣିଥରେ ପ୍ରକାଶ କରିଥିଲେ ଓ ପୁସ୍ତକ ବିକ୍ରିରୁ ଅନେକ ଅର୍ଥ ଉପାର୍ଜନ କରି ପାରିଥିଲେ ।



# ବଡ଼ଲୋକଙ୍କ ପିଲାଳିଆମି

ହରବର୍ଟ ଜର୍ଜ ୱେଲ୍ସ୍ ଥିଲେ ପ୍ରଖ୍ୟାତ ଇଂରେଜ ଔପନ୍ୟାସିକ । ଲୋକେ ତାଙ୍କୁ ସାଧାରଣତଃ ଏଚ୍.ଜି. ୱେଲ୍ସ୍ ବୋଲି ଜାଣନ୍ତି । ଉପନ୍ୟାସ ଲେଖାରେ ତାଙ୍କର ଯେପରି ପାରଦର୍ଶିତା ଥିଲା, ଠିକ୍ ସେହିପରି ପାରଦର୍ଶିତା ଥିଲା କାଳ୍ପନିକ ବିଜ୍ଞାନ ପ୍ରବନ୍ଧ ଏବଂ ପୁସ୍ତକ ରଚନା କରିବାରେ ।

ଏକଦା ସେ ଯାହା କଳ୍ପନା କରି ପୁସ୍ତକରେ ଲିପିବଦ୍ଧ କରିଥିଲେ, ସେଥିମଧ୍ୟରୁ କେତେକ ଏବେ ବାସ୍ତବରୂପ ନେଇଛି । ୧୯୦୧ ମସିହାରେ ପ୍ରକାଶ ପାଇଥିଲା ତାଙ୍କ ରଚିତ ପୁସ୍ତକ 'ଚନ୍ଦ୍ରପୃଷ୍ଠରେ ପ୍ରଥମ ମାନବ' ( The First Men in the Moon); କିନ୍ତୁ ସତକୁ ସତ ମଣିଷ ଚନ୍ଦ୍ରପୃଷ୍ଠରେ ଅବତରଣ କରିବାରେ ସଫଳ ହେଲା । ହେଲେ, ଏଚ୍. ଜି. ୱେଲ୍ସ୍ ସେତେବେଳକୁ ସଂସାରରେ ନ ଥିଲେ । ସେ ମୃତ୍ୟୁବରଣ କରିଥିଲେ ୧୯୪୬ ମସିହାରେ । ଚନ୍ଦ୍ରରେ ମଣିଷର ପାଦ ପଡ଼ିଲା ୧୯୬୯ରେ ।

ୱେଲ୍ସ୍‌ଙ୍କ ପିତା ଦୋକାନଟିଏ କରି ପରିବାର ଚଳାଉଥିଲେ । ଜଣେ ଧନୀଲୋକଙ୍କ ଘରର ଦେଖାଶୁଣା କରଥିଲେ ତାଙ୍କ ମା' । ବିଶେଷ ଶିକ୍ଷାଦୀକ୍ଷା ନଥିଲା ୱେଲ୍ସ୍‌ଙ୍କର । ତଥାପି ୨୫ ବର୍ଷ ବୟସରୁ ସେ ଆରମ୍ଭ କରିଥିଲେ ଲେଖାଲେଖି । 'ଅଦୃଶ୍ୟ ମାନବ'( The Invisible Man ) ନାମକ ତାଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକର ଶତବାର୍ଷିକୀ ପାଳିତ ହୋଇଛି ୧୯୯୭ ମସିହାରେ ।

ଥରେ ପଡ଼ିଯାଇ ୱେଲ୍ସ୍‌ଙ୍କର ଗୋଡ଼ ଭାଙ୍ଗିଗଲା । ତେଣୁ ଚଲାବୁଲା କରି ନ ପାରି ସେ ଖଟିଆରେ ପଡ଼ିରହିବାକୁ ବାଧ୍ୟ ହେଲେ । ଏହାକୁ ଏକ ସୁଯୋଗ ବୋଲି ଧରିନେଲେ ସେ । ସମୟ କଟେଇବାକୁ ସେ ଆରମ୍ଭ କଲେ ବହିପଢ଼ା । ଯାହାକିଛି ବହି ହାତରେ ପଡ଼ିଲା, ତାକୁ ପଢ଼ିଦେଇ ପୁଣି ନୂଆବହି ମଗାଉଥିଲେ । ଏହିପରି ଭାବରେ ପଢ଼ାପଢ଼ି କରିବା ତାଙ୍କର ଅଭ୍ୟାସ ହୋଇଗଲା ।

ୱେଲ୍ସ୍‌ଙ୍କର ଅତି ଅନ୍ତରଙ୍ଗ ବନ୍ଧୁ ଥିଲେ ଜର୍ଜ ବର୍ଣ୍ଣାଡ୍ ଶ' । ଶ' ଥିଲେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଔପନ୍ୟାସିକ, ନାଟ୍ୟକାର ଏବଂ ଦାର୍ଶନିକ । ସାହିତ୍ୟରେ ସେ ନୋବେଲ ପୁରସ୍କାର ପାଇଥିଲେ । ଶ' ନିଜେ ମାନିଛନ୍ତି ଯେ ସେ ଏବଂ ୱେଲ୍ସ୍ ୟୁରୋପ୍‌ବାସୀଙ୍କର

ଚିନ୍ତାଧାରାକୁ ପରିବର୍ତ୍ତନ କରାଇବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ଦୁଇଜଣଯାକ ବନ୍ଧୁ ଥିଲେ ପ୍ରଖ୍ୟାତ 'ଫାବିଆନ୍ ସୋସାଇଟିର'ର ସଭ୍ୟ । ତେବେ ପରବର୍ତ୍ତୀ କାଳରେ ଶ'ଙ୍କ ସହ ୱେଲ୍‌ସ୍‌ଙ୍କର ମତଭେଦ ହେଲା । ତେଣୁ ୱେଲ୍‌ସ୍ ଫାବିଆନ୍ ସୋସାଇଟିରୁ ଇସ୍ତଫା ଦେଇଦେଲେ ।

ତାଙ୍କ ବିଷୟରେ ଏକ ମଜାଳିଆ କଥା ଅଛି । ୧୯୪୧ ମସିହା ସେପ୍ଟେମ୍ବର ମାସରେ 'ବ୍ରିଟିଶ ଆସେସିଏସନ୍ ଫର୍ ଦି ଆଡ୍‌ଭାନ୍‌ସମେଣ୍ଟ ଅଫ୍ ସାଇନ୍‌ସ' ତରଫରୁ ଆୟୋଜିତ ହେଲା ' ବିଜ୍ଞାନ ଏବଂ ବିଶ୍ୱ ଶୃଙ୍ଖଳା' ଶୀର୍ଷକ ଏକ ଆଲୋଚନା ସଭା । ୱେଲ୍‌ସ୍ ଅବଶ୍ୟ ଥିଲେ ଜଣେ ଅତି ଜଣାଶୁଣା ଲୋକପ୍ରିୟ ବିଜ୍ଞାନ ଲେଖକ; କିନ୍ତୁ ବୈଜ୍ଞାନିକ ମହଲରେ ସେ ବିଶେଷ ଲୋକପ୍ରିୟ ନ ଥିଲେ ।

ସେଦିନ ୱେଲ୍‌ସ୍‌ଙ୍କର ଭାଷଣ ଦେବା ପାଳି । ୱେଲ୍‌ସ୍ ଭାଷଣ ଆରମ୍ଭ କଲେ । ଯେତିକି ସମୟପାଇଁ ତାଙ୍କୁ କହିବାକୁ କୁହାଯାଇଥିଲା, ତାହା ନ ମାନି ସେ ତାଙ୍କର ବକ୍ତୃତା ଦେଇଚାଲିଥା'ନ୍ତି । ଅଧିବେଶନର ସଭାପତି ଥାଆନ୍ତି ସାର୍ ଲାନ୍‌ସେଲୋଟ୍ ହଗ୍‌ବେନ୍ । ହଗ୍‌ବେନ୍ ବାରମ୍ବାର ଘଣ୍ଟି ବଜେଇ ବକ୍ତୃତା ଶେଷ କରିବା ନିମନ୍ତେ ୱେଲ୍‌ସ୍‌ଙ୍କୁ ସଙ୍କେତ ଦେଲେ । ଘଣ୍ଟି ବାଜି ଚାଲିଲେ ବି ନ ଶୁଣିଲାଭଳି କହିଚାଲିଥା'ନ୍ତି ସେ । ଘଣ୍ଟିବଜା କାମ ନ ଦେବାରୁ ହଗ୍‌ବେନ୍ ନିଜେ ଠିଆ ହୋଇପଡ଼ି ଭାଷଣ ସେଇଠି ସାରି ଦେବା ନିମନ୍ତେ ୱେଲ୍‌ସ୍‌ଙ୍କୁ ତାଗିଦା କରିଦେଲେ । ବାଧ୍ୟହୋଇ ଭାଷଣ ବନ୍ଦ କଲେ ୱେଲ୍‌ସ୍; କିନ୍ତୁ ରାଗରେ ଫଁ ଫଁ ହେଉଥାଆନ୍ତି ସେ । ନିଜେ ବଡ଼ ଅପମାନିତ ବୋଧ କରୁଥା'ନ୍ତି । ହଗ୍‌ବେନ୍ ତାଙ୍କୁ ଉପଯୁକ୍ତ ସମ୍ମାନ ନ ଦେଇ ତାଙ୍କର ଅବମାନନା କରିଛନ୍ତି ବୋଲି ସେ ଧରିନେଇଥାଆନ୍ତି ।

ତା' ପରଦିନର କଥା । ବକ୍ତୃତା ଦେବାର ଥାଏ ହଗ୍‌ବେନ୍‌ଙ୍କର । ସଭାପତି ଆସନ ଅଳଙ୍କୃତ କରିଥାଆନ୍ତି ୱେଲ୍‌ସ୍ । ଭାଷଣ ଆରମ୍ଭ କଲେ ହଗ୍‌ବେନ୍ । ତାଙ୍କର ଭାଷଣ ମାତ୍ର ଅଧା ହୋଇଥାଏ । ଏତିକିବେଳେ କୌଣସି ପୂର୍ବ ସୂଚନା ନ ଦେଇ, କି ଘଣ୍ଟି ନ ବଜେଇ ୱେଲ୍‌ସ୍ ହଗ୍‌ବେନ୍ ପିନ୍ଧିଥିବା ଢିଲା ପ୍ୟାଣ୍ଟକୁ ମୁଠାଇ ଧରିଲେ ଓ ପ୍ୟାଣ୍ଟକୁ ଝିଙ୍କି ହଗ୍‌ବେନ୍‌ଙ୍କୁ ଚେୟାରରେ ବସେଇ ପକେଇଲେ । ଏହାଦ୍ୱାରା ହଗବେନ୍‌ଙ୍କର ବଡ଼ ଅମର୍ଯ୍ୟାଦା ହେଲା । ସେ ଭାଷଣ ବନ୍ଦ କରିବା ଛଡ଼ା ଅନ୍ୟ ଚାରା ନ ଥିଲା । ହେଲେ ୱେଲ୍‌ସ୍‌ଙ୍କର ସେଥିପ୍ରତି ଖାତିର ନ ଥିଲା । ପୂର୍ବଦିନ ତାଙ୍କ ଅମର୍ଯ୍ୟାଦାର ଉପଯୁକ୍ତ ପ୍ରତିଶୋଧ ନେଇଛନ୍ତି ବୋଲି ମନେ ମନେ ଗର୍ବରେ ଫାଟି ପଡ଼ିଲେ ୱେଲ୍‌ସ୍ ।



# ମାନ୍ୟା ହେଲେ ମ୍ୟାଡ଼ାମ କ୍ୟୁରି

ମେରୀ କ୍ୟୁରିଙ୍କ ଡାକ ନାଁ ଥିଲା ମାନ୍ୟା । ତାଙ୍କର ବାପା ଭାରି ଗରିବ ଥିଲେ । ତେଣୁ ମାନ୍ୟା ବେଶୀ ପଢ଼ାପଢ଼ି କରିପାରିଲେ ନାହିଁ । ଅଧାରୁ ପଢ଼ା ଛାଡ଼ିଦେଲେ । ହେଲେ ଘରେ ତ ପଇସାପତ୍ରର ଅଭାବ ।ତେଣୁ ସେ ଜଣଙ୍କ ଘରେ ରହି ତାଙ୍କର ପିଲାଙ୍କୁ ଟିଉସନ୍ କରନ୍ତି । ଯାହା ଦରମା ପାଆନ୍ତି, ତାକୁ ନେଇ ବାପାଙ୍କୁ ଦିଅନ୍ତି । ସେ ଯେଉଁ ବାବୁଙ୍କ ଘରେ ଟିଉସନ୍ କରୁଥିଲେ, ସେହି ବାବୁଙ୍କ ପୁଅର ନା କାସିମିର୍ । କାସିମିର୍ ଏବଂ ମାନ୍ୟା ପରସ୍ପର ବାହାହେବାକୁ ଚାହିଁଲେ । ଏ କଥା କାସିମିର୍‌ଙ୍କ ମାଆଙ୍କ କାନକୁ ଗଲା । କାସିମିର୍‌ଙ୍କ ମା' କହିଲେ, ''କଅଣ ହେଲା ? ଗୋଟିଏ ମାଷ୍ଟରାଣୀ ପୁଣି ମୋ'ର ବୋହୂ ହେବ ? ଏହା ଜାଣିଲେ ଲୋକେ କ'ଣ କହିବେ ? '' ତେଣୁ ବାହାଘର ଭାଙ୍ଗିଗଲା ।

ପରେ ମେରୀ କଲେଜ୍‌ରେ ପଢ଼ିଲେ । ବହୁତ୍ ଗବେଷଣା କଲେ । ଦିନରାତି ପଢ଼ନ୍ତି ଓ ଗବେଷଣା କରିନ୍ତି । ତେଣୁ ଅନ୍ୟମାନେ ମେରୀଙ୍କୁ 'କୁମାରୀ ବହିପୋକ' ବୋଲି ଡାକି ଥଟ୍ଟା କରୁଥିଲେ ।

ଥରେ ଜଣେ ପ୍ରଫେସର୍‌ଙ୍କ ଘରେ ମେରୀଙ୍କ ସାଙ୍ଗରେ ପେରି କ୍ୟୁରିଙ୍କର ଦେଖାହେଲା । ପେରି ମଧ୍ୟ ଥିଲେ ଜଣେ ପ୍ରଫେସର୍ । ବୈଜ୍ଞାନିକ ହିସାବରେ ବେଶ୍ ନାଆଁ କମେଇଥାନ୍ତି ସେ । ସେ ବି ବାହା ହୋଇ ନ ଥା'ନ୍ତି । ମେରୀଙ୍କୁ ବାହାହେବା ପାଇଁ ତାଙ୍କର ଇଚ୍ଛା ଥାଏ । କିନ୍ତୁ ବାହା ହୋଇପଡ଼ିଲେ ସ୍ୱାମୀ ସ୍ତ୍ରୀ ଦୁଇଜଣଯାକ ଚଳିବେ କେମିତି ? ପେରି ମାସକୁ ଯେତିକି ଦରମା ପାଉଥିଲେ, ତାହା ଦୁଇଜଣଙ୍କର ଚଳିବା ପାଇଁ ନିଅଣ୍ଟ । ତେଣୁ ପେରି ବାହାହେବା ପାଇଁ ସାହସ କରିପାରୁ ନ ଥା'ନ୍ତି ।

ଯାହାହେଉ, ବାହାଘର ଠିକ୍ ହୋଇଗଲା । କିନ୍ତୁ ବାହାଘର ପୋଷାକ କିଣିବା ପାଇଁ ମେରୀଙ୍କ ପାଖରେ ପଇସା ନାହିଁ । ତାଙ୍କର ତ ଥିଲା ଦୁଇ ହଳ ମାତ୍ର ପୁରୁଣା ଛିଣ୍ଡା ପୋଷାକ । ତେଣୁ ତାଙ୍କର ବନ୍ଧୁମାନେ ନିଜ ନିଜ ଭିତରେ ଚାନ୍ଦା କରି ତାଙ୍କୁ ବାହାଘର ପୋଷାକଟିଏ ଉପହାର ଦେବାକୁ ଚାହିଁଲେ । ଏ'କଥା ମେରୀଙ୍କ କାନରେ ପଡ଼ିଲା । ମେରୀ ତାଙ୍କ ବନ୍ଧୁମାନଙ୍କୁ ଖବର ପଠାଇଲେ, '' ଯଦି ପୋଷାକ ଉପହାର ଦେବାକୁ ତୁମ୍ଭମାନଙ୍କର

ଇଚ୍ଛା, ତେବେ ମୋତେ କଳାରଙ୍ଗର ପୋଷାକଟିଏ ଦେବ । ସେଥିରେ ଝାଲର ଲାଗି ନ ଥିବ କି ତାହା ଢିଲା ହୋଇ ନ ଥିବ । କାରଣ କଳାରଙ୍ଗର ପୋଷାକରେ ମଇଳା ବାରିହେବନି । ତେଣୁ ସଫା ନ କରି ମୁଁ ବହୁତ ଦିନ ଧରି ପିନ୍ଧିପାରିବି । ଢିଲା ପୋଷାକ ପିନ୍ଧି ଗବେଷଣାଗାରରେ କାମ କରିବା ଅସୁବିଧା । ତେଣୁ ଢିଲା ପୋଷାକ କିଣିବନି । ''

ବାହାହେଲା ପରେ ମେରୀ ହେଲେ ମେରୀ କ୍ୟୁରି । ପୃଥିବୀର ସମସ୍ତେ ତାଙ୍କୁ ମ୍ୟାଡାମ୍ କ୍ୟୁରି ହିସାବରେ ଚିହ୍ନନ୍ତି । ମ୍ୟାଡ଼ାମ୍ କ୍ୟୁରି ଓ ପେରୀ ରେଡ଼ିୟମ୍ ଆବିଷ୍କାର କରିଥିଲେ । ରେଡିୟମ କର୍କଟ ରୋଗୀମାନଙ୍କର ଚିକିତ୍ସା ପାଇଁ ବ୍ୟବହାର କରାଯାଏ । ରେଡିୟମ୍ ଆବିଷ୍କାର କରିଥିବାରୁ ସ୍ୱାମୀ ସ୍ତ୍ରୀ ଉଭୟଙ୍କୁ ନୋବେଲ୍ ପୁରସ୍କାର ମିଳିଲା । ସେମାନଙ୍କର ଝିଅ ଆଇରିନ୍ ଏବଂ ଜ୍ୱାଇଁ ଜୋଲିଏଟ୍ ମଧ୍ୟ ନୋବେଲ୍ ପୁରସ୍କାର ପାଇଥିଲେ ।

ନୋବେଲ୍ ପୁରସ୍କାର ପାଇବାରେ ମ୍ୟାଡାମ୍ କ୍ୟୁରି ପୃଥିବୀର ପ୍ରଥମ ନାରୀ । ପଦାର୍ଥ ବିଦ୍ୟା ଓ ରସାୟନ ବିଦ୍ୟା ଉଭୟ ବିଷୟରେ ଦୁଇଥର ନୋବେଲ୍ ପୁରସ୍କାର ପାଇବାରେ ମଧ୍ୟ ସେ ପୃଥିବୀର ଏକମାତ୍ର ବୈଜ୍ଞାନିକ ।

ରେଡିୟମ୍ ସିନା କର୍କଟ ରୋଗ ଭଲ କରୁଛି, କିନ୍ତୁ ରେଡିୟମ୍ ବାହାର କରିବା ପାଇଁ ଗବେଷଣା କଲାବେଳେ ସେହି ରେଡିୟମ୍ ଯୋଗୁ ମ୍ୟାଡ଼ାମ୍ କ୍ୟୁରି ନିଜେ ରକ୍ତ କର୍କଟ ରୋଗରେ ପଡ଼ିଲେ । ଏହି ରୋଗ ଫଳରେ ସେ ଅନ୍ଧ ହୋଇଗଲେ । ୧୯୩୪ ମସିହା ଜୁଲାଇ ମାସ ୪ ତାରିଖରେ ତାଙ୍କର ମୃତ୍ୟୁ ହେଲା ।



# ବିଧିର ବିଡ଼ମ୍ବନା

ସୁଇଡେନ୍‌ର ରାଜା ତୃତୀୟ ଗୁସ୍ତାଭ୍ ଯାଇଥା'ନ୍ତି ପ୍ୟାରିସ୍ ପରିଦର୍ଶନରେ । ସେହି ଅବସରରେ ଫରାସୀ ବୈଜ୍ଞାନିକମାନଙ୍କର ଏକ ପ୍ରତିନିଧିଦଳ ତାଙ୍କୁ ସୌଜନ୍ୟମୂଳକ ସାକ୍ଷାତ କରିବାକୁ ପହଞ୍ଚିଲେ । ସୁଇଡେନ୍‌ବାସୀ ବିଭିନ୍ନ କ୍ଷେତ୍ରରେ ସଫଳତା ଅର୍ଜନ କରିଥିବାରୁ ରାଜାଙ୍କୁ ବଧେଇ ଜଣେଇଲେ ବୈଜ୍ଞାନିକମାନେ । ଆଲୋଚନା ପ୍ରସଙ୍ଗରେ ସ୍କିଲ୍‌ଙ୍କ ବିଷୟ ଉଠିଲା । ରାଜା ବିଜ୍ଞାନର ଧାର ଧାରୁ ନ ଥିଲେ । ବିଜ୍ଞାନ କ୍ଷେତ୍ରରେ ସୁଇଡେନ୍‌ର ରାଜା କୌଣସି ଆଗ୍ରହ ବି ପ୍ରକାଶ କରୁ ନ ଥିଲେ । ତେଣୁ ସ୍କିଲ୍ ନାମଧାରୀ ଜଣେ ବିଶିଷ୍ଟ ରସାୟନବିତ୍ ଯେ ତାଙ୍କ ରାଜ୍ୟର ଅଧିବାସୀ, ସେ କଥା ଗୁସ୍ତାଭ୍ ଅବା ଜାଣନ୍ତେ କିପରି ? ସ୍କିଲ୍‌ଙ୍କ ଅବଦାନ ବିଷୟ ଜାଣିବା ଦୂରେ ଥାଉ, ତାଙ୍କ ନାଁ'ଟା ବି ରାଜାଙ୍କ କାନରେ ପଡ଼ି ନ ଥିଲା । ମନେ ମନେ ବଡ଼ ଲଜ୍ଜିତ ହେଲେ ଗୁସ୍ତାଭ୍ । ସାଙ୍ଗେ ସାଙ୍ଗେ ଏକ ଆଦେଶନାମା ଜାରି କଲେ ସେ । ଆଦେଶନାମା ଧରି ବାର୍ତ୍ତାବହ ତୁରନ୍ତ ଧାଇଁଲା ସୁଇଡେନ୍ । ମନ୍ତ୍ରୀଙ୍କୁ ଧରେଇଦେଲା ରାଜାଙ୍କ ଆଦେଶପତ୍ର । ରାଜା ଆଦେଶ ଦେଇଥିଲେ, '' ଅବିଳମ୍ବେ ସ୍କିଲ୍‌ଙ୍କୁ 'କାଉଣ୍ଟ୍' ଉପାଧିରେ ଭୂଷିତ କରନ୍ତୁ । ''

ରାଜାଙ୍କର ଆଦେଶ – ତାକୁ ଅବମାନନା କରିବାର ପ୍ରଶ୍ନ ବି ଉଠୁନି । କିନ୍ତୁ ଏ ସ୍କିଲ୍ ନାମଧାରୀ ଲୋକଟା କିଏ ? ମନ୍ତ୍ରୀଙ୍କୁ ବି ସ୍କିଲ୍‌ଙ୍କ ବିଷୟରେ କିଛି ଜଣା ନ ଥିଲା । ସେ ବଡ଼ ଦ୍ୱନ୍ଦରେ ପଡ଼ିଲେ । ସ୍କିଲ୍‌ଙ୍କର ସନ୍ଧାନ ନେବାପାଇଁ ମନ୍ତ୍ରୀ ଆଦେଶ ଦେଲେ ଜଣେ ସଚିବଙ୍କୁ । ସଚିବଜଣକ ସ୍କିଲ୍‌ଙ୍କର ପୂରା ଖୋଜଖବର ନେଇ ମନ୍ତ୍ରୀଙ୍କୁ ଜଣେଇଦେଲେ — '' ସ୍କିଲ୍ ବଡ଼ ଉତ୍ତମ ସ୍ୱଭାବର ବ୍ୟକ୍ତି । ସୈନ୍ୟ ବିଭାଗରେ ସେ ଜଣେ ଲେଫ୍‌ଟନାଣ୍ଟ୍ । ବନ୍ଧୁକ ଚଳାଇବାରେ ବଡ଼ ଧୁରନ୍ଧର ସେ । ବିଲିୟାର୍ଡ ଖେଳରେ ତାଙ୍କର ଭଲ ପାରଦର୍ଶିତା ଅଛି । ''

ପରଦିନ ଲେଫ୍‌ଟନାଣ୍ଟ୍‌ଜଣଙ୍କୁ ଦରବାରକୁ ଆମନ୍ତ୍ରଣ କରାଗଲା ଓ ରାଜା ଗୁସ୍ତାଭ୍‌ଙ୍କ ଆଦେଶକ୍ରମେ ତାଙ୍କୁ 'କାଉଣ୍ଟ୍' ପଦବୀରେ ଭୂଷିତ କରାଗଲା । ସ୍କିଲ୍ ନାମଧାରୀ ଲେଫ୍‌ଟନାଣ୍ଟ୍‌ଜଣକ ରାତାରାତି ହୋଇଗଲେ ଜଣେ କାଉଣ୍ଟ୍ ।

ପୂର୍ବଭଳି ଅଜଣା ଅଶୁଣା ରହିଗଲେ ରସାୟନବିତ୍ ସ୍କିଲ୍ —କାର୍ଲ୍ ଉଇଲହେଲ୍‌ମ୍ ସ୍କିଲ୍ । ନିଜ ଜୀବନ କାଳ ଭିତରେ ସ୍କିଲ୍ ଯେତେସଂଖ୍ୟକ ରାସାୟନିକ ଉପାଦାନ ଆବିଷ୍କାର କରିଛନ୍ତି, ଅନ୍ୟ କୌଣସି ବୈଜ୍ଞାନିକ ତାହା କରିପାରିନାହାନ୍ତି । ଏହି ସୁଇଡିସ୍ ରସାୟନବିତ୍

ଜଣକ ୧୭୪୨ ମସିହାରେ ଜନ୍ମଗ୍ରହଣ କରିଥିଲେ ଷ୍ଟ୍ରାଲ୍‌ସଣ୍ଡଠାରେ । ଷ୍ଟ୍ରାଲ୍‌ସଣ୍ଡ ଏବେ ଜର୍ମାନୀର ଅନ୍ତର୍ଭୁକ୍ତ । ଜଣେ ଫାର୍ମାସିଷ୍ଟ ହିସାବରେ ସେ ମାଲ୍‌ମୋ, ଷ୍ଟକ୍‌ହୋମ, ଉପ୍‌ସାଲା ଏବଂ କୋପିଙ୍ଗରେ କାର୍ଯ୍ୟ କରିଥିଲେ ।

ଟାର୍ଟାରିକ୍ ଅମ୍ଳ, ଗାଲ୍ଲିକ୍ ଅମ୍ଳ, ମାଲ୍ଲିକ୍ ଅମ୍ଳ ,ସିଟ୍ରିକ୍ ଅମ୍ଳ ଏବଂ ଅକ୍‌ଜାଲିକ୍ ଅମ୍ଳ ଇତ୍ୟାଦି ଜୈବିକ ଅମ୍ଳକୁ ପ୍ରଥମ କରି ପୃଥକୀକରଣ କରିବାକୁ ସକ୍ଷମ ହୋଇଥିଲେ ସ୍କିଲ୍ । ଅଜୈବିକ ଉପାଦାନ ଗୁଡ଼ିକ ଭିତରେ ହାଇଡ୍ରୋଜେନ୍ ସଲ୍‌ଫାଇଡ୍, ହାଇଡ୍ରୋଜେନ୍ ଫ୍ଲୋରାଇଡ୍ ଏବଂ ହାଇଡ୍ରୋଜେନ୍ ସିଆନାଇଡ୍‌ର ପ୍ରଥମ ପୃଥକୀକରଣ ତାଙ୍କର କୃତି । ରଙ୍ଗିନ ଉପାଦାନ 'କପର୍ ଆର୍‌ସେନାଇଟ୍'ର ଆବିଷ୍କର୍ତ୍ତା ଥିଲେ ସେ । ତେଣୁ ତାଙ୍କ ନାମ ଅନୁସାରେ କପର୍ ଆର୍‌ସେନାଇଟ୍‌ର ନାଁ ରଖାଯାଇଛି 'ସ୍କିଲ୍‌ଙ୍କ ସବୁଜ '( Scheel's Green) ।

୧୭୮୧ ମସିହାରେ ଯେଉଁ ଧାତୁ ପଥରରୁ ସେ ଟଙ୍ଗ୍‌ଷ୍ଟିକ୍ ଏସିଡ୍ ନିଷ୍କାସନ କରିଥିଲେ, ସେହି ଧାତୁ ପଥରକୁ 'ସ୍କିଲାଇଟ' ନାମ ଦେଇ ସ୍କିଲ୍‌ଙ୍କୁ ସମ୍ମାନିତ କରାଯାଇଛି ।

ପ୍ରାଣୀମାନଙ୍କ ଅସ୍ଥିରେ କ୍ୟାଲ୍‌ସିଅମ୍ ଫସ୍‌ଫେଟ୍ ରହିଥିବାର ପ୍ରଥମ ପ୍ରମାଣ ମଧ୍ୟ ଦେଇଥିଲେ ସ୍କିଲ୍ ।

ରସାୟନ ବିଜ୍ଞାନ ସ୍କିଲ୍‌ଙ୍କ ଅବଦାନରେ ବିଶେଷଭାବେ ସମୃଦ୍ଧ ସିନା, କିନ୍ତୁ ସେ ଥିଲେ ଜଣେ ଦୁର୍ଭାଗା । ମାଙ୍ଗାନିଜ୍, ନାଇଟ୍ରୋଜେନ୍, ଅକସିଜେନ୍, ଟଙ୍ଗ୍‌ଷ୍ଟେନ୍, ବେରିଅମ୍, ମଲିବ୍‌ଡେନମ୍ ଏବଂ କ୍ଲୋରିନ୍‌ର ଆବିଷ୍କାର ସହ ସ୍କିଲ୍‌ଙ୍କ ନାମ ଓତପ୍ରୋତ ଭାବରେ ଜଡ଼ିତ । ସେ ହୁଏତ ଥିଲେ ଏଗୁଡ଼ିକର ଆଦି ଆବିଷ୍କର୍ତ୍ତା କିମ୍ବା ଏଗୁଡ଼ିକର ଆବିଷ୍କାର ସହ ଘନିଷ୍ଠ ଭାବରେ ସଂପୃକ୍ତ । ହେଲେ ଦୁର୍ଭାଗ୍ୟ ତ ତାଙ୍କ ପିଛା ଧରିଥିଲା । ଆପଣମାନେ ଶୁଣି ଆଶ୍ଚର୍ଯ୍ୟ ହେବେ ଯେ ଏହି ଆବିଷ୍କାରର ଯଶ ସବୁବେଳେ ତାଙ୍କର ହାତଛଡ଼ା ହୋଇଯାଇଥିଲା । ଯଶ ମାରି ନେଉଥିଲେ ଅନ୍ୟ କେହି ।

ଏଇ କ୍ଲୋରିନ୍ କଥା ଦେଖନ୍ତୁ । ସ୍କିଲ୍ କ୍ଲୋରିନ୍ ବାହାର କଲେ — ୧୭୭୪ ମସିହାରେ ଏହାର ବର୍ଣ୍ଣନା ଦେଲେ । କିନ୍ତୁ କ୍ଲୋରିନ୍‌କୁ ଏକ ସ୍ୱତନ୍ତ୍ର ମୌଳିକ ପଦାର୍ଥର ମର୍ଯ୍ୟାଦା ଦେଇପାରିଲେ ନାହିଁ । ଛବିଶ ବର୍ଷ ପରେ କ୍ଲୋରିନ୍ ଆବିଷ୍କାରର କୃତିତ୍ୱ ମିଳିଲା ହମ୍ଫ୍ରେ ଡ୍ୟାଭିଙ୍କୁ । ସ୍କିଲ୍ ୧୭୭୧ ମସିହାରେ ଆବିଷ୍କାର କରିଥିଲେ ଅମ୍ଳଜାନ । ନିଜ ଆବିଷ୍କାର

ପଦ୍ଧତି ବିଷୟରେ ବର୍ଣ୍ଣନା ଦେଇ ବୈଜ୍ଞାନିକ ପ୍ରବନ୍ଧ ପ୍ରସ୍ତୁତ କଲେ । ପ୍ରବନ୍ଧଟିକୁ ପ୍ରକାଶନ ପାଇଁ ପଠାଇଦେଲେ । ପ୍ରକାଶକଙ୍କ ଟେବୁଲ୍ ଉପରେ ପ୍ରବନ୍ଧଟି ଅବହେଳିତ ହୋଇ ପଡ଼ିରହିଲା; କିନ୍ତୁ ସ୍କିଲ୍‌ଙ୍କ ଅମ୍ଳଜାନ ଆବିଷ୍କାରର ତିନିବର୍ଷ ପରେ ଅମ୍ଳଜାନ ଆବିଷ୍କାର ସମ୍ବନ୍ଧୀୟ ନିଜର ପ୍ରବନ୍ଧ ପ୍ରକାଶ କରିଦେଲେ ଜୋସେଫ୍ ପ୍ରିଷ୍ଟ୍‌ଲି । ସେତେବେଳେକୁ ପ୍ରକାଶକଙ୍କ ଟେବୁଲ୍‌ର କାଗଜ ଗଦା ଭିତରେ ଗୁଞ୍ଜିହୋଇ ପଡ଼ିଥାଏ ସ୍କିଲ୍‌ଙ୍କ ଅମ୍ଳଜାନ ଆବିଷ୍କାର ସମ୍ବନ୍ଧୀୟ ପ୍ରବନ୍ଧ । ଅମ୍ଳଜାନ ଆବିଷ୍କାରର ସମ୍ମାନ ମିଳିଛି ପ୍ରିଷ୍ଟ୍‌ଲିଙ୍କୁ, ସ୍କିଲ୍ ଏଥିରୁ ବଞ୍ଚିତ ।

ସ୍କିଲ୍ କଲେଜ କି ବିଶ୍ୱବିଦ୍ୟାଳୟର ଦ୍ୱାର ମାଡ଼ି ନଥିଲେ । ଯାହା କିଛି ଜ୍ଞାନ ହାସଲ କରିଥିଲେ, ତାହା କରିଥିଲେ ନିଜ ଚେଷ୍ଟାରେ । ଅନେକ ଆବିଷ୍କାରର କର୍ତ୍ତା ହୋଇ ମଧ୍ୟ ଜଣେ ମାମୁଲି ଫାର୍ମାସିଷ୍ଟ୍‌ର ପରିଚୟ ନେଇ ଜୀବନଟା ବିତେଇଦେଲେ ସ୍କିଲ୍ । ବଞ୍ଚିଥିଲେ ଜମା ୪୩ ବର୍ଷ । ଜୀବନର ଶେଷଆଡ଼କୁ ବଡ଼ କଷ୍ଟ ଭୋଗିଥିଲେ ଆଣ୍ଠୁଗଣ୍ଠି ରୋଗରେ । ମରିବାର ମାତ୍ର ତିନିଦିନ ଆଗରୁ ତାଙ୍କର ବିବାହ ହୋଇଥିଲା । ନିଜର ଔଷଧ ଦୋକାନକୁ କୌଣସି ଉତ୍ତରାଧିକାରୀଙ୍କୁ ଅର୍ପଣ କରିଯିବା ହିଁ ଥିଲା ଏହି ବିବାହର ଉଦ୍ଦେଶ୍ୟ ।





# ଦାରିଦ୍ର୍ୟ ମାନିଲା ହାର

ମେଘନାଦ ଶାହା ଥିଲେ ଜଣେ ବିଖ୍ୟାତ୍ ପଦାର୍ଥବିଜ୍ଞାନୀ । ଭାରତ ଏବଂ ଭାରତ ବାହାରେ ମଧ୍ୟ ସେ ବହୁତ ନାଁ କରିଥିଲେ । ବଙ୍ଗଳାଦେଶର ରାଜଧାନୀ ଢାକାଠାରୁ ୪୫ କିଲୋମିଟର୍ ଦୂର ସିଓରାଟାଲି ଗାଁରେ ତାଙ୍କର ଜନ୍ମ । ଶାହାଥିଲେ ବାପ ମା'ଙ୍କର ପଞ୍ଚମ ସନ୍ତାନ ।

୧୮୯୩ ମସିହା ଅକ୍ଟୋବର ମାସ ୬ ତାରିଖ । ରାତି ହେବା କ୍ଷଣି ମାଡ଼ି ଆସିଲା ଝଡ଼ ବର୍ଷା । ତୁହାକୁ ତୁହା ବର୍ଷା ସାଙ୍ଗକୁ ସାଇଁ ସାଇଁ ପବନ । ଘଡ଼ଘଡ଼ିରେ କାନ ଅତଡା ପଡୁଥାଏ । ଏହିଭଳି ଏକ ପ୍ରଳୟବେଳାରେ ଜନ୍ମ ନେଲେ ମେଘନାଦ ଶାହା । ଶୋଇବା ଘରଠାରୁ ଟିକିଏ ଦୂରରେ ଥିଲା ଅନ୍ତୁଡ଼ିଘର । ପବନ ମାଡ଼ରେ ଅନ୍ତୁଡ଼ି ଘରର ନଡ଼ା ଛପର ଉଡ଼ିଗଲା । ଘର ଭିତର ସାରା ବର୍ଷାପାଣି । ମା'ଙ୍କ କୋଳ ଆଉ ମା'ଙ୍କ ପିନ୍ଧାଲୁଗାର କାନି ଭିତରେ ଜାକିଜୁକି ହୋଇ ପଡ଼ିଥାନ୍ତି ସେ । ଝଡ଼ ବର୍ଷା କମିବାର ନାମଗନ୍ଧ ବି ନାହିଁ । ତାଙ୍କର ଆଈ ଏହି ନାତିଟିର ଜୀବନ ରକ୍ଷା କରିବା ନିମନ୍ତେ ମେଘ—ଦେବତା ଇନ୍ଦ୍ରଙ୍କୁ ପ୍ରାର୍ଥନା କଲେ । ମେଘ —ଦେବତାଙ୍କୁ ନାତିକୁ ଟେକି ଦେଇ ନାତିର ନାଁ ରଖିଲେ ମେଘନାଦ । ମେଘନାଦର ଅର୍ଥ ମେଘ ଗର୍ଜନ । ରାବଣ ପୁତ୍ର ମେଘନାଦ ଭଳି ମେଘନାଦ ଶାହା ମଧ୍ୟ ଥିଲେ ଜଣେ ଆଜୀବନ ସଂଗ୍ରାମୀ ।

ତାଙ୍କ ପରିବାର ଥିଲା ଅତି ଗରିବ । ଗୋଟିଏ ଛୋଟିଆମୋଟିଆ ଦୋକାନ କରି ଗୁଜୁରାଣ ମେଣ୍ଟାଉଥିଲେ ତାଙ୍କର ବାପା । ବଡ଼ ଭାଇ ଯେତେ ଚେଷ୍ଟା କରି ବି ମ୍ୟାଟ୍ରିକ୍‌ଟା ପାସ୍ କରିପାରିଲେନି । ତେଣୁ ସେ ଝୋଟକଳର ମୂଲିଆ କାମରେ ମୁକରିର ହେଲେ । ତା' ତଳ ଭାଇଙ୍କ ଦ୍ୱାରା ବି ପାଠ ହେଲାନି । ତେଣୁ ସେ ବାପାଙ୍କ ପାଖରେ ଦୋକାନରେ ବସି ବୋଲହାକ କଲେ । ପାଠପଢ଼ାରେ ଦୁଇପୁଅଙ୍କର ଏଭଳି କରାମତି ଦେଖି ତାଙ୍କ ବାପା ମେଘନାଦଙ୍କ ପାଠପଢ଼ା କଥା ମନକୁ ବି ଆଣିଲେ ନି ।

ସବୁ ଗାଁ ପିଲାଙ୍କ ଭଳି ମେଘନାଦ ମଧ୍ୟ ଗାଁର ପ୍ରାଥମିକ ବିଦ୍ୟାଳୟରେ ପାଠ ଆରମ୍ଭ କଲେ । ତାଙ୍କର ସ୍ମୃତି ଶକ୍ତି ଥିଲା ପ୍ରବଳ । ରାତି ପାହାନ୍ତାରୁ ଉଠି ସେ ପାଠ ପଢ଼ି ବସନ୍ତି । ଶିକ୍ଷକ ମାନେ ଯେଉଁ ପାଠ ପଚାରନ୍ତି, ତା'ର ଠିକ୍ ଠିକ୍ ଉତ୍ତର ଦିଅନ୍ତି । ଖଡ଼ି, ସିଲଟ କି ବହି ଖାତା ଯୋଗାଇ ନ ଦେଲେ ଘରେ ବଡ଼ କନ୍ଦାକଟା କରନ୍ତି ମେଘନାଦ । ତେଣୁ ତାଙ୍କ ଘରେ ତାଙ୍କୁ 'କାନ୍ଦୁରା' ନାଁରେ ବି ଡକାଡ଼କି କଲେ ।

ପିଲାଟା ସବୁବେଳେ ପଢୁଥିବାରୁ ବାପ ମା' ବଡ଼ ବିରକ୍ତ ହେଲେ । ସେ ପାଟି କରି ପଢ଼ିଲେ ବାପାଙ୍କର ନିଦ ଭାଙ୍ଗି ଯାଉଥିଲା । 'କାହିଁକି ନିଦ ଭାଙ୍ଗିଦେଲୁ ' ବୋଲି ପାଟିକରି ବାପା ମେଘନାଦଙ୍କୁ ପିଟି ପକାଉଥିଲେ । ତେବେ ଶିକ୍ଷକ ଶଶୀଭୂଷଣ ଚ଼କ୍ରବର୍ତ୍ତୀ ଏବଂ ଯତୀନ୍ ଚ଼କ୍ରବର୍ତ୍ତୀ ମେଘନାଦଙ୍କ ପଢ଼ାପ୍ରତି ବହୁତ ଧ୍ୟାନ ରଖିଥିଲେ । ସେମାନେ ବାଧ୍ୟ କରିବାରୁ ମେଘନାଦ ଚ଼ଉଦ କିଲୋମିଟର ଦୂର ଶିମୂଳିଆରେ ଥିବା ମାଇନର ସ୍କୁଲ୍‌ରେ ଭର୍ତ୍ତି ହେଲେ । ହେଲେ ତାଙ୍କର ପାଠପଢ଼ା ଖର୍ଚ୍ଚ ତୁଲେଇବ କିଏ ?

ପାଖରେ ଥିଲେ ଜଣେ ଡାକ୍ତର । ତାଙ୍କର ନାଁ ଅନନ୍ତ କୁମାର ଦାସ । ମେଘନାଦଙ୍କ ପଢ଼ାଖର୍ଚ୍ଚ ବହନ କରିବାକୁ ଡାକ୍ତର ବାବୁ ରାଜି ହେଲେ । ମେଘନାଦ ବି ତାଙ୍କ ଘରେ ରହିଲେ । ବୋଲହାକ କଲେ । ବାସନ ମାଜିଲେ । ଦରକାର ପଡ଼ିଲେ ଗୋରୁଗାଈଙ୍କ ଖବର ଅନ୍ତର ବୁଝିଲେ । କିନ୍ତୁ ଏଥିରେ ମେଘନାଦଙ୍କ ମନରେ କିଛି ଦୁଃଖ ନ ଥିଲା । ପାଠ ପଢ଼ିବାର ସୁଯୋଗ ମିଳିଥିବାରୁ ତାହାହିଁ ଥିଲା ତାଙ୍କ ପାଇଁ ଆନନ୍ଦ ।

ମାଇନର୍ ପରୀକ୍ଷାରେ ବି ପ୍ରଥମ ହେଲେ ଶାହା । ପଢ଼ିଲେ ଢାକା କଲେଜିଏଟ୍ ସ୍କୁଲ୍‌ରେ । ମାସକୁ ଚାରିଟଙ୍କା ହିସାବରେ ବୃତ୍ତି ପାଉଥିଲେ ସେ । ତାଙ୍କ ବଡ଼ ଭାଇ ପଠାଉଥିଲେ ପାଞ୍ଚଟଙ୍କା । ପୂର୍ବ ବଙ୍ଗ ବୈଶ୍ୟ ସମିତିରୁ ସାହାଯ୍ୟ ମିଳୁଥିଲା ଦୁଇଟଙ୍କା । ତାହାଛଡ଼ା ତା'ଙ୍କୁ ସକାଳେ ଆଉ ସଂଧ୍ୟାରେ ଟିଉସନ୍ ମଧ୍ୟ କରିବାକୁ ପଡୁଥିଲା ।

ମେଘନାଦ ଶାହା ହାଇସ୍କୁଲ୍‌ରେ ପଢ଼ିବା ବେଳର କଥା । ଲର୍ଡ୍ କର୍ଜନ୍‌ଙ୍କ ଆଦେଶରେ ବଙ୍ଗପ୍ରଦେଶକୁ ଦୁଇଭାଗ କରିବା ନିମନ୍ତେ ସ୍ଥିର କରାହେଲା । ଭାଗ ଭାଗ କରିବା ବିରୋଧରେ ହେଲା ଆନ୍ଦୋଳନ । ଢାକା କଲେଜିଏଟ୍ ସ୍କୁଲ୍‌ରେ ବି ଧର୍ମଘଟ ହେଲା । ଗଭର୍ନର୍ ସାର୍ ବ୍ୟାମ୍ ଫିଲ୍‌ଡେ ଫୁଲ୍ଲର୍‌ଙ୍କ ଢାକା ଆସିବା ପ୍ରତିବାଦରେ ଛାତ୍ରମାନେ ଧାରଣା ଦେଲେ । ମେଘନାଦ ଏଥିରେ ଯୋଗ ଦେଇ ନ ଥିଲେ । ସବୁଦିନ ପରି ସେଦିନ ମଧ୍ୟ ସେ ସ୍କୁଲ୍ ଯାଇଥିଲେ । ପଇସା ନ ଥିବାରୁ ଜୋତା ନ ଥିଲା ତାଙ୍କର । ତେଣୁ ସେ ଖାଲିପାଦରେ ସ୍କୁଲ୍ ଯିବା ଆସିବା କରୁଥିଲେ । କିନ୍ତୁ ସେ ପୋଲିସ୍ ହାତରେ ଧରାପଡ଼ିଲେ । ପାଦର

ଜୋତା ଫୋପାଡ଼ି ଦେଇ ମେଘନାଦ ଧର୍ମଘଟରେ ଯୋଗ ଦେଇଛି ବୋଲି ପୋଲିସ୍ ଧାରଣା କରି ନେଲା । ଫଳରେ ମେଘନାଦଙ୍କର ସରକାରୀ ବୃତ୍ତି କଟିଗଲା । ତାଙ୍କୁ ସ୍କୁଲ୍‌ରୁ ବାହାର କରିଦିଆଗଲା । କିଶୋରୀଲାଲ୍ ଜୁବିଲି ସ୍କୁଲ୍ ନାମକ ଏକ ବେସରକାରୀ ସ୍କୁଲ୍ ତାଙ୍କୁ ଗ୍ରହଣ କରିବାକୁ ରାଜି ହୋଇ ନ ଥିଲେ, ମେଘନାଦଙ୍କର ପାଠପଢ଼ାରେ ସବୁଦିନ ପାଇଁ ଡ଼ୋରି ବନ୍ଧା ହୋଇଥାନ୍ତା ।

ପିଲାବେଳେ ଜୋତା କିଣି ନ ପାରି ଖାଲି ପାଦରେ ଯିବା ଆସିବା କରୁଥିବା କଥା ସେ ଭୁଲି ପାରି ନଥିଲେ । ସେଇଥିପାଇଁ ତାଙ୍କ ପିଲାମାନେ ଦାମିକିଆ ଜୋତା ପିନ୍ଧିବା ନିମନ୍ତେ ଜିଦ୍ ଧରିଲେ, ସେ ନିଜକଥା ସେମାନଙ୍କୁ ମନେ ପକେଇ ଦେଉଥିଲେ ।

ଦୁଇ ଦୁଇଥର ସରସ୍ୱତୀ ପୂଜା ମଣ୍ଡପରୁ ତାଙ୍କୁ ବାହାରକରି ଦିଆଯାଇଥିଲା । 'ନୀଚ୍' ଜାତିର ଲୋକେ ସରସ୍ୱତୀଙ୍କ ପାଖ ପଶିବା ମନା' ବୋଲି କହି ପୂଜକ ତାଙ୍କୁ ସରସ୍ୱତୀଙ୍କ ସାମନାରୁ ତଡ଼ିଦେଲେ । ଆଉଥରେ ହିନ୍ଦୁହଷ୍ଟେଲ୍‌ର ପିଲାମାନେ ପୂଜାଦିନ ତାଙ୍କୁ ହଷ୍ଟେଲ୍‌ରେ ପୂରେଇ ଦେଲେ ନି । ତେଣୁ ଜ୍ଞାନ ଘୋଷ ନାମକ ଜଣେ ଛାତ୍ରଙ୍କ ନେତୃତ୍ୱରେ କେଇଜଣ ପିଲା ଏହାର ପ୍ରତିବାଦ ଜଣାଇ ହଷ୍ଟେଲ୍‌ରୁ ବାହାରିଗଲେ ଓ ମେସ୍ କରି ରହିଲେ । ମଣିଷମାନେ ସିନା ମେଘନାଦ ଶାହାଙ୍କୁ ଦେବୀ ସରସ୍ୱତୀଙ୍କ ପାଖ ପୂରେଇ ଦେଉ ନ ଥିଲେ, କିନ୍ତୁ ସରସ୍ୱତୀ ନିଜେ ହୁଏତ ମେଘନାଦଙ୍କ ପଛରେ ଛାଇ ଭଳି ଲାଗି ରହିଥିଲେ !

ଏହିସବୁ ନିର୍ଯାତନା ସତ୍ତ୍ୱେ ମେଘନାଦ ଶାହା ପୃଥିବୀର ଜଣେ ବିଶିଷ୍ଟ ପଦାର୍ଥ ବିଜ୍ଞାନୀ ରୂପେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ ।

୧୯୧୮ ମସିହା ଜୁନ୍ ମାସ ୧୬ ତାରିଖରେ ମେଘନାଦ ଶାହାଙ୍କର ବିବାହ ହେଲା । ତାଙ୍କ ସ୍ତ୍ରୀଙ୍କ ନାଁ ରାଧାରାଣୀ ରାୟ । ରାଧାରାଣୀଙ୍କ ବାପା ଥିଲେ ଖୁବ୍ ଧନୀ । ନାରାୟଣଗଞ୍ଜ ସବ୍‌ଡିଭିଜନ୍‌ର ରେଖାବ୍ ବଜାରରେ ରହୁଥିଲେ ସେ । କିନ୍ତୁ ବିଭିନ୍ନ ଆଡ଼େ ତାଙ୍କର ବ୍ୟବସାୟ ଚାଲିଥିଲା ।

ରାଧାରାଣୀ ଛୋଟ ଥିଲା ବେଳେ ତାଙ୍କର ମାଆ ମରିଯାଇଥିଲେ । ତେଣୁ ତାଙ୍କ ଆଈ ହିଁ ତାଙ୍କୁ ପିଲାବେଳୁ ଲାଳନ ପାଳନ କରିଥିଲେ ।

ମେଘନାଦ ଶାହାଙ୍କ ସାଙ୍ଗରେ ରାଧାରାଣୀଙ୍କର ବିବାହ ଠିକ୍ ହେବାରୁ ଭାରି ରାଗିଗଲେ ଆଈ । କହିଲେ, '' ଯାହା ଘରେ ଦୁଇଓଳି ପେଟ ପୂରେଇ ଖାଇବା ନିମନ୍ତେ ଭାତ ମୁଠିଏ ନ ଥିଲା, ତା' ଘରେ ରାଧାରାଣୀର ବୋହୂପଣିଆ ?''

ଆଈଙ୍କ ବିରୋଧ ସତ୍ତ୍ୱେ ସେଇଠି ବାହାଘର ଠିକ୍ ହୋଇଗଲା । ଏ'କଥା ଜାଣି ଆଈ ପୁଅକୁ କହିଥିଲେ,'' ତୋ ' ମନରେ ଯଦି ଏଇଆ ଥିଲା, ତା' ପୂର୍ବରୁ ଝିଅକୁ ପଦ୍ମା ନଈରେ ବୁଡ଼େଇ ମାରି ଦେଲୁ ନି କାହିଁକି ?''

କିନ୍ତୁ ରାଧାରାଣୀଙ୍କ ବାପାଙ୍କ ମନ ଲାଖିରହିଥିଲା ମେଘନାଦ ଶାହାଙ୍କ ଉପରେ । ସେତେବେଳେକୁ ମେଘନାଦ ପାଇସାରିଥାନ୍ତି ପ୍ରେମଚାନ୍ଦ ଛାତ୍ର ବୃତ୍ତି । ଏଭଳି ଜଣେ କୃତୀ ଛାତ୍ରକୁ ଜ୍ୱାଇଁରୂପେ ପାଇବା କେତେ ଜଣଙ୍କ ଭାଗ୍ୟରେ ଜୁଟେ ?

ବାହାଘର ହୋଇଗଲା । ବିତିଗଲା କେଇବର୍ଷ । ମେଘନାଦ ଶାହା ରହୁଥାଆନ୍ତି ଆଲାହାବାଦରେ । ବେଶ୍ ପ୍ରତିଷ୍ଠା ଅର୍ଜନ କରିସାରିଥାନ୍ତି । ଥରେ ସେ ଆଈଙ୍କୁ ସାଙ୍ଗରେ ଧରି ମଥୁରା, ବୃନ୍ଦାବନ ଏବଂ ପ୍ରୟାଗ ବୁଲେଇ ନେଲେ । ଥଟ୍ଟାରେ ଆଈଙ୍କୁ ପଚାରିଲେ, ''ଆଈମ, ତମ ନାତୁଣୀ ରାଧାରାଣୀ ଏବେ କେମିତି ଅଛି ? ପଦ୍ମା ନଈରେ ବୁଡ଼ିମରିବାଠାରୁ ଭଲରେ ଅଛି ନା ଖରାପରେ ଅଛି ?''

ଆଈ ଚଟ୍‌କିନା ଉତ୍ତର ଦେଲେ; ''ଦେଖ୍ ମେଘନାଦ, ସେଇ ରାଧାରାଣୀର ଭାଗ୍ୟବଳରୁ ହିଁ ତୁ' ଆଜି ଏଡ଼େ ବଡ଼ ହୋଇପାରିଲୁ । ''



# ଶାହା ପଢ଼ିଲେ ବେଦ

ମେଘନାଦ ଶାହାଙ୍କୁ ଛନ୍ଦ କପଟ ଜଣା ନ ଥିଲା । ସତ କଥା କହିବାକୁ ସେ ଆଦୌ ଭୟ କରୁ ନ ଥିଲେ । ଅପ୍ରିୟ ସତ୍ୟକୁ ବି ରୋକ୍‌ଠୋକ୍ କହି ଦେଉଥିଲେ । ତେଣୁ ସେ ବିଶେଷ ଲୋକପ୍ରିୟ ହୋଇ ନପାରିବା ସ୍ୱାଭାବିକ ।

ଲୋକେ ତାଙ୍କ ନାମରେ ବଦନାମ ରଟିଲେ । ତାଙ୍କ ନାମରେ ଅଭିଯୋଗ ହେଲା ଯେ ସେ ହିନ୍ଦୁଦର୍ଶନ ବିରୋଧରେ ମତ ଦେଉଛନ୍ତି । ବେଦକୁ ମାନୁନାହାନ୍ତି । ସେ ଥିଲେ ଜଣେ ଉଚ୍ଚକୋଟିର ବିଜ୍ଞାନୀ । ବିଜ୍ଞାନ  ଛଡ଼ା ଅନେକ ଧର୍ମଶାସ୍ତ୍ର ବି ସେ ପଢ଼ି ହଜମ କରିଥିଲେ । ଲୋକେ ସେ କଥା ମାନିଲେ ତ ?

ଥରକର ଘଟଣା । ସେତେବେଳକୁ ମେଘନାଦ ଶାହା ବେଶ୍ ଜଣା ଶୁଣା ହୋଇସାରିଥାନ୍ତି । ବିଜ୍ଞାନୀ ହିସାବରେ ଯଥେଷ୍ଟ ନାଆଁ ହୋଇଥାଏ ତାଙ୍କର । ସେ ବୁଲିଯାଇଥାନ୍ତି ଢାକା  । ଢାକା ଏବେ ବଙ୍ଗଳାଦେଶର ରାଜଧାନୀ । ସେଠାରେ ତାଙ୍କର ଦେଖାହେଲା ଜଣେ ଓକିଲଙ୍କ ସାଙ୍ଗରେ ।

ଓକିଲ ଜଣକ ମେଘନାଦ ଶାହାଙ୍କୁ ପଚାରିଲେ , ''ଆଜ୍ଞା, ଆପଣଙ୍କ ଗବେଷଣାର ବିଷୟଟା କଅଣ ? ''

ଶାହା ଉତ୍ତର ଦେଲେ, '' ନକ୍ଷତ୍ର ମାନଙ୍କର ଗଠନ ଅନୁଧ୍ୟାନ '' । ଓକିଲ ଜଣକ ଏଥିରୁ ବିଶେଷ କିଛି ବୁଝି ପାରିଲେ ନାହିଁ । ତେଣୁ ଶାହା ଖୁବ୍ ଆଗ୍ରହ ସହକାରେ ତାଙ୍କୁ ନକ୍ଷତ୍ରମାନଙ୍କର ଗଠନ ବିଷୟରେ ବୁଝେଇବାରେ ଲାଗିଲେ । ନିଜ ଆବିଷ୍କାର ସମ୍ବନ୍ଧରେ ମଧ୍ୟ କିଛି କିଛି କହିଲେ । ହେଲେ ଓକିଲ ମହାଶୟଙ୍କୁ ତାହା ସନ୍ତୁଷ୍ଟ କରିପାରିଲାନି । ଶାହା ପଦେ ଦି' ପଦ କହିଥିବେ କି ନା, ସେ ମଝିରେ ତାଙ୍କୁ ରୋକିଦେଇ କହି ପକେଇବେ, ''ଓଃ, ଏ'କଥା ? ଏହା ତ ଆମ 'ବେଦ'ରେ ଅଛି । '' ପୁଣି ପଦେ ଦି' ପଦ ଶୁଣି କହିବେ, ''କ୍ୱେଉଁ ନୂଆ କଥାଟା ? ଏହା କ'ଣ ଆମ ବେଦରେ ନାହିଁ ? ''

ପ୍ରତି କଥାରେ ଅଗ ଭାଙ୍ଗିଦେବାରୁ ଏବଂ 'ବେଦରେ ଅଛି',  ' ବେଦରେ ଅଛି' ବୋଲି ବାରମ୍ବାର କହିବାରୁ ଶାହା ରାଗି ଉଠିଲେ । ସହଜେ ତ ସେ ରାଗୀ । କିନ୍ତୁ ରଗେଇଲେ ଅବସ୍ଥା ଆହୁରି ଅସମ୍ଭାଳ ।

ଶାହା ବିରକ୍ତ ହୋଇ ଓକିଲବାବୁଙ୍କୁ ପଚାରିଲେ, '' ଆଚ୍ଛା, ଆଁପଣ ବେଦକୁ ଟିକି ନିଖି ଭାବରେ ପଢ଼ିଛନ୍ତି ନିଶ୍ଚୟ । ନୋହିଲେ ବେଦରେ ଏତେ କଥା ରହିଥିବାର ଆପଣ ଜାଣିଥାନ୍ତେ କିପରି ? ତେବେ ମୋ'ର ଗୋଟିଏ ମାତ୍ର ପ୍ରଶ୍ନ ଆପଣଙ୍କୁ । 'ନକ୍ଷତ୍ର ମାନଙ୍କର ଆୟୋନାଇଜେସନ୍ ' ବିଷୟରେ 'ବେଦ'ର କେଉଁଠି ଲେଖା ଅଛି ? ବେଦ ତ ଚାରିପ୍ରକାର । ଋକ୍, ସାମ, ଯଜୁଃ ଏବଂ ଅଥର୍ବ । କେଉଁଥିରେ ରହିଛି ଏ' ନକ୍ଷତ୍ରମାନଙ୍କର ଆୟୋନାଇଜେସନ୍ ବିଷୟରେ ବର୍ଣ୍ଣନା ? ''

ଓକିଲ ବି ଦବିଯିବା ଲୋକ ନୁହଁନ୍ତି । କେତେ କେତେ ସାକ୍ଷୀଙ୍କୁ ଅଦାଲତରେ ପାଣି ପିଆଇଛନ୍ତି ସେ । ମେଘନାଦ ଶାହା କିବା ଛାର !

ସେ'ବି ରୋକ୍‌ଠୋକ୍ ବତେଇ ଦେଲେ । କହିଲେ,''ଶୁଣନ୍ତୁ ବୈଜ୍ଞାନିକ ଆଜ୍ଞା । ମୁଁ ନିଜେ 'ବେଦ ପଢ଼ିନି । କିନ୍ତୁ ମୋର ଦୃଢ ଧାରଣା ଯେ ଆପଣମାନଙ୍କ ଭଳି ବୈଜ୍ଞାନିକମାନେ 'ନୂଆ ଆବିଷ୍କାର', 'ନୂଆ ଉଦ୍ଭାବନ' ବୋଲିକହି ଯେଉଁ ହୁରି ପକେଇ ଚାଲିଛନ୍ତି, ସେ ସବୁ ବେଦରେ ହିଁ ଅଛି । ''

ଏହି ଘଟଣା ମେଘନାଦ ଶାହାଙ୍କର ଆଖି ଖୋଲିଦେଲା । ଏହା ପରଠାରୁ ଦୀର୍ଘ କୋଡ଼ିଏ ବର୍ଷଧରି ସେ 'ବେଦ','ଉପନିଷଦ', 'ପୁରାଣ' ଏବଂ ''ହିନ୍ଦୁ ଜ୍ୟୋତିର୍ବିଜ୍ଞାନ'' ସମ୍ବନ୍ଧୀୟ ଶାସ୍ତ୍ର ଅନୁଧ୍ୟାନ କରିବାରେ ଲାଗିଲେ । ମରିବାପର୍ଯ୍ୟନ୍ତ ତାଙ୍କର ଏହି ଚେଷ୍ଟା ଅବ୍ୟାହତ ରହିଥିଲା ।

[ଡ଼କ୍ଟର ଟୋନି ନାଡେର୍ ନାମକ ଜଣେ·ଆମେରିକୀୟ ସ୍ନାୟୁ ବିଜ୍ଞାନୀ ନିଜ ଗବେଷଣାକୁ ଆଧାର କରି ଏବେ ଦର୍ଶାଇଲେଣି ଯେ ବେଦରେ ଯେଉଁସବୁ ବର୍ଣ୍ଣନା ରହିଛି, ତାହା ଆଧୁନିକ ଚିକିତ୍ସା ବିଜ୍ଞାନ ଦ୍ୱାରା ସ୍ଥିରୀକୃତ ଶରୀରର ଗଠନ ଏବଂ ଅଙ୍ଗର କାର୍ଯ୍ୟସହ ପୂରା ଖାପ ଖାଉଛି । ''ବେଦ ଯେ ସମସ୍ତ ସୃଷ୍ଟିର ପ୍ରତିଚିତ୍ର'' – ଏହାର ବୈଜ୍ଞାନିକ ପ୍ରମାଣ କ୍ରମେ ସ୍ପଷ୍ଟ ହୋଇ ଉଠୁଛି ।]

❑❑❑

# ମେଘନାଦ ଶାହାଙ୍କ ମହାନତା

ଡକ୍ଟର୍ ଚ଼ନ୍ଦ୍ରଶେଖର ଭେଙ୍କଟ ରାମନ୍‌ଙ୍କ ପରେ ଅନ୍ୟ କୌଣସି ଭାରତୀୟ ବୈଜ୍ଞାନିକ ନୋବେଲ୍ ପୁରସ୍କାର ପାଇବାର ଗୌରବ ଅର୍ଜନ କରି ପାରିନାହାନ୍ତି । ଡକ୍ଟର୍ ହରଗୋବିନ୍ଦ ଖୋରାନା ଏବଂ ଡକ୍ଟର୍ ସୁବ୍ରମନିଆନ୍ ଚ଼ନ୍ଦ୍ରଶେଖର ନୋବେଲ୍ ପୁରସ୍କାର ପାଇଥିଲେ ମଧ୍ୟ ପୁରସ୍କାର ପାଇବା ବେଳକୁ ସେମାନେ ଥିଲେ ଆମେରିକାର ନାଗରିକ । ସେମାନେ ଭାରତରେ ଜନ୍ମ ନେଇଥିଲେ ସତ, କିନ୍ତୁ ପରେ ଆମେରିକାର ନାଗରିକତ୍ୱ ଗ୍ରହଣ କରି ନେଇଥିଲେ । ତେବେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇବା ପାଇଁ ଡକ୍ଟର୍ ମେଘନାଦ ଶାହାଙ୍କ ନାମ ସୁପାରିସ କରାଯାଇଥିଲା । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ତେବେ ଶାହା ଥିଲେ ଜଣେ ଶିକ୍ଷକ ଭଳି ଶିକ୍ଷକ ।

ଛାତ୍ରମାନେ ତାଙ୍କୁ ଅତି ଭୟ କରୁଥିଲେ, ଅତି ସ୍ନେହ କରୁଥିଲେ ମଧ୍ୟ । ଅତି ରାଗୀ ଶିକ୍ଷକ ରୂପେ ତାଙ୍କର ଦୁର୍ନାମ ଥିଲା । କିନ୍ତୁ ବିନା କାରଣରେ ସେ ରାଗୁନଥିଲେ । ଗବେଷଣା କାମରେ ହେଳା କଲେ ସେ ଆଦୌ ସହି ପାରୁ ନଥିଲେ । ଦାୟିତ୍ୱହୀନତା ତାଙ୍କ ଦୃଷ୍ଟିରେ ଥିଲା ଏକ ବିରାଟ ଅପରାଧ ଭଳି ।

ଡକ୍ଟର ବି. ଡି. ନାଗଚ଼ୌଧୁରୀ ଥିଲେ ଡକ୍ଟର୍ ଶାହାଙ୍କର ଛାତ୍ର । ଶାହାଙ୍କ ମୃତ୍ୟୁପରେ ନାଗଚ଼ୌଧୁରୀ ଶାହା ଇନ୍‌ଷ୍ଟିଚ଼ିଉଟ୍ ଅଫ୍ ନିଉକ୍ଲିଆର୍ ଫିଜିକ୍‌ସ୍'ର ନିର୍ଦ୍ଦେଶକ ରୂପେ ବାରବର୍ଷ ଧରି ଦାୟିତ୍ୱ ତୁଲେଇ ଆସିଥିଲେ ।

ଡକ୍ଟର୍ ନାଗଚ଼ୌଧୁରୀଙ୍କ ଛାତ୍ରବେଳର କଥା । ସ୍ୱାଧୀନତା ଆନ୍ଦୋଳନ ବେଳେ ସେ ଜଣେ ଆତଙ୍କବାଦୀ ବୋଲି ପୋଲିସ୍ ସନ୍ଦେହ କଲା । ତେଣୁ ପୋଲିସ୍ ତାଙ୍କର ହଷ୍ଟେଲ୍ କୋଠରି ଖାନତଲାସ କରି ତାଙ୍କୁ ହାଜତରେ ନେଇ ପୂରେଇ ଦେଲା । ଏ ଖବର ପହଞ୍ଚିଗଲା ଡକ୍ଟର ଶାହାଙ୍କ ପାଖରେ । ଶାହା ପୋଲିସ୍‌କୁ କୁହାବୋଲା କରି ନାଗଚୌଧୁରୀଙ୍କୁ ହାଜତରୁ ମୁକୁଳେଇଲେ । ଥାନାକୁ ନିଜର ଗାଡ଼ି ପଠେଇ ତାଙ୍କୁ ଘରେ ତୁରନ୍ତ ଦେଖାକରିବାକୁ ଆଦେଶ ଦେଲେ ନାଗଚୌଧୁରୀଙ୍କୁ । ଭୟରେ ଥରି ଥରି ନାଗଚ଼ୌଧୁରୀ ଶାହାଙ୍କ ଆଗରେ ଆସି ଠିଆହେଲେ । ଶାହା ମଧ୍ୟ ରାଗରେ ଥରୁଥାନ୍ତି । ସେ ନାଗଚ଼ୌଧୁରୀଙ୍କୁ ବୁଝେଇଲେ, ''ଦେଖ୍, ତୁ ଦେଶସେବା କରିବାକୁ ଚାହୁଁ ଛୁ ତ ? କେବଳ ଆନ୍ଦୋଳନ ଦେଶପାଇଁ ଗୌରବ

ଆଣି ଦେବନି । ତୁ' ଯଦି ମନ ଯୋଗ ଦେଇ ପାଠ ପଢ଼ିବୁ, କାମକୁ କର୍ତ୍ତବ୍ୟ ରୂପେ ବିଚାର କରିବୁ, ତାହା ହେବ ସବୁଠାରୁ ବଡ଼ ଧରଣର ଦେଶସେବା,'' – ଏଇଆ କହି ସେ ନାଗଚୌଧୁରୀଙ୍କୁ ତାଙ୍କ ଘରେ ରହିବାକୁ ବାଧ୍ୟ କଲେ । ନାଗଚୌଧୁରୀଙ୍କୁ ନିଜ ଘରେ ଅଟକ କରି ରଖିଲେ ପୂରା ତିନିମାସ ।

କ୍ରିକେଟ୍ ଖେଳ ଦେଖିବା ପାଇଁ କାହିଁକି ଯେ ଲୋକେ ପାଗଳ ପ୍ରାୟ ହୋଇଯାଆନ୍ତି, ତାହା ଶାହାଙ୍କୁ ଆଶ୍ଚର୍ଯ୍ୟ ଲାଗେ । ଥରେ ତାଙ୍କର କେତେଜଣ ଛାତ୍ରଙ୍କୁ ଗବେଷଣାଗାରରେ ଦେଖିବାକୁ ମିଳିଲାନି । ଶାହା ଅନ୍ୟମାନଙ୍କୁ ପଚାରି ବୁଝିଲେ ଯେ ସେମାନେ ଯାଇଛନ୍ତି ଏକ ଗୁରୁତ୍ୱପୂର୍ଣ୍ଣ କ୍ରିକେଟ୍ ଖେଳ ଦେଖିବାକୁ । ଶାହା କି ଆଉ ଥୟ ଧରନ୍ତି ! କ୍ରିକେଟ୍ ପଡ଼ିଆରେ ଲଗା ଯାଇଥିବା ମାଇକ୍ ସାହାଯ୍ୟରେ ଛାତ୍ରମାନଙ୍କର ନାମ ବାରମ୍ବାର ଘୋଷଣା କରାଗଲା । ସେମାନଙ୍କୁ ଅବିଳମ୍ବେ ଗବେଷଣାଗାରରେ ହାଜର ହେବାକୁ ନିର୍ଦ୍ଦେଶ ଦିଆଗଲା । ଖେଳଦେଖା ଅଧାରୁ ବନ୍ଦ କରି ଛାତ୍ରମାନେ ଧାଇଁଲେ ଗବେଷଣାଗାରକୁ । ଡରିମରି ଉପସ୍ଥିତ ହେଲେ ଶାହାଙ୍କ ସମ୍ମୁଖରେ । ଶାହା ସେମାନଙ୍କୁ କହିଲେ,'' ତୁମ୍ଭେମାନେ ନିଜେ ଯଦି କ୍ରିକେଟ୍ ଖେଳରେ ମାତିଥାନ୍ତ, ତେବେ ମୋ'ର କିଛି କହିବାର ନ ଥାନ୍ତା । ବରଂ ମୁଁ ସେଥିରେ ବେଶୀ ଖୁସି ହୋଇଥାନ୍ତି । କିନ୍ତୁ ଘଣ୍ଟା ଘଣ୍ଟା ଧରି ଅଳସୁଆଙ୍କ ଭଳି ବସି ବସି ଖେଳ ଦେଖିବା ହେଉଛି ଏକ ବିରାଟ ମୂର୍ଖାମି '' ।

ଥରେ ରୁଷିଆ ଭ୍ରମଣରୁ ଫେରି ଶାହା ତାଙ୍କ ଛାତ୍ରମାନଙ୍କୁ ପଚାରିଲେ, ''ନର୍ଗିସ୍ କିଏ ତୁମ୍ଭେମାନେ ଜାଣିଛ ? '' ସେତେବେଳେ ରୁଷିଆରେ 'ଆୱାରା ' ସିନେମା ଦେଖା ହେଉଥାଏ । ନର୍ଗିସ୍‌ଙ୍କର ଏହି ଛବି ଦେଖିବାକୁ ସିନେମା ହଲ୍‌ରେ ଦର୍ଶକମାନଙ୍କର ଭିଡ଼ । ରୁଷିଆର ଲୋକମାନେ ତାଙ୍କୁ ପଚାରିଲେ ହିନ୍ଦୀ ଚଳଚିତ୍ର ଅଭିନେତ୍ରୀ ନର୍ଗିସ୍‌ଙ୍କୁ ସେ ଜାଣିଛନ୍ତି କି ନା ? ବଡ଼ ଅଡୁଆରେ ପଡ଼ିଲେ ଶାହା, ନର୍ଗିସ୍‌ଙ୍କ ନାଁ ବି ସେ ଆଗରୁ ଶୁଣି ନ ଥିଲେ ।

ଶାହାଙ୍କର ଜଣେ ଛାତ୍ର ଡକ୍ଟର ଏନ୍. କେ. ଶାହା ଲେଖିଛନ୍ତି, '' ଡକ୍ଟର୍ ଶାହାଙ୍କ ଅଧୀନରେ ଗବେଷଣା କରିବା ପାଇଁ ଆକୁଳ ହୋଇ ଉଠିଲି । ସେ ରହୁଥାନ୍ତି ଆଲାହାବାଦରେ । ତାଙ୍କ ସହ ମୋର ଚିହ୍ନା ପରିଚୟ ନାହିଁ । ତଥାପି ମୋ ମନକଥା ଜଣେଇ ତାଙ୍କୁ ଚିଠି ଖଣ୍ଡେ ଲେଖିଲି । ଜଲ୍‌ଦି ଚିଠିଟିର ଉତ୍ତର ମିଳିଗଲା । ଚିଠିଟି ଥିଲା ଖୁବ୍ ଲମ୍ବା । ବଡ଼ ବଡ଼ ଅକ୍ଷରରେ ପରିଷ୍କାର ଭାବରେ ତାହା ଲେଖା ହୋଇଥିଲା । ଶାହା ଲେଖିଥିଲେ, ''ଆମ ଦେଶରେ ଗବେଷଣା କରିବାରେ ବଡ଼ ଅସୁବିଧା । ତୁମେ ଗବେଷଣା କରିବା ବିଷୟ ମନରୁ ପୋଛିଦିଅ । ଗବେଷଣା କଲେ ତୁମର ମର୍ଯ୍ୟାଦା ବୃଦ୍ଧି ପାଇବବୋଲି ଯଦି ଭାବୁଥାଅ ତାହା ଏକ ପାଗଳାମି । ତାହାଛଡ଼ା ଏହା ବଡ଼ ନୀରସ କାମ । ଏଥିପାଇଁ ମଧ୍ୟ

କଠିନ ଅଧ୍ୟବସାୟ ଏବଂ ନିଷ୍ଠା ଲୋଡ଼ା । ତୁମକୁ ଗବେଷଣା ବୃତ୍ତି ମିଳିବ କି ନା ଜଣାନାହିଁ । ତଥାପି ତୁମେ ତୁମ ପାରିବା ପଣିଆଁର ପ୍ରମାଣ ଦେଲେ ମୁଁ ନିଶ୍ଚୟ ତୁମକୁ ସାହାଯ୍ୟ କରିବି ।'' ଚିଠିଟି ପାଇ ତାକୁ ବାରମ୍ବାର ପଢ଼ିଲି । ଭାବିଲି ଯେ ଚିଠିଟିର ଭାଷା କଡ଼ା ହେଲେ ବି ଏହା ନିଛକ ସତ କଥା । ଡ଼କ୍ଟର ଶାହା ଯେ ମୋତେ ସାହାଯ୍ୟ କରିବାପାଇଁ ପ୍ରତିଶ୍ରୁତି ଦେଇଛନ୍ତି ତାହା ଯଥେଷ୍ଟ । ମୋ' ସାଙ୍ଗସାଥୀମାନେ ମଧ୍ୟ ମୋତେ ଉତ୍ସାହ ଦେଲେ । ତେଣୁ ମନରେ ସାହସ ବାନ୍ଧି ଲୁଗାପଟା ଓ ବହି ଦୁଇତିନିଖଣ୍ଡ ସୁଟକେଶ୍‌ରେ ଭର୍ତ୍ତି କରି ୭, ବେଲି ରୋଡ୍ , ଆଲାହାବାଦ୍‌ରେ ପହଞ୍ଚିଗଲି ।

''ସେତେବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । ଡକ୍ଟର ଶାହା ଘର ସାମନା ବଗିଚାରେ ବସି ପଢୁଥାଆନ୍ତି । ମୁଁ ତାଙ୍କୁ ନମସ୍କାର କଲି । ସେ ମୋତେ ଠଉରେଇ ନେଲେ । ମୋର ଭଲମନ୍ଦ ବିଷୟ ପଚାରି ନିଜ ଘରର ତଳ ମହଲାରେ ଥିବା କୋଠରିରେ ମୋ ରହିବାର ବ୍ୟବସ୍ଥା କରିଦେଲେ ।

'' ପରଦିନ ସକାଳେ ଚା' ଖାଇଲା ବେଳେ ମୋ ପଢ଼ାପଢ଼ି ବିଷୟରେ ପଚାରି ପଦାର୍ଥ ବିଜ୍ଞାନରେ ମୋର କେତେଦୂର ଜ୍ଞାନ ଅଛି ତାହା କଳିନେଲେ । ସାଙ୍ଗେ ସାଙ୍ଗେ ମୋ ପାଇଁ କାମ ତାଲିକା ଠିକ୍ ହୋଇଗଲା । ମୋଟାମୋଟି ଭାବରେ କହିଲେ, ସେ ନିର୍ବାଚନ କରି ଦେଇଥିବା ବହିମାନ ପଢ଼ିବି । ଗବେଷଣା କରୁଥିବା ଅନ୍ୟ ଛାତ୍ରମାନଙ୍କୁ ତାଙ୍କ କାମରେ ସାହାଯ୍ୟ କରିବି । ପ୍ରତିଦିନର କାମକୁ ଟିପି ମଝିରେ ମଝିରେ ତାଙ୍କୁ ଦେଖେଇବି ।

'' ଦୀର୍ଘ ଛଅମାସ ଧରି ମୁଁ ସେଇଆ କରି ଚାଲିଲି । ସେ ମୋ ନୋଟ୍ ଦେଖନ୍ତି । କିନ୍ତୁ ମୁହଁ ଖୋଲି କିଛି କହନ୍ତି ନାହିଁ । ସେ ଥରେ କେତେଜଣ ଗବେଷକଙ୍କ ସହ ଆଲୋଚନା କରୁଥାନ୍ତି । ମୁଁ ଠିଆହୋଇ ଆଲୋଚନା ଶୁଣୁଥାଏ । ହଠାତ୍ ସେ ମୋ ଆଡ଼କୁ ମୁହଁ ଫେରେଇ ଆଣି ମୋ' ଗବେଷଣାର ବିଷୟଟି କହିଦେଲେ ଏବଂ ଗବେଷଣାଗାରର କେଉଁ ଜାଗାରେ ଗବେଷଣା କରିବାର ଯନ୍ତ୍ରପାତି ଇତ୍ୟାଦି ରଖିବି ତାହା ବତେଇ ଦେଲେ । ''

ଡକ୍ଟର୍ ମେଘନାଦ ଶାହା ଥାଆନ୍ତି ପାର୍ଲିଆମେଣ୍ଟ୍ ସଭ୍ୟ । ପାରମାଣବିକ ରିଆକ୍ଟର୍ ବିଷୟରେ କେ.ଡି. ମାଳବ୍ୟଙ୍କ ସହ ତାଙ୍କର କଥା କଟା କଟି ଚାଲିଲା ।

କେ.ଡ଼ି. ମାଳବ୍ୟ ଶେଷରେ କହିଲେ,'' ମୋ'ର ଆଉ ବିଶେଷ କିଛି କହିବାର ନାହିଁ । ତେବେ ଏତିକି କହୁଛି ଯେ ଡକ୍ଟର୍ ଶାହା ମୋର ଶିକ୍ଷକ । ମୁଁ ତାଙ୍କର ପୁରାତନ ଛାତ୍ର । ମୁଁ ଜାଣେ ଯେ ସେ ବଡ଼ ଏକଜିଦିଆ । ଜିଦ୍ ଧରିଥିବା ମୁହୂର୍ତ୍ତଟିକୁ ଛାଡ଼ିଦେଲେ ତାଙ୍କ ଭଳି ଉତ୍ତମ ଆଉ ଉପକାରୀ ଶିକ୍ଷକ ମିଳିବା ବିରଳ । ମୋ' ମତରେ ସେ ଯେ ରାଜନୀତି ଭିତରକୁ ପଶି ଆସିଲେ, ତା'ର କାରଣ .........................।''

ଏହା ସତ୍ତ୍ୱେ ନିଜ ଗବେଷଣା ଅନୁଷ୍ଠାନର ''ଷ୍ଟୁଡେଣ୍ଟ୍‌ସ୍ ହଲ୍'' କୁ ଉନ୍ମୋଚନ କରିବା ନିମନ୍ତେ ଡ଼କ୍ଟର୍ ଶାହା କେ.ଡି. ମାଳବ୍ୟଙ୍କୁ ଅନୁରୋଧ କରିଥିଲେ । ମାଳବ୍ୟଙ୍କ ପାଇଁ ଏହା ଥିଲା ଏକ ଆଦେଶ ଭଳି । କାରଣ ଏହି ଆଦେଶ ଥିଲା ଶାହାଙ୍କର ଅଧିକାର ଏବଂ ଏହାକୁ ପାଳନ କରିବା ଥିଲା ମାଳବ୍ୟଙ୍କର କର୍ତ୍ତବ୍ୟ । କାରଣ ଶାହାଥିଲେ ଶିକ୍ଷକ, ମାଳବ୍ୟ ଥିଲେ ତାଙ୍କର ଛାତ୍ର ।

ବାହାରକୁ ବଡ଼ କଡ଼ା ଜଣା ପଡୁଥିଲେ ମଧ୍ୟ ଡକ୍ଟର ଶାହାଙ୍କ ହୃଦୟ ଥିଲା ବଡ଼ କୋମଳ । ନିଜର ଗରିବ ଆତ୍ମୀୟମାନଙ୍କୁ ସେ ସବୁ ପ୍ରକାରର ସାହାଯ୍ୟ କରୁଥିଲେ । ଛାତ୍ରମାନଙ୍କ ଅଭାବ ଅସୁବିଧାରେ ପଇସା ପତ୍ର ଦେଉଥିଲେ, ପରିବାରରେ କେହି ନ ଜାଣି ସେ କେତେ ନା କେତେ ମନିଅର୍ଡର୍ ପଠାଇଥାନ୍ତି । କାହା ପାଖକୁ ପଠାନ୍ତି ଏବଂ କାହିଁକି ପଠାନ୍ତି, ତାହା କେବଳ ତାଙ୍କୁ ହିଁ ଜଣା । ସ୍କୁଲ୍‌ରେ ପଢୁଥିବାବେଳେ ତାଙ୍କୁ ସାହାଯ୍ୟ କରିଥିବା ଡାକ୍ତରଙ୍କ ପତ୍ନୀଙ୍କ ପାଖକୁ ପ୍ରତିମାସରେ ଟଙ୍କା ପଠାଇଥାନ୍ତି ।

ଘର ଚାକରକୁ 'ଚାକର' ବୋଲି କହିଲେ ଭାରି ବିରକ୍ତ ହୁଅନ୍ତି ଶାହା । ସେ କହନ୍ତି, 'ଚାକର' କଅଣ ? ତା'ର କ'ଣ କିଛି ନାଁ ନାହିଁ ? ଏପରିକି କେହି ଗରିବ ଲୋକ ଛୋଟକାଟିଆ ବ୍ୟବସାୟଟିଏ କରିବାପାଇଁ ଚାହିଁଲେ ତାକୁ ସାହାଯ୍ୟ କରିବା ପାଇଁ ଆଗଭର ହୋଇ ଆସନ୍ତି ଶାହା ।

ତାଙ୍କର ପୁଅ ଓ ଝିଅମାନେ ବେଶ୍ ପ୍ରତିଷ୍ଠିତ । ବଡ଼ ପୁଅ ଡକ୍ଟର୍ ଅଜିତ୍ ଶାହା । ସେ ଜଣେ ନାମଜାଦା ପଦାର୍ଥ ବିଜ୍ଞାନୀ । ମେଘନାଦ ଶାହା ଭାରତୀୟ ବିଜ୍ଞାନ କଂଗ୍ରେସ୍‌ର ସଭାପତି ଥିଲେ ୧୯୩୪ ମସିହାରେ । ଡକ୍ଟର ଅଜିତ ଶାହା ସଭାପତି ହୋଇଥିଲେ ୧୯୮୦ ମସିହାରେ । ବାପ ପୁଅ ଉଭୟ ଭାରତୀୟ ବିଜ୍ଞାନ କଂଗ୍ରେସର ସଭାପତି ଆସନ ଅଳଂକୃତ କରିବା ଏହା ବୋଧହୁଏ ଏକମାତ୍ର ଉଦାହରଣ ।

୧୯୫୬ ମସିହା ଫେବୃଆରୀ ମାସ ୧୬ ତାରିଖ । ଦିଲ୍ଲୀସ୍ଥିତ ଯୋଜନା କମିଶନ ଅଫିସ୍‌ରେ ଡକ୍ଟର୍ ଜେ.ସି ଘୋଷଙ୍କ ସହ ତାଙ୍କର ଆଲୋଚନା କରିବାର ଥାଏ । ସେ ଟ୍ୟାକ୍‌ସିରୁ ଓହ୍ଲାଇଲେ । ପଇସାପତ୍ର ଛିଣ୍ଡେଇ ଭଡ଼ା ଦେଇଦେଲେ । ବିଡ଼ାଏ ଫାଇଲ୍ କାଖରେ ଜାକି ରାଷ୍ଟ୍ରପତି ଭବନ ଆଡ଼କୁ ମୁହାଁଇଲେ । ଗେଟ୍‌ରେ ପଶିବା ପୂର୍ବରୁ ହଠାତ୍ ଟଳି ପଡ଼ିଲେ ସେ । ତାଙ୍କୁ ୱେଲିଙ୍ଗ୍‌ଟନ୍ ହସ୍‌ପିଟାଲ୍‌କୁ ନିଆଗଲା । ସେଠାରେ ଡାକ୍ତରମାନେ ତାଙ୍କୁ 'ମୃତ' ବୋଲି ଘୋଷଣା କଲେ ।

ସ୍ୱତନ୍ତ୍ର ବିମାନ ଯୋଗେ ତାଙ୍କର ମର ଶରୀରକୁ ଅଣାଗଲା କଲିକତା । ସେ ଦିନ ପଡ଼ିଥାଏ ସରସ୍ୱତୀ ପୂଜା । ପୂଜା ମଣ୍ଡପ ଛାଡ଼ି ହଜାର ହଜାର ଲୋକ ଡକ୍ଟର୍ ଶାହାଙ୍କୁ ଶେଷ ସମ୍ମାନ ଜଣେଇବାପାଇଁ ଆସି ରୁଣ୍ଡ ହେଲେ ।

ଏକଦା 'ନୀଚ୍ ଜାତିର ପିଲା' କହି ତାଙ୍କୁ ସରସ୍ୱତୀ ପୂଜା ମଣ୍ଡପରୁ ବାହାର କରି ଦେଇଥିଲେ ପୂଜକ । ହିନ୍ଦୁ ହଷ୍ଟେଲ୍‌ରେ ଅନୁଷ୍ଠିତ ସରସ୍ୱତୀ ପୂଜା ସ୍ଥଳକୁ ମଧ୍ୟ ତାଙ୍କୁ ପ୍ରବେଶ କରିବାକୁ ଦିଆଯାଇ ନ ଥିଲା । କିନ୍ତୁ ଡକ୍ଟର୍ ଶାହା ଥିଲେ ସରସ୍ୱତୀଙ୍କର ପ୍ରିୟ । ସରସ୍ୱତୀଙ୍କ କରୁଣାରୁ ସରସ୍ୱତୀ ପୂଜାଦିନ ହିଁ ତାଙ୍କର ଦେହାନ୍ତ ହୋଇଗଲା ।

ଗାଁରେ ଥିବା ତାଙ୍କ ଛୋଟ ଦୋକାନରେ ବସି ସଉଦାପତ୍ର ବିକ୍ରିବଟାରେ ମେଘନାଦ ସାହାଯ୍ୟ କରିବେ ବୋଲି ଥିଲା ତାଙ୍କ ବାପାଙ୍କ ଇଚ୍ଛା । କିନ୍ତୁ ମେଘନାଦ ହୋଇପାରିଥିଲେ ଏକ ବିଦ୍ୱାନ୍ ବିଜ୍ଞାନୀ ।





# ମନୁଆ ବୈଜ୍ଞାନିକ ଆଇନ୍‌ଷ୍ଟାଇନ୍

ଆଇନ୍‌ଷ୍ଟାଇନ୍ ଥିଲେ ପୃଥିବୀର ଜଣେ ଅତି ନାମଜାଦା ବୈଜ୍ଞାନିକ । ସେ ପଦାର୍ଥ ବିଜ୍ଞାନରେ ନୋବେଲ୍ ପୁରସ୍କାର ପାଇଥିଲେ । ସେ ଗବେଷଣା କରୁଥିଲେ ପ୍ରିନ୍‌ସ୍‌ଟନ୍ ବିଶ୍ୱବିଦ୍ୟାଳୟରେ ।

ଥରେ ଛୋଟ ଝିଅଟିଏ ଆସି ଆଇନ୍‌ଷ୍ଟାଇନ୍‌ଙ୍କ ପାଖରେ ପହଞ୍ଚିଲା । ଆଇନ୍‌ଷ୍ଟାଇନ୍ ଯେଉଁ ଘରେ ରୁହୁଥିଲେ ତା'ର ପାଖାପାଖି ଆଉ ଏକ ଘରେ ରହୁଥିଲେ ଝିଅର ପରିବାର । ଝିଅଟି ଆଇନଷ୍ଟାଇନ୍‌ଙ୍କ ଘରେ ପହଞ୍ଚି ନିଃସଙ୍କୋଚରେ ତାଙ୍କ ପାଖକୁ ଚାଲିଗଲା । କହିଲା, '' ମୋ' ଦ୍ୱାରା ଅଙ୍କ କଷିବା ହୋଇ ପାରୁନି । ସ୍କୁଲ୍‌ରେ ଯେଉଁ ଗଣିତ ପଢା ହେଉଛି, ତାକୁ ବି ମୁଁ ଭଲଭାବେ ବୁଝିପାରୁନି । ବୁଝି ତ ପାରୁନି, ତେଣୁ ପଢା କରି ସ୍କୁଲ୍‌କୁ ଯିବି କେମିତି ? ଆପଣ ମୋତେ ଟିକିଏ ଗଣିତ ବୁଝେଇ ଦେଇ ପାରନ୍ତେ ନି ? ମୋତେ ସିନା ବୁଝିବାକୁ କଷ୍ଟ ଲାଗୁଛି , କିନ୍ତୁ ଆପଣଙ୍କ ପାଇଁ ସେଗୁଡ଼ା ବୁଝିବା ବଡ଼ ସହଜ ଯେ ! ''

ମନରେ କୌଣସି ଡର ଭୟ ନ ରଖି ଝିଅଟି ବଡ଼ ସରଳ ଭାବରେ ଆଇନ୍‌ଷ୍ଟାଇନ୍‌ଙ୍କୁ ତା'ର ଅସୁବିଧା କଥା କହି ପକାଇଲା । ଝିଅର କଥା ଗୁଡ଼ାକ ଭାରି ଭଲ ଲାଗିଲା ତା'ଙ୍କୁ । ସେ ତାକୁ ପଚାରିଲେ, '' ମାଆ, ମୁଁ ତତେ ଗଣିତ ଟିଉସନ୍ କରିବା ପାଇଁ ରାଜି । କିନ୍ତୁ ଟିଉସନ୍ ହେଲେ ତ ଫିସ୍ ଦେବାକୁ ପଡ଼େ । ତୁ ଏଥିପାଇଁ ମୋତେ କେତେ ଫିସ୍ ଦେଇପାରିବୁ ?''

ସାମାନ୍ୟ ଡେରି ନ କରି ଝିଅଟି ଉତ୍ତର ଦେଲା,''ମୋ ବାପା ପକେଟ୍ ଖର୍ଚ୍ଚ ପାଇଁ ମୋତେ ସପ୍ତାହକୁ ଗୋଟିଏ ଡଲାର୍ ଦିଅନ୍ତି । ଆପଣ ଯଦି ପ୍ରତି ସପ୍ତାହରେ ମୋତେ ଘଣ୍ଟାଏ ମାତ୍ର ଟିଉସନ୍ କରିବେ, ତେବେ ମୁଁ ଫିସ୍ ବାବତକୁ ଆପଣଙ୍କୁ ଦେବି ୭୫ ସେଣ୍ଟ୍ ( ଏକ ଡଲାର = ୧୦୦ ସେଣ୍ଟ୍ ) । କ'ଣ ? ଆପଣଙ୍କୁ ପୋଷେଇବନି ? ''

ଆଇନ୍‌ଷ୍ଟାଇନ୍ ମନେ ମନେ ହସୁଥାଆନ୍ତି । ଝିଅଟିର କଥା ଶୁଣି ତାଙ୍କୁ ବି ଖୁବ୍ ମଜା ଲାଗୁଥାଏ । ସେ କହିଲେ, ''ଠିକ୍ ଅଛି । ସପ୍ତାହକୁ ୭୫ ସେଣ୍ଟ୍ ନେଇ ସପ୍ତାହରେ ମାତ୍ର ଘଣ୍ଟାକ ପାଇଁ ତତେ ଗଣିତ ଟିଉସନ୍ କରିବାକୁ ମୁଁ ରାଜି । ''

ଝିଅଟି ଖୁସି ହୋଇ ଘରକୁ ଫେରିଗଲା ।

ପ୍ରତି ସପ୍ତାହରେ ଝିଅଟି ଘଣ୍ଟାକ ପାଇଁ ଆଇନ୍‌ଷ୍ଟାଇନ୍‌ଙ୍କ ପାଖକୁ ଆସେ । ଆଇନ୍‌ଷ୍ଟାଇନ୍ ତାକୁ ଗଣିତ ପଢ଼େଇ ଦିଅନ୍ତି । ଘରେ କଷିବାପାଇଁ ଅଙ୍କ ଡାକି ଦିଅନ୍ତି ।

ଏହିପରି ଭାବରେ ବିତିଗଲା କେଇ ସପ୍ତାହ । ହଠାତ୍ ଏ କଥା ଝିଅଟିର ବାପାଙ୍କ କାନରେ ପଡ଼ିଲା । ସେ ଥିଲେ ପ୍ରିନ୍‌ସ୍‌ଟନ୍ ବିଶ୍ୱବିଦ୍ୟାଳୟର ଜଣେ ମାମୁଲି ଡ୍ରାଇଭର୍ । ତାଙ୍କ ଝିଅକୁ ନୋବେଲ୍ ପୁରସ୍କାର ବିଜେତା ଆଇନ୍‌ଷ୍ଟାଇନ୍ ଟିଉସନ୍ କରୁଥିବାର ଶୁଣି ସେ ଛାନିଆ ହୋଇଗଲେ । ପୁଣି ଏଥିପାଇଁ ସପ୍ତାହକୁ ଜମା ୭୫ ସେଣ୍ଟ୍ ଫିସ୍ ନେଉଥିବା ଜାଣି ଆହୁରି ଡରିଗଲେ ସେ । ସେ ଭାବିଲେ ଯେ ତାଙ୍କର ଟିକି ଝିଅଟି ଆଇନ୍‌ଷ୍ଟାଇନ୍‌ଙ୍କୁ ଉଚିତ ସମ୍ମାନ ଦେଇନି । ବରଂ ତାଙ୍କୁ ଅପମାନିତ କରିଛି ।

ଆଇନ୍‌ଷ୍ଟାଇନ୍‌ଙ୍କ ପାଖରେ ଦୋଷ ମାନିଯାଇ କ୍ଷମା ମାଗିବା ନିମନ୍ତେ ସେ ତୁରନ୍ତ ଧାଇଁଲେ ତାଙ୍କ ପାଖକୁ । ବଡ଼ କାକୁତି ମିନତି ହୋଇ ଭୁଲ୍ ମାଗିଲେ ଆଇନ୍‌ଷ୍ଟାଇନ୍‌ଙ୍କୁ ।

କିନ୍ତୁ ଝିଅର ବାପାଙ୍କ କଥାରେ ହସି ପକେଇଲେ ଆଇନ୍‌ଷ୍ଟାଇନ୍ । କହିଲେ, ''ଭାଇ, ତୁମେ ଆମ ଦୁହିଁଙ୍କୁ ଭୁଲ୍ ବୁଝିଛ । ତୁମ ଝିଅ ମୋତେ ଅପମାନିତ କରିଥିବାର ପ୍ରଶ୍ନ ଉଠୁଛି କୁଆଡୁ ? ମୋତେ ସେ କେତେବେଳେ ଅବା ଅସମ୍ମାନ କଲା ? କେତେବେଳେ ଅବା ମର୍ଯ୍ୟାଦାହାନି କଲା ମୋ'ର ? ତେଣୁ ମୋ' ପାଖରୁ କ୍ଷମା ଚାହିଁବାର ପ୍ରଶ୍ନ ହିଁ ଉଠୁନି । ମନରେ କିଛି ନ ଭାବି ଘରକୁ ଫେରିଯାଅ । ହଁ, ମନେରଖ, ପ୍ରତି ସପ୍ତାହରେ ଗଣିତ ଟିଉସନ୍ ହେବାକୁ ସେ ଯେମିତି ଆଗରୁ ଆସୁଥିଲା, ତାକୁ କହିବ, ସେ' ସେମିତି ନିୟମିତ ଆସୁଥିବ ।''

ହେଲେ ଏ କଥାରେ କି ବାପର ମନ ବୁଝେ ? ସେ ଥତମତ ହୋଇ ଆଇନ୍‌ଷ୍ଟାଇନ୍‌ଙ୍କୁ କହିଲେ, '' ଆଚ୍ଛା, ଆପଣ ପଛେ ତାକୁ ଗଣିତ ଟିଉସନ୍ କରନ୍ତୁ, କିନ୍ତୁ ଏଇ ସାମାନ୍ୟ ଫିସ୍ .........................।''

ଆଇନ୍‌ଷ୍ଟାଇନ୍ ଗମ୍ଭୀର ହୋଇଗଲେ । ତାଙ୍କର ଗଳା ଭାରି ହୋଇ ଉଠିଲା । ସେ ଉତ୍ତର ଦେଲେ , ''ବନ୍ଧୁ, ତୁମର ଝିଅ ମୋ ପାଖରେ ସପ୍ତାହକୁ ମାତ୍ର ଥରେ ଟିଉସନ୍ ହେଉଥିଲା । ପୁଣି ଜମା ଘଣ୍ଟାଟିଏ ପାଇଁ । କିନ୍ତୁ ତା ନିଜ କମେଇର ଶତକଡ଼ା ୭୫ ଭାଗ (ଏକ ଡଲାର୍ ପକେଟ୍ ଖର୍ଚ୍ଚରୁ ୭୫ ସେଣ୍ଟ୍ ) ଫିସ୍ ଆକାରରେ ମୋତେ ଦେଉଥିଲା ସେ । ତା' ଆଗରୁ କୌଣସି ଲୋକ କିମ୍ବା ଅନୁଷ୍ଠାନ ନିଜ ମୋଟ୍ ଆୟର ଚାରିଭାଗରୁ ତିନିଭାଗ ମୋତେ ପାରିଶ୍ରମିକ ଦେଇ ନ ଥିଲେ । ପୁଣି ସପ୍ତାହରେ ମାତ୍ର ଘଣ୍ଟାଏ ପରିଶ୍ରମ ପାଇଁ । କହିଲେ, ଏହା କ'ଣ କମ୍ ହୋଇଗଲା ?

"ତେବେ ତା ଅର୍ଜନରୁ ଏତେ ବଡ଼ ଭାଗ ମୁଁ ମାରିନେଉଛି । ପୁଣି ତା ଗହଣରେ ରହି ଅପାର ଆନନ୍ଦ ପାଉଛି । ତେଣୁ କେଉଁ ଦିଗରୁ ମୁଁ କ୍ଷତି ସହିଲି କହିଲ ?

" ଛାଡ଼ ସେ କଥା, ତାକୁ  ଗଣିତ ପଢ଼ିବା ନିମନ୍ତେ ମୋ ପାଖକୁ ନିୟମିତ ପଠାଉଥିବ । ସେ ଯେ ମୋ ଉପରେ ଏତେ ବିଶ୍ୱାସ ରଖିଛି, ପୁଣି ମୁଁ ଯେ ତାକୁ ଭଲ ଭାବରେ ଗଣିତ ପଢ଼ାଇପାରିବି  ବା ପାରୁଛି, ଏହା ଜାଣି ମୋତେ ଖୁବ୍ ଖୁସି ଲାଗୁଛି । ମୁଁ ଯେ ଛୋଟପିଲାଙ୍କୁ ବି ଗଣିତ ପଢେଇପାରେ, ସେ ହିଁ ତାହା ପ୍ରମାଣ କରିଦେଲା । ତେଣୁ ଆମର ଯୋଡ଼ି ଭଲ କାମ ଦେବ । "

ଏହା ଶୁଣି ଝିଅଟିର ବାପା ମନ ଆନନ୍ଦରେ ଘରକୁ ଫେରିଗଲେ ।

ଏହିପରି ମନୁଆ ଥିଲେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲ୍‌ବର୍ଟ୍  ଆଇନ୍‌ଷ୍ଟାଇନ୍ ।



# ଆଇନ୍‌ଷ୍ଟାଇନ୍‌ଙ୍କ ଘରୋଇ କଥା



ପ୍ରଥମ କେତେବର୍ଷ ତାଙ୍କ ବିନା ବଞ୍ଚି ହେଉ ନ ଥିଲା । ତା ପରେ ତାଙ୍କ ଉପସ୍ଥିତିରେ ବଞ୍ଚିବା ହୋଇଉଠିଲା ଦୁର୍ବିସହ । ତେଣୁ ତାଙ୍କୁ ଛାଡ଼ପତ୍ର ଦେବାପାଇଁ ସେ ବ୍ୟାକୁଳ ହୋଇ ଉଠିଲେ । ଏପରିକି ସେ ଯଦି ନୋବେଲ୍ ପୁରସ୍କାର ପାଆନ୍ତି, ତେବେ ପୁରସ୍କାର ଆକାରରେ ପ୍ରାପ୍ତ ସମସ୍ତ ଅର୍ଥ ତାଙ୍କୁ ସମର୍ପି ଦେଇ ପ୍ରତିବଦଳରେ ଛାଡ଼ପତ୍ର କିଣି ନେବାକୁ ସେ ପ୍ରସ୍ତୁତ ଥିଲେ ।

ଏହାକୁ ଆପଣ ହୁଏତ ଆଇନ୍‌ଷ୍ଟାଇନ୍‌ଙ୍କର 'ବ୍ୟକ୍ତିଗତ ଆପେକ୍ଷିକତା' ବୋଲି କହିପାରିନ୍ତି । କିନ୍ତୁ ନିଜର ପ୍ରଥମ ସ୍ତ୍ରୀ ମିଲେଭା ମାରିକ୍‌ଙ୍କ ନିକଟକୁ ଆଇନ୍‌ଷ୍ଟାଇନ୍ ଲେଖିଥିବା ପତ୍ରାବଳୀରୁ ତାଙ୍କର ଅନୁରାଗ–ବିରାଗ ସଂପର୍କରେ ବେଶ୍ କିଛି ସୂଚନା ମିଳିଛି । ପତ୍ର ଗୁଡ଼ିକରେ ସନ୍ନିବେଶିତ ବିଷୟବସ୍ତୁକୁ ତର୍ଜମା କରି କେହି କେହି ତାକୁ ଆଇନ୍‌ଷ୍ଟାଇନ୍‌ଙ୍କ ଚରିତ୍ରର ଅପ୍ରକଟିତ କୁଲକ୍ଷଣ ବୋଲି କହୁଛନ୍ତି ତ ଅନ୍ୟ କେହି କେହି ତାକୁ ଅପେକ୍ଷାକୃତ

ଅସ୍ୱସ୍ତିକର ଘଟଣା ବୋଲି ଅଭିହିତ କରିଛନ୍ତି । ବିଶ୍ୱର ଜଣେ ମହାନ୍ ଚିନ୍ତକର ମର୍ଯ୍ୟାଦା ପାଉଥିବା ଆଇନ୍‌ଷ୍ଟାଇନ୍‌ଙ୍କର ଯେ ଆମ ସାଧାରଣ ଲୋକଙ୍କ ଭଳି ସମସ୍ୟାମାନ ରହିଥିଲା, ତାହା ବାସ୍ତବିକ ବିସ୍ମୟକର । ତାଙ୍କଠାରେ ରକ୍ଷଣଶୀଳତାର ଗଭୀରତା ଏବଂ ପୁରୁଷ– ପ୍ରଭୁତ୍ୱର ଏକ ପ୍ରତିଫଳନ ରହିଛି ଉକ୍ତ ପତ୍ର ଗୁଡ଼ିକରେ ।

ଆଇନ୍‌ଷ୍ଟାଇନ୍‌ଙ୍କୁ ଯେତେବେଳେ ମାତ୍ର ୧୭ ବର୍ଷ ବୟସ, ସେତିକିବେଳେ ତାଙ୍କର ସାକ୍ଷାତ ଘଟେ ମିଲେଭା ମାରିକ୍‌ଙ୍କ ସହ । ୧୮୯୬ ମସିହାରେ ଉଭୟଥିଲେ ଜୁରିଚ୍ ପଲିଟେକ୍‌ନିକ୍ ଇନ୍‌ଷ୍ଟିଚିଉଟ୍‌ର ଛାତ୍ର । ପ୍ରଥମ ଦେଖାରେ ଉଭୟଙ୍କ ଭିତରେ ଘନିଷ୍ଠତା ଗଢ଼ି ଉଠିଲା । ସର୍ବିଆ ବାସୀ ମାରିକ୍ ଥିଲେ ଆଇନ୍‌ଷ୍ଟାଇନ୍‌ଙ୍କ ଠାରୁ ପାଞ୍ଚବର୍ଷ ବଡ଼ ।

ପ୍ରଥମ କେତୋଟି ପତ୍ରରେ ଆଇନ୍‌ଷ୍ଟାଇନ୍ ତାଙ୍କୁ ସୋହାଗରେ ' ପୁଷି ' ବୋଲି ସମ୍ବୋଧନ କରିଥିଲେ । ସେ ଥରେ ଲେଖିଥିଲେ '' ତୁମେ ହିଁ ମୋର ଚିନ୍ତାକୁ ଆବୋରି ବସିଛ । ତମକୁ ଛାଡ଼ି ମୁଁ ଏହି ଜଘନ୍ୟ ମଣିଷ ପଲଙ୍କ ଭିତରେ ମୁହୂର୍ତ୍ତଟିଏ ବି ଶାନ୍ତିରେ ରହିପାରୁନି । ''

୧୯୦୧ ମସିହା ବେଳକୁ ତାଙ୍କର ଝିଅଟିଏ ଜନ୍ମ ହୋଇସାରିଥିଲା । ତଥାପି ଉଭୟ ଥିଲେ ଅବିବାହିତ । ସେହି ଝିଅଟିର ଅବସ୍ଥା କ'ଣ ହେଲା ତାହା ବିଶେଷ ଜଣା ନାହିଁ । କେହି କେହି କହନ୍ତି ଯେ ମାରିକ୍ ତାକୁ ପୋଷ୍ୟକନ୍ୟା ହିସାବରେ ଅନ୍ୟ ହାତରେ ସମର୍ପି ଦେଇଥିଲେ । ୧୯୩୦ ସାଲ ପାଖାପାଖି ସମୟରେ ଉକ୍ତ କନ୍ୟାଟିର ସନ୍ଧାନ ନେବାପାଇଁ ଆଇନ୍‌ଷ୍ଟାଇନ୍ ଘରୋଇ ଗୋଇନ୍ଦା ନିଯୁକ୍ତ କରି ପ୍ରୟାସ ଚଳେଇଥିଲେ ମଧ୍ୟ କନ୍ୟାସହ ତାଙ୍କର ସାକ୍ଷାତ ସମ୍ଭବ ହୋଇ ପାରିଲାନି ।

ଆଇନ୍‌ଷ୍ଟାଇନ୍ ଏବଂ ମାରିକ୍ ବିବାହ ବନ୍ଧନରେ ଆବଦ୍ଧ ହେଲେ ୧୯୦୩ ମସିହାରେ । କିନ୍ତୁ ୧୯୧୩ ମସିହାବେଳକୁ ଦୁହିଁଙ୍କର ସଂପର୍କରେ ଭଟ୍ଟା ପଡ଼ିଆସିଥିଲା । ସେତେବେଳକୁ ସେମାନଙ୍କ ଔରସରୁ ଜନ୍ମ ନେଇ ସାରିଥାନ୍ତି ଦୁଇଟି ପୁତ୍ର ସନ୍ତାନ । ସେହି ସମୟରେ ଆଇନ୍‌ଷ୍ଟାଇନ୍ ତାଙ୍କ ଝିଆରୀ ଏଲ୍‌ସାଙ୍କ ପାଖକୁ ଲେଖିଥିଲେ, '' ମୁଁ ମାରିକ୍‌ଙ୍କୁ ଏପରି ଏକ କର୍ମଚାରୀରୂପେ ଧରି ନେଇଛି, ଯାହାଙ୍କୁ ବରଖାସ୍ତ କରିବା ମୋ' ପକ୍ଷେ ସମ୍ଭବ ହୋଇପାରୁନି । ମୋର ଶୋଇବାଘର ମୁଁ ଏବେ ଅଲଗା କରିଦେଇଛି । ମାରିକ୍‌ଙ୍କ ସାଙ୍ଗରେ ଏକାଠି ବସିବାକୁ ବି ସାହସ କରିପାରୁନି । କହିବାକୁ ଗଲେ ତାଙ୍କର ଛାଇ ପଡ଼ିଲେବି ମୋର ନାହି ଡେଉଁଚି । ତଥାପି ଆମର ଏହି ତଥାକଥିତ ଏକାଠି ରହିବାଟକୁ ଚଳେଇ ନେଉଛି କୌଣସି ପ୍ରକାରେ । ''

ପରେ ଆଇନ୍‌ଷ୍ଟାଇନ୍ ଏଲ୍‌ସାଙ୍କୁ ଦ୍ୱିତୀୟ ପତ୍ନୀ ରୂପେ ଗ୍ରହଣ କରିଥିଲେ ।

୧୯୧୪ ମସିହା ପାଖାପାଖି ମାରିକ୍‌ଙ୍କ ଉଦ୍ଦେଶ୍ୟରେ ଆଇନ୍‌ଷ୍ଟାଇନ୍ ଜାରି କରିଥିଲେ ଏକ ନିୟମାବଳୀ । ନିୟମାବଳୀରେ ଉଲ୍ଲେଖ ଥିଲା, ''ତୁମେ ଯଦି ମୋ ସହ ଏକତ୍ର ବସବାସ କରିବାକୁ ଚାହଁ, ତେବେ ତୁମକୁ ନିମ୍ନଲିଖିତ ନିର୍ଦ୍ଦେଶଗୁଡ଼ିକୁ ମାନି ଚଳିବାକୁ ପଡ଼ିବ ।

୧ । ତୁମେ ତଦାରଖ କରିବ ଯେ

(କ) ମୋର ପୋଷାକପତ୍ର ସଜାସଜି ହୋଇ ଯଥାସ୍ଥାନରେ ରହିଛି ।

(ଖ) ମୋ କୋଠରିରେ ମୋତେ ପ୍ରତିଦିନ ତିନିଥର ଭୋଜନ ପରିବେଷଣ କରାଯାଉଛି ।

(ଗ) ମୋ ଶୋଇବାଘର ଏବଂ ପଢା ଘର ନିୟମିତ ସଫା ସୁତୁରା ହେଉଛି ଏବଂ ଆସବାବ ପତ୍ର ତଥା ବହିପତ୍ର ନିର୍ଦ୍ଦିଷ୍ଟ ଜାଗାରେ ରହିଛି ।

(ଘ) ମୋ ବ୍ୟତୀତ ମୋ ପଢ଼ା ଟେବୁଲ୍‌କୁ ଅନ୍ୟ କେହି ସ୍ପର୍ଶ ମଧ୍ୟ କରିନାହିଁ ।

୨ । ମୋ ସହତ ତୁମେ କୌଣସି ଅନ୍ତରଙ୍ଗ ସଂପର୍କ ରକ୍ଷା କରିପାରିବନାହିଁ । କେବଳ ସାମାଜିକତା ରକ୍ଷା କରିବା ପାଇଁ ତୁମେ ମୋ ସହିତ ବନ୍ଧୁମିଳନକୁ ଯାଇପାର, ତାହା ପୁଣି ନିହାତି ଆବଶ୍ୟକ ପଡ଼ିଲେ । ହଁ, ଆଉ ଗୋଟିଏ କଥା କହି ରଖୁଛି ।

(କ) ଘରେ ମୁଁ ତୁମ ନିକଟରେ ବସେ ବୋଲି ତୁମେ କେବେ ଅନୁରୋଧ କରିବନି ।

(ଖ) ତୁମ ସାଙ୍ଗରେ ବୁଲିଯିବା ପାଇଁ କି ସହର ବାହାରକୁ ଯିବାପାଇଁ ମଧ ଅନୁରୋଧ ଜଣାଇବନାହିଁ ।

୩ । ମୋ ସହିତ ସମ୍ବନ୍ଧ ରଖିବା ବିଷୟରେ ତୁମକୁ ସ୍ପଷ୍ଟ ଏବଂ ଦୃଢ଼ ପ୍ରତିଶ୍ରୁତି ଦେବାକୁ ପଡ଼ିବ ଯେ ।

(କ) ତୁମେ ମୋ ଠାରୁ କୌଣସି ସ୍ନେହଶ୍ରଦ୍ଧା ପ୍ରତ୍ୟାଶା କରିବ ନାହିଁ କି ଏଥିପାଇଁ ମୋତେ ତିରସ୍କାର କରି ମୋ ନାଆଁରେ କଳଙ୍କ ରଟିବନି ।

(ଖ) ମୁଁ ତୁମକୁ କିଛି ପଚାରିଲେ ତୁମେ ଆଦୌ କାଳ ବିଳମ୍ବ ନ କରି ତୁରନ୍ତ ତାର ପ୍ରତ୍ୟୁତ୍ତର ଦେବ ।

(ଗ) ମୁଁ ତୁମକୁ ବାହାରି ଯିବା ପାଇଁ ଆଦେଶ ଦେଲେ ତୁମେ ସାଙ୍ଗେ ସାଙ୍ଗେ ମୋ ଶୋଇବା ଘର କିମ୍ବା ପଢ଼ାଘର ପରିତ୍ୟାଗ କରି ଚାଲିଯିବ । ଏଥିପାଇଁ ତୁମେ କୌଣସି ଅଭିଯୋଗ ବାଢି ପାରିବନି କି ପ୍ରତିବାଦ ଜଣେଇ ପାରିବନି ।

୪ । ତୁମ କଥାବାର୍ତ୍ତାରେ କିମ୍ବା ତୁମ ଆଚରଣରେ ଆମ ସନ୍ତାନମାନଙ୍କ ସମ୍ମୁଖରେ ମୋତେ କେବେ ନ୍ୟୂନ  ନ କରିବା ନିମନ୍ତେ ତୁମକୁ ପ୍ରତିଶ୍ରୁତିବଦ୍ଧ ହେବାକୁ ପଡ଼ିବ ।

ଉପରୋକ୍ତ ଅନୁଶାସନ ଜାରି କରିବାରେ ଆଇନ୍‌ଷ୍ଟାଇନ୍ ବେଶ୍ ସତର୍କତା ଅବଲମ୍ବନ କରିଥିବାର ଜଣାପଡ଼େ । ଉକ୍ତ ନିର୍ଦ୍ଦେଶନାମା ଜାରି କରିବା ସହ୍ୱେ ଛାଡ଼ପତ୍ରକୁ ଯଥାଶୀଘ୍ର କାର୍ଯ୍ୟକାରୀ କରେଇନେବା ନିମନ୍ତେ ସେ ତତ୍ପର ହୋଇ ଉଠିଥିଲେ । ସେ ସବୁବେଳେ କହୁଥିଲେ, ‘‘କେଉଁଟା ସରିବା ନିମନ୍ତେ ନେବ ବେଶୀ ସମୟ ? ପ୍ରଥମ ବିଶ୍ୱଯୁଦ୍ଧ ନା ଆମର ଛାଡ଼ପତ୍ର ମାମଲା ? ’’ ଏପରିକି ଛାଡ଼ପତ୍ର ପାଇଁ ରାଜି ହୋଇଗଲେ ସେ ନୋବେଲ୍ ପୁରସ୍କାରରୁ ଲବ୍‌ଧ ଅର୍ଥକୁ ମାରିକଙ୍କୁ ଅର୍ପଣ କରିବାର ପ୍ରସ୍ତାବ ମଧ୍ୟ ଦେଇଥିଲେ । ସେ ତାଙ୍କ ପ୍ରତିଶ୍ରୁତି ରକ୍ଷା କରିଥିଲେ ମଧ୍ୟ । ୧୯୨୨ ମସିହାରେ ତାଙ୍କୁ ନୋବେଲ୍ ପୁରସ୍କାର ମିଳିଲା । ଏହାର ତିନିବର୍ଷ ପୂର୍ବରୁ ଉଭୟ ଛାଡ଼ପତ୍ର ନେଇସାରିଥିଲେ । କିନ୍ତୁ କଥା ରଖି ଆଇନ୍‌ଷ୍ଟାଇନ୍ ପୁରସ୍କାରରୁ ପ୍ରାପ୍ତ ଅର୍ଥକୁ ଅର୍ପଣ କରିଥିଲେ ମାରିକ୍‌ଙ୍କୁ ।

ଦିନ ଗଡ଼ି ଚାଲିବା ସଙ୍ଗେ ସଙ୍ଗେ  ଆଇନ୍‌ଷ୍ଟାଇନ୍ ଏବଂ ମାରିକ୍‌ଙ୍କ ମଧ୍ୟରେ ପୁଣି ସ୍ଥାପିତ ହୋଇଥିଲା ବନ୍ଧୁତ୍ୱପୂର୍ଣ୍ଣ ସଂପର୍କ । ଉଭୟ ପରସ୍ପରକୁ ଚିଠି ପତ୍ର ଲେଖିବା ଆରମ୍ଭ କରିଦେଲେ । ପ୍ରତ୍ୟେକ ଅନ୍ୟର ସୁଖଦୁଃଖରେ  ଭାଗୀଦାର ହେଉଥିବାର ସୂଚନା ମଧ୍ୟ ମିଳିଲା । କିନ୍ତୁ ନାଜି ଅତ୍ୟାଚାରରୁ ରକ୍ଷା ପାଇବା ପାଇଁ ୧୯୩୩ ମସିହାରେ ଆଇନ୍‌ଷ୍ଟାଇନ୍ ଆମେରିକାକୁ ପଳେଇଗଲେ । ଆମେରିକା ଚାଲିଗଲାପରେ ଉଭୟଙ୍କ ମଧ୍ୟରେ ଆଉ ସାକ୍ଷାତ ଘଟି ନ ଥିଲା ।

ତାଙ୍କର ପ୍ରଥମ ପୁତ୍ର ଏଡୁଓ୍ୟାର୍ଡ୍ ମାନସିକ ବିକାରଗ୍ରସ୍ତ ହୋଇ ଏକ ମାନସିକ ରୋଗ ଚିକିତ୍ସାଳୟରେ ଅକାଳରେ ମୃତ୍ୟୁ ବରଣ କଲା । ଦ୍ୱିତୀୟ ପୁତ୍ର ହାନ୍‌ସ୍ ଆଲ୍‌ବର୍ଟ୍ ଆମେରିକା ଚାଲିଯାଇ ସେଠାରେ ମେକାନିକାଲ୍ ଇଞ୍ଜିନିୟରିଂ ଶାଖାରେ ପ୍ରଫେସର୍ ପଦବୀରେ ଅଧିଷ୍ଠିତ ହୋଇପାରିଥିଲା ।

❑❑❑



# ଚେହେରା ପାଇଁ ଖାତର ନାହିଁ

ଥରେ ଆଇନ୍‌ଷ୍ଟାଇନ୍‌ଙ୍କ ପାଖକୁ ବୁଲି ଆସିଥିଲେ ସ୍ୱାମୀ - ସ୍ତ୍ରୀ ଦୁଇଜଣ । ସାଙ୍ଗରେ ଥାଏ ସେମାନଙ୍କର ଏକ ବର୍ଷ ବୟସର ପୁଅ ।

ଆଇନ୍‌ଷ୍ଟାଇନ୍‌ଙ୍କର ବେଶ ପୋଷାକରେ କିଛି ଠିକ୍ ଠିକଣା ନ ଥାଏ । ମୁଣ୍ଡରେ ଗୋଛାଏ ବାଳ । ସେଥିରେ ବି ପାନିଆଁ ନ ବାଜିବାରୁ ବାଳଯାକ ଫୁରୁଫୁରୁ ଉଡୁଥାଏ । କହିବାକୁ ଗଲେ ସେ ଦେଖାଯାଆନ୍ତି ଅତି ଅସୁନ୍ଦର ।

ଛୋଟ ପୁଅଟି ଆଇନ୍‌ଷ୍ଟାଇନ୍‌ଙ୍କ କଦାକାର ଚେହେରା ଦେଖି ଭୟ ପାଇଗଲା । ଡରରେ ମାଆକୁ ଜାବୁଡ଼ି ଧରିଲା ସେ । ରାହା ଧରି କାନ୍ଦିବାରେ ଲାଗିଲା ।

ପୁଅର ଏପରି ବ୍ୟବହାର ଦେଖି ବଡ଼ ଲାଜ ପାଇଗଲେ ସ୍ୱାମୀ-ସ୍ତ୍ରୀ । କିନ୍ତୁ ଆଇନ୍‌ଷ୍ଟାଇନ୍ ଏଥିରେ ଆଦୌ ବିଚଳିତ ହେଲେନି । ବରଂ ଥଟ୍ଟା କରି ସେ ହସି ହସି କହିଲେ, '' ଯାହା ହେଉ, ମୋ' ଜୀବନରେ ପ୍ରଥମ ଥର ପାଇଁ ଜଣେ ଅନ୍ତତଃ ଜଣେଇଦେଲା ସତ କଥା । ମୋ ଚେହେରାକୁ ଦେଖି ତାକୁ ଯେମିତି ଲାଗିଲା । ସେ କଥା ଠିକ୍ ଭାବରେ ପ୍ରକାଶ କରିଦେଲା ସେ । ମୁଁ ଭଲ ଦେଖାଯାଉଥିଲେ ସେ ମୁହଁ ଫଟେଇ ହଠାତ୍ କାନ୍ଦି ଉଠିଥାନ୍ତା କାହିଁକି ? ''

ଏହିପରି ମଜାଳିଆ ଥିଲେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଡକ୍ଟର୍ ଆଲ୍‌ବର୍ଟ ଆଇନ୍‌ଷ୍ଟାଇନ୍ ।

ସୋଭିଏଟ୍ ରୁଷିଆର ରସାୟନ ବିଜ୍ଞାନୀ ମେଣ୍ଡେଲିଭ୍ ମଧ୍ୟ ଥିଲେ ବଡ଼ ଅପରିଷ୍କାର । ନିଜ ଚେହେରା ଏବଂ ପୋଷାକ ପତ୍ରର ଯତ୍ନ ନେବା ତାଙ୍କ ଜାତକରେ ନଥିଲା । ତେଣୁ ତାଙ୍କୁ ଦେଖିବାମାତେ ଶିଶୁମାନେ ଛାନିଆଁରେ ମାଆମାନଙ୍କ ପାଖକୁ ଦୌଡ଼ି ପଳାଉଥିଲେ ।

ବୈଜ୍ଞାନିକ ମେଣ୍ଡେଲିଭ୍ ବର୍ଷକୁ କେବଳ ଥରେ ମାତ୍ର ଖିଅର ହେଉଥିଲେ । ମୁଣ୍ଡର ବାଳ କାଟୁଥିଲେ ସେଇ ଥରକ ପାଇଁ । ତାହାପୁଣି ବସନ୍ତ ଋତୁରେ ।

ଥରେ ତାଙ୍କୁ ସମ୍ରାଟ୍ ୩ୟ ଆଲେକ୍‌ଜାଣ୍ଡାରଙ୍କ ଦରବାରରେ ହାଜର ହେବାକୁ ପଡ଼ିଥିଲା । କାରଣ ସମ୍ରାଟ୍ ତାଙ୍କୁ ପ୍ରଦାନ କରିଥିଲେ ଏକ ପୁରସ୍କାର । ସମ୍ରାଟ୍‌ଙ୍କ ସମେତ ସମସ୍ତେ ଭାବିଥିଲେ ଯେ ମେଣ୍ଡେଲିଭ୍ ଅନ୍ତତଃ ଥରକ ପାଇଁ ନିଜର ପ୍ରତିଜ୍ଞା ଭାଙ୍ଗିବେ । ଖିଅର ହୋଇ ମୁଣ୍ଡଧୋଇ ଯିବେ ସମ୍ରାଟ୍‌ଙ୍କ ଆଗକୁ ।

କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ ମେଣ୍ଡେଲିଭ୍ ବାଳ କାଟିବାର ନାଁ ଧରିଲେନି । ମୁଣ୍ଡରେ ଗୋଛାଏ ବାଳ ରଖି ପୁରସ୍କାର ଗ୍ରହଣ କରିବା ନିମନ୍ତେ ଆସି ସମ୍ରାଟ୍‌ଙ୍କ ସମ୍ମୁଖରେ ଉଭା ହେଲେ ।

ହେଲେ ଏଥିରେ ନିଜକୁ ଅପମାନିତ ବୋଧ କରି ନ ଥିଲେ ସମ୍ରାଟ୍ ଆଲେକ୍‌ଜାଣ୍ଡାର୍ । କାରଣ ସେ ଜାଣିଥିଲେ ଯେ ଅନେକ ବୈଜ୍ଞାନିକ ବଡ଼ ଖିଆଲି । ଯାହା ବୁଝିଥିବେ ସେଇଆ । ମେଣ୍ଡେଲିଭ୍ ସେଥିରୁ ବାଦ୍ ପଡ଼ିଥାଆନ୍ତେ କାହିଁକି ?





# ମେନ୍‌ଲୋ ପାର୍କ ଗାଆଁର ଯାଦୁକର

ରେଳଗାଡ଼ି ଧୀରେ ଧୀରେ ଆସି ଷ୍ଟେସନ୍‌ରେ ଅଟକିଲା । ଗାଡ଼ିରୁ ଓହ୍ଲେଇ ପଡ଼ିଲେ ଦଳେ ଯାତ୍ରୀ । ସେମାନେ ଆସିଥିଲେ ନିୟୁୟର୍କରୁ । ଷ୍ଟେସନ୍ ବାହାରେ ଅପେକ୍ଷା କରିଥିବା ଘୋଡ଼ାଗାଡ଼ିରେ ବସି ଯାତ୍ରାକଲେ ନିକଟରେ ଥିବା ମେନ୍‌ଲୋ ପାର୍କ ଗାଆଁକୁ । ସେହି ଗାଆଁରେ ଥାଏ ଏକ ଗବେଷଣାଗାର । ଗବେଷଣାଗାରରେ ଆୟୋଜନ କରାଯାଇଥାଏ ଏକ ଭୋଜି । ସେଦିନ ରାତି ବାରଟାରେ ବିଦୟନେବ ୧୮୭୯ ମସିହା । ଅତିଥିମାନେ ଖିଆପିଆ ଓ ନାଚଗୀତ ମାଧ୍ୟମରେ ସ୍ୱାଗତ କରିବେ ନବ ବର୍ଷ ୧୮୮୦ ମସିହାକୁ ।

କିଛି ବାଟ ଗଲା ପରେ ବରଫଢ଼ଙ୍କା ରାସ୍ତାଟା ଆଲୁଅରେ ଝଲ୍‌ମଲ କରୁଥିବାର ଦେଖିବାକୁ ପାଇଲେ ସେମାନେ । ସେମାନଙ୍କ ମୁଣ୍ଡ ଉପର ଦେଇ ଟଣାଯାଇଥିବା ଏକ ତାରରୁ ଶହ ଶହ ଲିଚୁ ବିଜୁଳିବତି ଓହଳିଥାଏ । ବିଜୁଳି ଆଲୁଅରେ ସାରା ରାସ୍ତାଟା ଝଲକୁଥାଏ ।

ଗବେଷଣାଗାରର ପ୍ରବେଶଦ୍ୱାରରେ ଅତିଥିମାନଙ୍କୁ ସ୍ୱାଗତ କଲେ ସେମାନଙ୍କର ବନ୍ଧୁ ଥୋମାସ୍ ଆଲ୍‌ଭା ଏଡ଼ିସନ୍ । ଏଡ଼ିସନ୍‌ଙ୍କ ନିମନ୍ତ୍ରଣ ପାଇ ସେମାନେ ଆସିଥା'ନ୍ତି ।

ଏଡିସନ୍ ପଚାରିଲେ, ''କଅଣ ମନକୁ ପାଇଲା ? '' ''ହଁ, ହଁ, ନିଶ୍ଚୟ । ଏକଥା ପଚାରିବାକୁ ଅଛି ? ହେଲେ ସେଗୁଡ଼ାକ କଅଣ ?'' –ଅତିଥିମାନେ ଆଶ୍ଚର୍ଯ୍ୟ ହୋଇ ଜାଣିବାକୁ ଚାହିଁଲେ ।

...''ସେଗୁଡ଼ା ପରା ବିଜୁଳିବତି । ତୁମମାନଙ୍କୁ ଯେ ତାହା ମୁଗଧ୍ କରିଛି , ମୁଁ ସେଥିପାଇଁ ବହୁତ ଆନନ୍ଦିତ '' — ଉତ୍ତର ଦେଲେ ଏଡ଼ିସନ୍ ।

ତାହା ଆଗରୁ କେହି ବିଜୁଳିବତି ଦେଖି ନ ଥିଲେ ।

ବିଜୁଳିବତି ତିଆରି କରିବା ନିମନ୍ତେ ଏଡିସନ୍ ମାସ ମାସ ଧରି ଗବେଷଣା କରୁଥିଲେ । କାଚ୍ ବଲ୍‌ବ ଭିତରେ କେଉଁ ଫିଲାମେଣ୍ଟ ଲଗାଇଲେ ତାହା ବେଶୀ ସମୟ ପର୍ଯ୍ୟନ୍ତ ଜଳିପାରିବ, ଏହା ହିଁ ଥିଲା ଚିନ୍ତାର ବିଷୟ । ସେ ଅଙ୍ଗାରବୋଳା କଳା କାଗଜକୁ ଫିମାମେଣ୍ଟ ଭାବରେ ବ୍ୟବହାର କଲେ । କିନ୍ତୁ ଭଲ ଆଲୁଅ ଦେଲେ ବି ମାତ୍ର କେଇ ସେକେଣ୍ଡ ଭିତରେ ତାହା ଜଳିଗଲା । ପ୍ଲାଟିନମ୍ ବି ଚଳିଲା ନାହିଁ । ପ୍ଲାଟିନମ୍ କାମ ଦେବନି ବୋଲି ଜାଣିବା ନିମନ୍ତେ ଏଡିସନ୍ ଖର୍ଚ୍ଚ କରିଥିଲେ ପାଖାପାଖି ପଚାଶ ହଜାର ଡଲାର୍ । ବଡ଼ ମନ ଦୁଃଖରେ ଥାଆନ୍ତି ସେ । ସବୁବେଳେ କିଛି ନା କିଛି ଭାବୁଥାଆନ୍ତି ।

ଥରେ ତାଙ୍କର ସ୍ତ୍ରୀ ଛୁଞ୍ଚିସୂତା ଧରି ସିଲେଇରେ ବ୍ୟସ୍ତ । ପାଖରେ ବସିଥାଆନ୍ତି ଏଡିସନ୍ । ହଠାତ୍ ସେ କଅଣ ଭାବିଲେ କେଜାଣି, ସ୍ତ୍ରୀଙ୍କ ପାଖରୁ ସୂତା ଗୁଳିଟି ମାଗି ସୂତାଖଣ୍ଡେ ଛିଣ୍ଡେଇ ନେଲେ । ସୂତାରେ ବୋଳିଦେଲେ ଡିବି କଳା । ବାୟୁଶୂନ୍ୟ ଇଲେକ୍ଟ୍ରିକ୍ ବଲ୍‌ବ ଭିତରେ କଳା ସୂତା ଖଣ୍ଡକ ଯୋଡି ସୁଇଚ୍ ଟିପିଦେଲେ । ସେହି ବଲ୍‌ବଟି ଜମା ନ ଲିଭି ୪୦ ଘଣ୍ଟା ଧରି ଜଳିପାରିଲା । ଏଡିସନ୍ ଭାବିଲେ ଯେ ଏହା ଯଦି କ୍ରମାଗତ ଭାବରେ ୪୦ ଘଣ୍ଟା ଧରି ଜଳିପାରୁଛି, ତେବେ ୪୦୦ ଘଣ୍ଟା, ୪୦୦୦ ଘଣ୍ଟା କିମ୍ବା ୪୦,୦୦୦ ଘଣ୍ଟା ଧରି ଜଳିବାକୁ ଏହା ସକ୍ଷମ ହୋଇପାରିବ । ଯେଉଁଦିନ ବଲ୍‌ବଟି ୪୦ ଘଣ୍ଟା ଧରି ଜଳିଥିଲା, ସେଦିନ ଥିଲା ୧୮୭୯ ମସିହା ଅକ୍ଟୋବର ମାସ ୨୧ ତାରିଖ । ଏହି ଦିନଟି ଇଲେକ୍ଟ୍ରିକ୍ ବଲ୍‌ବର ପ୍ରଥମ ଜନ୍ମତିଥି ।

ପରେ ସେ ବାଉଁଶ କାଠିକୁ ବି ଫିଲାମେଣ୍ଟ ରୂପେ ବ୍ୟବହାର କରିଥିଲେ । ଉପଯୋଗୀ ବାଉଁଶ ବାଛିବା ପାଇଁ ସେ ବାର ଶହ ବିଭିନ୍ନ ଜାତିର ବାଉଁଶ ଉପରେ ପରୀକ୍ଷା ଚଳାଇଥିଲେ ।

ପରେ ପରେ ଇଲେକ୍ଟ୍ରିକ୍ ବଲ୍‌ବର ଆହୁରି ଉନ୍ନତି ସାଧନ କଲେ ସେ । ଯେତେବେଳେ ତାଙ୍କ ମନପସନ୍ଦ ବଲ୍‌ବ ତିଆରି ହୋଇଗଲା, ତାର ପରୀକ୍ଷା କରିବା ଦରକାର ପଡ଼ିଲା । ପ୍ରଥମ ବଲ୍‌ବଟିକୁ ସେ ତାଙ୍କ ସହକାରୀଙ୍କୁ ବଢ଼େଇଦେଇ କହିଲେ, ''ଜିମ୍ମି, ବଲ୍‌ବଟିକୁ ଉପରେ ମହଲାକୁ ନେଇ ଆ । ସେଇଠି ତାକୁ ପରୀକ୍ଷା କରିବା । '' ଜିମ୍ମି ବଲ୍‌ବଟିକୁ ଧରୁ ଧରୁ ତାଙ୍କ ହାତରୁ ବଲ୍‌ବଟି ଖସିଗଲା ଓ ଚଟାଣରେ ପଡ଼ି ଖଣ୍ଡ ଖଣ୍ଡ ହୋଇଗଲା । ଡରରେ ଶେତା ପଡ଼ିଗଲା ସେ । ଲଜ୍ଜା ଆଉ ଦୁଃଖରେ ସେ ଏଡିସନ୍‌ଙ୍କୁ ଚାହିଁପାରିଲାନି, ହଠାତ୍ କାନ୍ଦିପକେଇଲା । ହାତଯୋଡ଼ି ଏଡିସନ୍‌ଙ୍କୁ କ୍ଷମା ମାଗିଲା । ତାଙ୍କ ଗାଳି ଶୁଣିବା ପାଇଁ ଠିଆହୋଇ ରହିଲା ବିଚରା ।

ଏଡ଼ିସନ୍ ମୁହୂର୍ତ୍ତକ ପାଇଁ ନୀରବ ହୋଇଗଲେ । ତା'ପରେ ଜିମ୍ମିର ପିଠି ଥାପୁଡ଼େଇ କହିଲେ, ''କିଛି ଚିନ୍ତା ନାହିଁ । ଆଉ ଡେରି କରନା । ଚାଲ୍, ପୁଣି କାମରେ ଲାଗିଯିବା । ''

କାମ ଆରମ୍ଭ ହୋଇଗଲା । ଆଉ ଗୋଟିଏ ବଲ୍‌ବ ତିଆରିକରିବା ନିମନ୍ତେ ପୁଣି କିଛିଦିନ ଲାଗିଗଲା । ବଲ୍‌ବ ତିଆରି ସରିଲା ପରେ ଏଡିସନ୍ ଜିମ୍ମିକୁ ଡକେଇ ପଠେଇଲେ । କହିଲେ, '' ଜିମ୍ମି, ବଲ୍‌ବଟି ଧରି ଉପରମହଲାକୁ ଚାଲ୍ । ସେଇଠି ତାକୁ ପରୀକ୍ଷା କରିବା '' ଜିମ୍ମି ଛାନିଆରେ କଳାକାଠ ପଡ଼ିଗଲା । ବଲ୍‌ବଟିକୁ ଧରିବା ପାଇଁ ତା'ର ହାତ ଥରୁଥାଏ । ତଥାପି ସେହି ଥରିଲା ହାତରେ ସେ ବଲ୍‌ବଟି ନେଲା । ଜାବୁଡ଼ି ଧରିଲା ତାକୁ ।

ଏଡିସନ୍ ପୁଣି କହିଲେ, '' ଏଥରକ ଟିକିଏ ହୁସିଆରରେ ଧର୍ । ଦେଖିବା ବଲ୍‌ବଟା ଜଳୁଛି କି ନା ! ''

ଏହି ବଲ୍‌ବଟାର ଭାଗ୍ୟ ଭଲ । ବଲ୍‌ବଟା ଭଲଭାବରେ ଓ ବହୁ ସମୟଧରି ଜଳିଲା ।

ଏଡିସନ୍‌ଙ୍କ ଭଳି ନିଷ୍ଠାପର ବୈଜ୍ଞାନିକ ମାନେ ହିଁ କେବଳ ଏପରି କ୍ଷମା ଦେଇପାରନ୍ତି ।

ପ୍ରାୟ ତେର ଶହଟି ବିଭିନ୍ନ ପ୍ରକାରର ଉଦ୍‌ଭାବନ ପାଇଁ ଏଡିସନ୍ ଦାୟୀ । ଲୋକେ ତାଙ୍କୁ ଏକ 'ବିରାଟ ପ୍ରତିଭା' ବୋଲି କହିବାରୁ ସେ ତା'ର ପ୍ରତିବାଦ କରିଥିଲେ । ସେ ନିଜର ସ୍ୱଭାବସୁଲଭ ନମ୍ରତା ପ୍ରକାଶ କରି କହିଥିଲେ, ''ମୋତେ ଆପଣମାନେ 'ମେନ୍‌ଲୋ ପାର୍କ ଗାଆଁର ଯାଦୁକର' ବୋଲି କହିଲେ ମୁଁ ବରଂ ଆପତ୍ତି କରିବି ନାହିଁ । କିନ୍ତୁ ମୁଁ ବିଶେଷ ବିଜ୍ଞ ନୁହେଁ । ମୋ' କୃତିତ୍ୱ ମୂଳରେ ଶତକଡ଼ା ମାତ୍ର ଦୁଇଭାଗ ଐଶ୍ୱରିକ ପ୍ରେରଣା ଥାଇପାରେ, ହେଲେ ଶତକଡ଼ା ୯୮ ଭାଗ ହେଉଛି ମୋ'ର ହାଡ଼ଭଙ୍ଗା, ଝାଳବୁହା ପରିଶ୍ରମ ।''

ଥୋମାସ୍ ଆଲ୍‌ଭା ଏଡିସନ୍ ୧୮୪୭ ମସିହା, ଫେବୃଆରୀ ୧୧ ତାରିଖରେ ଜନ୍ମଗ୍ରହଣ କରି ୧୯୩୧ ମସିହା, ଅକ୍ଟୋବର ୧୮ ତାରିଖରେ ମୃତ୍ୟୁବରଣ କରିଥିଲେ ।





# ଆଲୋ, ରସାୟନ ବିଜ୍ଞାନ !

ପ୍ରଫୁଲ୍ଲ ଚନ୍ଦ୍ର ରାୟ ଥିଲେ ଜଣେ ପ୍ରଖ୍ୟାତ ରସାୟନବିତ୍ । ହିନ୍ଦୁ ଦର୍ଶନ, ଖ୍ରୀଷ୍ଟଧର୍ମ ଏବଂ ଆଧୁନିକ ବିଜ୍ଞାନ ମଧ୍ୟରେ ଏକ ସମନ୍ୱୟ ସ୍ଥାପନ କରିବାରେ ସେ ଥିଲେ ଅଗ୍ରଣୀ । ' ହିନ୍ଦୁ ରସାୟନ ବିଜ୍ଞାନର ଇତିହାସ ' ( The History of Hindu Chemistry) ଶୀର୍ଷକ ପୁସ୍ତକ ତାଙ୍କର ଏକ ଅନବଦ୍ୟ କୃତି । ଏହା ୧୯୦୨ ମସିହାରେ ପ୍ରକାଶିତ ହୋଇଥିଲା ।

କଲିକତାସ୍ଥିତ ବିଖ୍ୟାତ ପ୍ରେସିଡେନ୍‌ସି କଲେଜ୍‌ରେ ପଢ଼ିବାର ପ୍ରବଳ ଆଗ୍ରହ ଥିବା ସତ୍ତ୍ୱେ ସେ ସେଠାରେ ଅଧ୍ୟୟନ କରିବାର ସୁଯୋଗ ପାଇ ନ ଥିଲେ । କିନ୍ତୁ ଇଂଲଣ୍ଡ ଯାଇ ଏଡିନ୍‌ବରାରେ ପଢ଼ାଶେଷକରି ପ୍ରେସିଡେନ୍‌ସି କଲେଜ୍‌ରେ ଜଣେ ଅଧ୍ୟାପକ ରୂପେ ଯୋଗ ଦେବାର ସୌଭାଗ୍ୟ ମିଳିଥିଲା ତାଙ୍କୁ ।

ଏଡିନ୍‌ବରାରେ ସ୍ନାତକ ଶିକ୍ଷା ଲାଭ କରିବା ବେଳର କଥା । 'ସିପାହୀ ବିଦ୍ରୋହର ପୂର୍ବବର୍ତ୍ତୀ ଏବଂ ପରବର୍ତ୍ତୀ ଭାରତ' — ଏହି ବିଷୟବସ୍ତୁ ଉପରେ ଏକ ପ୍ରବନ୍ଧ ଲେଖିବା ପାଇଁ ଲର୍ଡ୍ ରେକ୍‌ଟର୍ ଛାତ୍ରମାନଙ୍କୁ ଆହ୍ୱାନ ଜଣାଇଥିଲେ । ସର୍ବୋତ୍କୃଷ୍ଟ ପ୍ରବନ୍ଧକୁ ପୁରସ୍କାର ଦେବାର ବ୍ୟବସ୍ଥା ଥିଲା । ବିଭିନ୍ନ ଉତ୍ସରୁ ତଥ୍ୟ ସଂଗ୍ରହ କରି ପ୍ରଫୁଲ୍ଲଚନ୍ଦ୍ର ପ୍ରବନ୍ଧ ରଚନା କଲେ । ପ୍ରତିଯୋଗିତା ପାଇଁ ଦାଖଲ କଲେ ତାକୁ । କିନ୍ତୁ ପୁରସ୍କାର ମାରିନେଲେ ଜଣେ ଇଂରେଜ ଛାତ୍ର । ହେଲେ ତାଙ୍କ ପ୍ରବନ୍ଧଟି ଗୋଟିଏ ସମ୍ବାଦପତ୍ରର ଦୃଷ୍ଟିରେ ପଡ଼ିଲା । ଇଂଲଣ୍ଡର ଉକ୍ତ ସମ୍ବାଦପତ୍ର ପ୍ରବନ୍ଧଟିକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ମନ୍ତବ୍ୟ ଦେଇଥିଲେ, ''ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ପ୍ରବନ୍ଧରେ ଯେତେ ତଥ୍ୟ ଉଲ୍ଲେଖ ରହିଛି, ତାହା ଅନ୍ୟ କୌଣସି ଉତ୍ସରୁ ମିଳି ପାରିବ ନାହିଁ । ''

ସାର୍ ପି.ସି. ରାୟ ( ଏହି ନାଆଁରେ ସେ ବେଶୀ ଜଣାଶୁଣା ) ନିମନ୍ତ୍ରିତ ହୋଇ ଥରେ ଯାଇଥାନ୍ତି ଲାହୋର୍ ( ଲାହୋର୍ ଏବେ ପାକିସ୍ଥାନରେ ) । ସେଠାରେ ସେ ' ହିନ୍ଦୁ

ରସାୟନ ବିଜ୍ଞାନ' ବିଷୟରେ ବକ୍ତୃତା ଦେଉଥାନ୍ତି । ସେତେବେଳକୁ ସେ ଏହି ବିଷୟରେ ଦୁଇଟି ଗ୍ରନ୍ଥ ପ୍ରକାଶ କରିସାରିଥାନ୍ତି । ଭାଷଣ ଶୁଣିବା ପାଇଁ ବକ୍ତୃତା କକ୍ଷରେ ଶ୍ରୋତାମାନଙ୍କର ପ୍ରବଳ ଭିଡ଼ । ଭାଷଣ ଦେଉଥିବାବେଳେ ସେ ଲକ୍ଷ୍ୟକଲେ ଯେ ଶ୍ରୋତାମାନଙ୍କର ଗହଣରେ ବସିଥିବା ଜଣେ ଇଂରେଜ ଯୁବକ ତାଙ୍କର ଭାଷଣକୁ ଗ୍ରହଣ କରିପାରୁନାହାନ୍ତି । ତାଙ୍କ ମୁଖମଣ୍ଡଳରେ ଫୁଟି ଉଠିଛି ଅସ୍ୱସ୍ତି ଏବଂ ଅସନ୍ତୋଷ ।

ରାୟ କହୁଥିଲେ ଯେ ପ୍ରାଚୀନ ଭାରତୀୟ ବିଜ୍ଞାନୀମାନେ ଥିଲେ ଅତି ପ୍ରବୀଣ । ପରୀକ୍ଷା ନିରୀକ୍ଷାଦ୍ୱାରା ବୈଜ୍ଞାନିକ ତଥ୍ୟକୁ ସାବ୍ୟସ୍ତ କରିବାରେ ସେମାନେ ଥିଲେ ନିପୁଣ । ନିହାତି ଆଦିମ ଯନ୍ତ୍ରପାତି ବ୍ୟବହାର କରି ମଧ୍ୟ ସେମାନେ ଏହାକୁ ସାକାର କରିପାରିଥିଲେ । ମାମୁଲି ମାଟିପାତ୍ର ସାହାଯ୍ୟରେ ସେମାନେ ସମ୍ଭବ କରାଇପାରିଥିଲେ ରାସାୟନିକ ପାତନ ପ୍ରକ୍ରିୟା । ସାର୍ ପି. ସି. ରାୟ ଚିତ୍ରକାଟି ଶ୍ରୋତାମାନଙ୍କୁ ବୁଝାଇଚାଲିଥାନ୍ତି ପ୍ରାଚୀନ ଭାରତୀୟ ବୈଜ୍ଞାନିକଙ୍କ କୁଶଳତା । କିନ୍ତୁ ତାଙ୍କୁ ଶୁଣି ଏବଂ ଚିତ୍ର ଦେଖି ସେହି ଇଂରେଜ ଯୁବକ ଜଣଙ୍କର ଓଠରେ ପ୍ରକାଶ ପାଇଥାଏ ଏକ ଅବଜ୍ଞାସୂଚକ ମୃଦୁହାସ୍ୟ । ସେ ଏହାକୁ ବିଦ୍ରୁପାତ୍ମକ ପରିହାସ କରୁଥିବାର ଜଣାପଡୁଥାଏ । ସାର୍ ପି.ସି. ରାୟଙ୍କ ଚକ୍ଷୁରୁ ଏହା ବାଦ୍ ଗଲା ନାହିଁ । ତଥାପି ସେ ଭାଷଣ ଦେଇ ଚାଲିଥା'ନ୍ତି । ଭାରତୀୟ ବୈଜ୍ଞାନିକମାନଙ୍କ ଦ୍ୱାରା ବ୍ୟବହୃତ ହେଉଥିବା ପରୀକ୍ଷା ସାମଗ୍ରୀ ବିଷୟରେ ବୁଝେଇ ସାରି ସେ ହାତରେ ଉଠେଇନେଲେ କିଛି ମକରଧ୍ୱଜ । ମର୍‌କ୍ୟୁରିକ୍ ସଲଫାଇଡ୍‌ର ଉର୍ଦ୍ଧ୍ୱପାତନ ଦ୍ୱାରା ଏହା ପ୍ରସ୍ତୁତ ହୋଇଥାଏ । ପାରମ୍ପରିକ ଭାରତୀୟ ପ୍ରଣାଳୀରେ ଏହା ଆଜି ମଧ୍ୟ ପ୍ରସ୍ତୁତ ହେଉଛି । ବାସ୍ତବରେ ଦେଖିବାକୁ ଗଲେ ବେଙ୍ଗଲ୍‌ର ସେତେବେଳେକାରର ସର୍ଜନ୍ – ଜେନେରାଲ୍ ସାର୍ ପୁର୍ଡି ଲ୍ୟୁକିସ୍ ଏକ ଉତ୍ତେଜକ ଔଷଧ ରୂପେ ନିଜର ରୋଗୀମାନଙ୍କ ଉପରେ ଏହାକୁ ପ୍ରୟୋଗ କରୁଥିଲେ ।

ସାର୍ ପି.ସି. ରାୟ କିଛି ମକରଧ୍ୱଜ ନିଜ ହାତରେ ଧରି କହିଲେ, ''ଦେଖନ୍ତୁ ବନ୍ଧୁଗଣ, ନିହାତି ଅପରିପକ୍ୱ ମାମୁଲି ଉପକରଣର ସାହାଯ୍ୟ ନେଇ ଦୁଇହଜାର ବର୍ଷ ତଳେ ଭାରତୀୟ ବୈଜ୍ଞାନିକ ମାନେ ଏଭଳି ଏକ ଶୁଦ୍ଧ ଯୌଗିକ ପ୍ରସ୍ତୁତ କରି ପାରୁଥିଲେ । ରୋଗୀମାନଙ୍କ ଯନ୍ତ୍ରଣା ଉପଶମ କରିବା ନିମନ୍ତେ ଏହାକୁ ବ୍ୟବହାର କରୁଥିଲେ ଔଷଧ ରୂପେ । ''

ତା'ପରେ କିଛି କ୍ଷଣ ପାଇଁ ମୌନ ରହିଗଲେ ସେ । ଚାହିଁଲେ ସେହି ଉପରୋକ୍ତ ଇଂରେଜ ଯୁବକଙ୍କୁ । କହିଲେ, ''ଭାରତୀୟ ବିଜ୍ଞାନୀମାନେ ଯେତେବେଳେ ଏହି ଅଭୂତପୂର୍ବ କୃତିତ୍ୱ ପ୍ରଦର୍ଶନ କରିବାରେ ବ୍ରତୀ ଥିଲେ, ସେତେବେଳେ ଆମ ବନ୍ଧୁଙ୍କର ପୂର୍ବପୁରୁଷମାନେ ପେଟ ଭରୁଥିଲେ କଞ୍ଚା ଫଳମୂଳ ଖାଇ ଏବଂ ପିନ୍ଧୁଥିଲେ ଅପରିଷ୍କୃତ ପଶୁ ଚମଡ଼ା । '' ସାର୍ ପି. ସି. ରାୟଙ୍କର ଏହି କଟୁ ମନ୍ତବ୍ୟ ଇଂରେଜ ଯୁବକଙ୍କର ମର୍ମସ୍ଥଳକୁ ବିଦ୍ଧ କରିଥିଲା ।

ସାର୍ ପି. ସି. ରାୟ ଗବେଷଣା କରୁଥାନ୍ତି 'ଫସ୍‌ଫେଟ୍ ଅଫ୍ ସୋଡ଼ା' ଏବଂ ' 'ସୁପରଫସ୍‌ଫେଟ୍ ଅଫ୍ ଲାଇମ୍' ଉପରେ । ଉକ୍ତ ଉପାଦାନ ଦୁଇଟି ବିଦେଶରୁ ଆମଦାନୀ କରିବାକୁ ପଡୁଥାଏ । କିନ୍ତୁ ଅର୍ଥାଭାବ ଯୋଗୁଁ ଆମଦାନୀ କରିବା କଷ୍ଟକର ହେଉଥାଏ ତାଙ୍କୁ । ତେଣୁ ଗୋରୁହାଡ଼ରୁ ଏହାକୁ ପ୍ରସ୍ତୁତ କରିବାନିମନ୍ତେ ସେ ସ୍ଥିରକଲେ ।

ଭାବନା ସାଥେ ସାଥେ କାମ । କଂସେଇଖାନାମାନ ବୁଲି ଗୋରୁ ହାଡ଼ ସଂଗ୍ରହରେ ଲାଗିପଡ଼ିଲେ ସେ । ହାଡ଼ ଗୁଡ଼ିକ ଥାଏ କଞ୍ଚା । ସେଗୁଡ଼ିକୁ ଖରାରେ ଶୁଖେଇବା ପାଇଁ ସେ ନିଜ ଛାତ ଉପରେ ତାକୁ ବିଛେଇ ଦେଲେ । ଖଣ୍ଡେ ଦି'ଖଣ୍ଡ ନୁହେଁ, ବସ୍ତାବସ୍ତା କଞ୍ଚାହାଡ଼ । ସେତେବେଳକୁ ଜାନୁୟାରୀ ମାସ । ବର୍ଷାର କୌଣସି ଆଶଙ୍କା ନାହିଁ। କିନ୍ତୁ ତାଙ୍କର ଦୁର୍ଭାଗ୍ୟ । ଆରମ୍ଭ ହୋଇଗଲା ବର୍ଷା । ବର୍ଷା ଲାଗିରହିଲା ଦଶବାରଦିନ ଧରି । ଫଳରେ ରକ୍ତ ଏବଂ ମାଂସଟୁକୁରାମାନ ଲାଗିଥିବା କଞ୍ଚାହାଡ଼ କ୍ରମେ ପଚିବାକୁ ଆରମ୍ଭ କଲା । ସେଥିରେ ପୋକ ହୋଇଗଲେ । ଗନ୍ଧରେ ନାକ ଫାଟିପଡ଼ିଲା । କାଉମାନେଆସି ଛାତଉପରେ ଭିଡ଼ ଜମେଇଲେ । ହାଡ଼ ଖଣ୍ଡେ ଖଣ୍ଡେ ଥଣ୍ଟରେ ଉଠେଇ ନେଇ ଏଣେ ତେଣେ ପକେଇଲେ । ଫଳରେ ଖଣ୍ଡମଣ୍ଡଳ ପଚାଗନ୍ଧରେ ଭରିଗଲା । ସେ ଅଞ୍ଚଳରେ ରହୁଥିଲେ ଅନେକ ନୈଷ୍ଠିକ ହିନ୍ଦୁ । ସେମାନେ ଡକାଡକି ହୋଇ ଆସି ରୁଣ୍ଡ ହେଲେ ପି. ସି. ରାୟଙ୍କ ଦାଣ୍ଡ ଦୁଆରେ । ସେମାନେ ଧମକ ଦେଲେ ଯେ ସେ ଯଦି ତୁରନ୍ତ ହାଡ଼ଯାକ ସେଠାରୁ ଅନ୍ୟତ୍ର ନେଇ ନ ଯାଆନ୍ତି, ତେବେ କର୍ପୋରେସନ୍‌ର ସ୍ୱାସ୍ଥ୍ୟ ଅଧିକାରୀଙ୍କୁ ଡକେଇବାକୁ ସେମାନେ ବାଧ୍ୟ ହେବେ ।

ରାୟଙ୍କର ଜଣେ ବନ୍ଧୁ ଏତିକିବେଳେ ପହଞ୍ଚି ତାଙ୍କୁ ବହୁତ ସାହାଯ୍ୟ କଲେ । ବେଶ୍ କିଛି ଦୂରରେ ଥିଲା ତାଙ୍କର ଏକ ଖାଲି ଜାଗା । ପି. ସି. ରାୟ ହାଡ଼ଗୁଡ଼ିକୁ ବୋହିନେଇ ସେଇଠି ଜମା କଲେ । ଅଧରାତି ବେଳକୁ ସେଥିରେ ଲଗେଇଦେଲେ ନିଆଁ । ରାତି ଅଧଟାରେ ନିଆଁ ଜଳୁଥିବାର ଦେଖି କେହି ଜଣେ ଚୋରାରେ ଶବଦାହ କରୁଥିବାର ସନ୍ଦେହ କଲେ ପାଖ ଥାନାର ପୋଲିସ୍ । ତେଣୁ ଘଟଣା କଅଣ ତଦାରଖ କରିବା ନିମନ୍ତେ ସେ ଜାଗାକୁ ଧାଇଁଆସିଲେ ସେମାନେ । ହାଡ଼ ଜାଳୁଥିବା ପି. ସି. ରାୟ ଗୋଟିଏ ବାଉଁଶ ନିଆଁ ଭିତରକୁ ଗେଞ୍ଜି ଦେଲେ ଏବଂ ଉଠେଇ ଆଣିଲେ ପୁଳାଏ ହାଡ଼ । ବହୁତ ବୁଝାବୁଝି କଲାପରେ ପୋଲିସ୍ କର୍ମଚାରୀମାନଙ୍କର ହୃଦ୍‌ବୋଧ ହେଲା । ସେମାନେ ଦୁଇଜଣଙ୍କୁ ଛାଡ଼ିଦେଇ ଥାନାକୁ ଫେରିଗଲେ ।

ସାର୍ ପି. ସି. ରାୟଙ୍କର ଥିଲା ଏକ ଅଦ୍ଭୁତ ଖିଆଲ । ସେ ରାତିରେ ଠିକ୍ ସାଢେ ନଅଟା ବେଳେ ଖାଉଥିଲେ ରାତି ଖାଇବା । ଏଥିରେ ସାମାନ୍ୟ ଏପଟ ସେପଟ ହେଉ ନଥିଲା । ରାତି ୯.୩୦ରେ ଛାଡୁଥିବା କୌଣସି ଟ୍ରେନ୍‌ରେ ତାଙ୍କର ଯିବାର ଥିଲେ, ସେ ନିଜ ରାତି ଖାଇବା ସାଙ୍ଗରେ ଧରି ଷ୍ଟେସନ୍ ଯାଉଥିଲେ ଓ ଘଣ୍ଟା ଦେଖି ପ୍ଲାଟଫର୍ମରେ ଖାଇ ବସୁଥିଲେ କିମ୍ୱା ରେଳବଗି ଭିତରେ ଖାଇବା ଆରମ୍ଭ କରି ଦେଉଥିଲେ । ଦଶ ପନ୍ଦର ମିନିଟ୍ ପୂର୍ବରୁ ଘରେ ଖାଇପିଇ ଯିବାର ପ୍ରଶ୍ନ ଉଠୁ ନ ଥିଲା ।

ଅନ୍ୟ କାହା ଘରେ ଅଟକି ଯାଇଥିଲେ ଠିକ୍ ସାଢେ ନଅଟା ବେଳେ ସେ ନିଜ ମୁଣାରୁ ବାହାର କରୁଥିଲେ ପାଉଁରୁଟି କେଇଖଣ୍ଡ ଓ କିଛି ଚିନି । ପାଉଁରୁଟି ଏବଂ ଚିନି ସବୁବେଳେ ତାଙ୍କ ମୁଣା ଭିତରେ ରହୁଥିଲା । ସେତକ ଖାଇଦେଇ ସାଙ୍ଗେ ସାଙ୍ଗେ ବିଛଣା ଧରୁଥିଲେ । ଗୃହକର୍ତ୍ତା ଯେତେ ଅନୁନୟ ବିନୟ କଲେ ମଧ୍ୟ ସେ ସାଢେ ନଅଟା ପରେ ସାମାନ୍ୟତମ ଖାଦ୍ୟ ବି ଛୁଉଁ ନ ଥିଲେ ।

ଭାରତୀୟ ବିଜ୍ଞାନ ପ୍ରତି ତାଙ୍କର ଗଭୀର ଆସ୍ଥା ଥିଲା । ସେ ସବୁବେଳେ କହୁଥିଲେ ଯେ ଭାରତରେ ବିଜ୍ଞାନ ତା' ନିଜ ଗୋଡ଼ରେ ଠିଆ ହେବା ଦରକାର । 'ଭଲ କିସମର ଶିକ୍ଷା ମିଳିବ ' ବୋଲି ଯୁକ୍ତି ଦେଖାଇ ଯେଉଁମାନେ ବିଦେଶ ଯାଉଥିଲେ, ସେମାନଙ୍କୁ ଭାରି ସମାଲୋଚନା କରୁଥିଲେ ସାର୍ ପି. ସି. ରାୟ । ସେ ନିଜ ଆତ୍ମଜୀବନୀରେ ଲେଖିଥିଲେ, " ପ୍ରଫେସର୍ ରାମନ୍ ପ୍ରାୟତଃ ନିଜ ପ୍ରଚେଷ୍ଟାରେ ହିଁ ଶିକ୍ଷା ଲାଭ କରିଥିଲେ । ତାଙ୍କର ସମସ୍ତ କୃତିତ୍ୱପୂର୍ଣ୍ଣ ଗବେଷଣା ସଫଳ ହୋଇଛି ଏଇ ଭାରତ ଭୂଇଁରେ....କଲିକତାର ଗବେଷଣାଗାର ଗୁଡ଼ିକରେ । ଘୋଷ ଏବଂ ଶାହା ନିଜ ନାଁ ପଛରେ ଡି. ଏସ୍. ସି. (ଲଣ୍ଡନ) ଲେଖିବାକୁ ଆଦୌ ପସନ୍ଦ କରି ନ ଥିଲେ । କାରଣ ନିଜ ଶିକ୍ଷାନୁଷ୍ଠାନର ଡକ୍ଟରେଟ୍‌କୁ ସେମାନେ କେବେ ବି ନ୍ୟୂନ ମନେ କରୁ ନ ଥିଲେ । "

ଥରେ ଜଣେ ଯୁବକ ଆସି ସାର୍ ପି. ସି. ରାୟଙ୍କୁ ଦେଖାକଲା । ସେତେବେଳେକୁ ସେ କିଛି ବର୍ଷଧରି ଓକିଲାତି କରି ସାରିଥାଏ । ରସାୟନ ବିଜ୍ଞାନରେ ସ୍ନାତକ ଶିକ୍ଷା ଲାଭ କରିବା ଥିଲା ତା'ର ଉଦ୍ଦେଶ୍ୟ ।

ରାୟ ତାଙ୍କୁ ପଚାରିଲେ, " ଏତେ ବର୍ଷର ଓକିଲାତି ଛାଡ଼ି ପୁଣି ପାଠପଢ଼ା ପଛରେ ଧାଇଁବାର କାରଣ କଅଣ ?"

ଯୁବକଟି ସାଙ୍ଗେ ସାଙ୍ଗେ ଉତ୍ତର ଦେଲା, " ସାର୍ ଏମ୍. ଏ. ଡିଗ୍ରୀଟା ପାଇଗଲେ ମୋ' ନାଁ ପଛରେ ଏମ୍. ଏ., ବି. ଏଲ୍. ବୋଲି ଲେଖିବାକୁ ମୋତେ ସୁଯୋଗ ମିଳିଯିବ । ଏମ୍. ଏ., ବି. ଏଲ୍. ହୋଇଗଲେ ଚାକିରି ମିଳିବାରେ ଆଉ କିଛି ସମସ୍ୟା ରହିବନି । କିରାଣି ଚାକିରି ତ ଥୁଆ "

ଯୁବକଙ୍କଠାରୁ ଏହି ନିର୍ବିକାର ଉତ୍ତର ଶୁଣି ସାର୍ ପି.ସି.ରାୟ ଖେଦୋକ୍ତି ପ୍ରକାଶ କରିଥିଲେ, " ଆଲୋ, ରସାୟନ ବିଜ୍ଞାନ, ତୋ'ର ପୁଣି ଏଭଳି ଦୁର୍ଦ୍ଦଶା ଭୋଗିବାକୁ ହେବ । "

ସାର୍ ପି. ସି. ରାୟ ଜନ୍ମ ହୋଇଥିଲେ ୧୮୫୫ ମସିହାରେ । ୧୯୪୪ ମସିହାରେ ତାଙ୍କର ଦେହାନ୍ତ ହୋଇଗଲା ।



# ରାଜନୀତି ହେଲା କାଳ

ଚାର୍ଲସ୍ ପ୍ରୋଟିଅସ୍ ଷ୍ଟିନ୍‌ମେଜ୍ ଜନ୍ମ ହୋଇଥିଲେ ଜର୍ମାନୀରେ । ସେଇଠି ପାଠ ପଢ଼ିଥିଲେ । କିନ୍ତୁ ୧୮୮୮ ମସିହାରେ ମାତ୍ର ୨୩ ବର୍ଷ ବୟସରେ ଜର୍ମାନୀରୁ ଲୁଚି ପଳେଇଲେ ଜୁରିଚ୍ । ଜୁରିଚ୍‌ରୁ ଚାଲିଗଲେ ଆମେରିକା । ସେହି ଆମେରିକାରେ ମାତ୍ର ୫୮ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା ।

ଷ୍ଟିନ୍‌ମେଜ୍ ଥିଲେ ଜଣେ ଇଲେକ୍‌ଟ୍ରିକାଲ୍ ଇଞ୍ଜିନିୟର୍ । ବିଦ୍ୟୁତ୍‌ଶକ୍ତି ହ୍ରାସରେ ଚୁମ୍ବକୀୟ ପ୍ରତିରୋଧର ଭୂମିକା ଥିଲା ତାଙ୍କ ଗବେଷଣାର ବିଷୟବସ୍ତୁ । ବିଦ୍ୟୁତ୍ ସ୍ରୋତର ପ୍ରତ୍ୟାବର୍ତ୍ତୀ ପ୍ରବାହ ସଂକ୍ରାନ୍ତ କ୍ଷେତ୍ରକୁ ତାଙ୍କର ଅବଦାନ ଫଳରେ ମୋଟରର କାର୍ଯ୍ୟକାରିତାରେ ଉନ୍ନତି ଅଣାଯାଇ ପାରିଥିଲା । ସେତେବେଳକୁ ପ୍ରତ୍ୟାବର୍ତ୍ତୀ ପ୍ରବାହ ବା ଅଲ୍‌ଟର୍ ନେଟିଙ୍ଗ୍ କରେଣ୍ଟ୍ (AC) ବିଷୟରେ କୌଣସି ତଥ୍ୟ ଜଣା ନ ଥିଲା । ତେଣୁ ଦୀର୍ଘ କୋଡ଼ିଏ ବର୍ଷ ଧରି ଷ୍ଟିନ୍‌ମେଜ୍ ଏ ବିଷୟରେ ଗବେଷଣା କରି ଆସିଥିଲେ । ଇଞ୍ଜିନିୟରିଂ ବିଜ୍ଞାନ ବିଷୟରେ ସେ ଅନେକ ପୁସ୍ତକ ରଚନା କରିଥିଲେ ମଧ୍ୟ ।

ଷ୍ଟିନ୍‌ମେଜ୍ ଥିଲେ କୁଜା । କୁଜା ହେଲେ କଅଣ ହେଲା ? ବ୍ରେସ୍‌ଲାଓ ବିଶ୍ୱବିଦ୍ୟାଳୟରେ ପଢ଼ିଲାବେଳେ ସେ ଥିଲେ ଜଣେ ବିଶିଷ୍ଟ ଛାତ୍ରନେତା । ସମାଜବାଦୀ ଚିନ୍ତାଧାରାର ବଡ଼ ପୃଷ୍ଠପୋଷକ ଥିଲେ ସେ । ଛାତ୍ର ଜୀବନରେ ହିଁ ସେ ' ଦି ପିପୁଲସ୍ ଭଏସ୍' ନାମକ ଏକ ସାପ୍ତାହିକ ପ୍ରତ୍ରିକା ପ୍ରକାଶ କରିଥିଲେ । ହେଲେ ପତ୍ରିକାଟି ଭଲ ଚାଲିଲାନି । ଅର୍ଥର ବଡ଼ ଅଭାବ ହେଲା ।

ଦିନେ ବିଶ୍ୱବିଦ୍ୟାଳୟ ପରିସରରେ ବୁଲୁଥା'ନ୍ତି ଷ୍ଟିନ୍‌ମେଜ୍ । ଆସି ପହଞ୍ଚିଗଲେ ପତ୍ରିକାର ମୁଦ୍ରାକର । ତାଙ୍କ ସାଙ୍ଗରେ ପତ୍ରିକା କାଗଜ ଯୋଗାଇ ଦେଇଥିବା ବ୍ୟବସାୟୀ । ବାକିଆ ଟଙ୍କା ଷ୍ଟିନ୍‌ମେଜ୍‌ଙ୍କଠାରୁ ଆଦାୟ କରିବା ଥିଲା ସେମାନଙ୍କର ଉଦ୍ଦେଶ୍ୟ । ଷ୍ଟିନ୍ ମେଜ୍‌ଙ୍କ ଉପରେ ଅନେକ ଟଙ୍କା ବାକି ପଡ଼ିଥାଏ ବହୁଦିନ ଧରି । ହେଲେ ସେ ଏଥିରେ ହଡ଼ବଡ଼େଇ ଗଲେ ନି । ଦୁଇଜଣଙ୍କୁ ଡାକିନେଲେ ପତ୍ରିକା-ଅଫିସ୍‌ର ପଛପାଖକୁ । ସେମାନଙ୍କୁ ଖୁବ୍ ଧୀର ଆଉ ଶାନ୍ତ ଭାବରେ କହିଲେ, '' ପତ୍ରିକାର ପିଛିଲା ସଂଖ୍ୟାମାନ ଅଫିସ୍‌ରେ ବିଡ଼ା ବନ୍ଧା ହୋଇ ରହିଛି । ମୋ ପରାମର୍ଶ ମାନିନିଅ । ସେ ସବୁକୁ ନେଇଯାଅ । ମୁଁ ତୁମକୁ ଏତିକି ପ୍ରତିଶ୍ରୁତି ଦେଇପାରେ ଯେ ସେଥିରୁ ଖଣ୍ଡିଏ ହେଲେ ତୁମେ ଆଉ କାହା ପାଖରେ ପାଇବନି । ସେହି ଦୃଷ୍ଟିରୁ ଏସଂଖ୍ୟାଗୁଡ଼ିକ ବିରଳ, ତେଣୁ ଅମୂଲ୍ୟ ! ''

୧୮୮୮ ମସିହାରେ ପ୍ରକାଶିତ ଉକ୍ତ ପତ୍ରିକାର ସମ୍ପାଦକୀୟରେ ସରକାରଙ୍କୁ ଖୁବ୍ ସମାଲୋଚନା କରିଥିଲେ ଷ୍ଟିନ୍‌ମେଜ୍। ଏହା ସରକାରଙ୍କ ଦୃଷ୍ଟିରେ ପଡ଼ିଲା। ତାଙ୍କୁ ଗିରଫ କରିବା ପାଇଁ ପଦକ୍ଷେପ ନିଆଯାଉଥିବାର ଖବର ପାଇଲେ ସେ। ଏଥିରେ ବି ସେ ବିଚଳିତ ହୋଇ ନଥିଲେ। ନିଜର ବନ୍ଧୁମାନଙ୍କୁ ଭୋଜିଟିଏ ଦେବାପାଇଁ ନିମନ୍ତ୍ରଣ କଲେ ଏକ ହୋଟେଲ୍‌କୁ। ସମସ୍ତଙ୍କ ପାଇଁ ବିଅର କିଣିଲେ। ବିଅର୍ ପିଇ ସମସ୍ତେ ଗାଇଲେ, ନାଚିଲେ, ବେଶ୍ ମଉଜମସ୍ତି କଲେ। ଆସର ଭାଙ୍ଗିଲାବେଳକୁ ଶେଷଥର ବିଅର୍ ଗିଲାସଟିକୁ ଉପରକୁ ଟେକି ଏକ କ୍ଷୁଦ୍ର ଭାଷଣ ଦେଲେ ଷ୍ଟିନ୍‌ମେଜ୍। ଭାଷଣର ସାରମର୍ମ ଥିଲା ଏହିପରି —

''ବନ୍ଧୁଗଣ, ଆଜିର ଏହି ମଦ୍ୟପାନ ଉତ୍ସବ ମୋର ପୂଜ୍ୟ ପିତାଙ୍କ ସମ୍ମାନରେ ଉତ୍ସର୍ଗୀକୃତ। ମୁଁ ଅନର୍ସ ଡିଗ୍ରୀ ହାସଲ କରି ଜଣେ ସ୍ନାତକ ହେବା ଥିଲା ତାଙ୍କର ଇଚ୍ଛା। ମୁଁ ଜଣେ ସମାଜବାଦୀ ହୋଇଥିବାରୁ ମୋତେ ଗିରଫ କରିବା ନିମନ୍ତେ ପୋଲିସ ତତ୍ପର ହୋଇଉଠିଛି। ତେଣୁ ଦେଶର ସୀମା ଟପି ସୁଇଜରଲାଣ୍ଡକୁ ଖସିଯିବାର ମସୁଧାରେ ଅଛି ମୁଁ। ମୋର ଏହି ପଳାୟନର ସମ୍ମାନରେ ମଧ୍ୟ ଆଜିର ଏ ମଦ୍ୟଭୋଜି।

''ମୋର ଥେସିସ୍‌ଟି ପ୍ରସ୍ତୁତ କରିବା ପାଇଁ ମୋତେ ଅକ୍ଲାନ୍ତ ପରିଶ୍ରମ କରିବାକୁ ପଡ଼ିଛି। ପ୍ରକାଶିତ ହୋଇଥିଲେ ସେ ଚମକ ସୃଷ୍ଟି କରିଥାନ୍ତା। କିନ୍ତୁ ସେ ଏବେ ଭଙ୍ଗା ସୁଟ୍‌କେଶଟି ଭିତରେ ବନ୍ଦୀ। ଏହି ଅବସରରେ ମୁଁ ତା'ର ମୁକ୍ତି କାମନା କରୁଛି। ବନ୍ଧୁଗଣ, ଆଜିର ବିଶ୍ୱ ଓ ତା'ର ଅସୁମାରି ବିଡ଼ମ୍ବନା ପ୍ରତି ମୋର ଅନେକ ଅନୁକମ୍ପା। ତେଣୁ ବିଶ୍ୱର କଲ୍ୟାଣ ଓ ସମ୍ମାନ ନିମନ୍ତେ ମଧ୍ୟ ଆଜିର ଏ ମଦ୍ୟପାନ ସମାରୋହ ଉତ୍ସର୍ଗୀକୃତ।''

ଆସର ଭାଙ୍ଗୁ ଭାଙ୍ଗୁ ପାହାନ୍ତା। ବଡ଼ିସକାଳୁ ଯାଇ ସେ ପାଦ ଚିପି ଚିପି ପହଞ୍ଚିଲେ ନିଜ ବାପାଙ୍କ ଶୋଇବା କୋଠରିରେ। ସେଇ ଧୀର ଶବ୍ଦରେ ବି ବାପାଙ୍କର ନିଦ ଭାଙ୍ଗିଗଲା। ନିଦୁଆ ଗଳାରେ ସେ କହିଲେ, '' ଓଃ, କି ସୁନ୍ଦର ସ୍ୱପ୍ନ ! କାର୍ଲ୍ .... ତୋ'ର ଭବିଷ୍ୟତ !'' ବାପା ଷ୍ଟିନ୍‌ମେଜ୍‌ଙ୍କୁ 'କାର୍ଲ୍' ବୋଲି ଡାକୁଥିଲେ।

'' ହଁ, ବାପା। ମୋ'ର ଉଜ୍ୱଳ ଭବିଷ୍ୟତ.... ଏକ ପ୍ରୀତିପ୍ରଦ ସ୍ୱପ୍ନ....! ସତ ନୁହେଁ ?'' — କାର୍ଲ ଭାରୀ ଗଳାରେ ଉତ୍ତର ଦେଲେ।

ତାହା ହିଁ ଥିଲା ପିତାପୁତ୍ରଙ୍କର ଶେଷସାକ୍ଷାତ। ଅଳ୍ପ କେଇଘଣ୍ଟା ପରେ ସେ ଜର୍ମାନୀ ଛାଡ଼ି ଲୁଚି ଲୁଚି ପଳେଇଲେ ସୁଇଜରଲାଣ୍ଡର ଜୁରିଚ୍‌କୁ। ସବୁଦିନ ପାଇଁ ପରିତ୍ୟାଗ କରିଗଲେ ନିଜର ପ୍ରିୟ ମାତୃଭୂମି। ନିଜର ନାଁ ବଦଳେଇ ରଖିଲେ — ' ଚାର୍ଲସ୍ ଷ୍ଟିନ୍‌ମେଜ୍ '।



# ମ୍ୟାଡାମ୍ କ୍ୟୁରୀଙ୍କ ମହାନତା

ମେରୀ କ୍ୟୁରୀଙ୍କୁ ଲୋକେ ମ୍ୟାଡାମ୍ କ୍ୟୁରୀ ବୋଲି ବେଶୀ ଜାଣନ୍ତି । ସେ ଏବଂ ତାଙ୍କର ସ୍ୱାମୀ ରେଡିଅମ୍ ଆବିଷ୍କାର କରିଥିଲେ । ତାଙ୍କ ସ୍ୱାମୀଙ୍କ ନାଁ ପେରୀ କ୍ୟୁରୀ । ରେଡିଅମ୍ ଆବିଷ୍କାର କରିଥିବାରୁ ଉଭୟଙ୍କୁ ନୋବେଲ୍ ପୁରସ୍କାର ମିଳିଥିଲା । ପରେ ମେରୀ କ୍ୟୁରୀ ଦ୍ୱିତୀୟ ଥରପାଇଁ ମଧ୍ୟ ଏହି ପୁରସ୍କାର ପାଇଥିଲେ । କର୍କଟ ରୋଗର ଚିକିତ୍ସାରେ ରେଡିଅମ୍ ବ୍ୟବହୃତ ହୋଇଥାଏ ।

ଶ୍ରୀମତୀ ମେଲୋନି ନାମକ ଜଣେ ଆମେରିକୀୟ ମହିଳା ମ୍ୟାଡାମ୍ କ୍ୟୁରୀଙ୍କୁ ଖୁବ୍ ଭଲ ପାଉଥିଲେ । ଚାରିଆଡ଼େ ତାଙ୍କର ପ୍ରଶଂସା ଗାଇ ବୁଲୁଥିଲେ । କିନ୍ତୁ ମେଲୋନି ଏବଂ କ୍ୟୁରୀଙ୍କର ଆଦୌ ଦେଖାସାକ୍ଷାତ ହୋଇ ନ ଥିଲା । କ୍ୟୁରୀଙ୍କୁ ଦେଖା କରିବା ପାଇଁ ଥରେ ପ୍ୟାରିସ୍‌ରେ ଯାଇ ପହଞ୍ଚିଗଲେ ମେଲୋନି । ପଶିଗଲେ ତାଙ୍କର ଗବେଷଣାଗାରକୁ ।

ଗବେଷଣାଗାରରେ ଉଭୟେ ମହିଳା ମୁହାଁମୁହିଁ ହୋଇଗଲେ । ମେଲୋନି ଲେଖିଛନ୍ତି, '' ମୁଁ ଭାବିଥିଲି ଯେ ମ୍ୟାଡାମ୍ କ୍ୟୁରୀ ଅତି ଦାମିକା ପୋଷାକପତ୍ର ପିନ୍ଧିଥିବେ । କିନ୍ତୁ ଯାହା ଦେଖିଲି ନିଜ ଆଖିକୁ ବିଶ୍ୱାସ କରିପାରିଲିନି । କ୍ୟୁରୀ ପିନ୍ଧିଥାନ୍ତି ଅତି ସାଧାସିଧା କଳା ରଙ୍ଗର ତୁଳାରେ ତିଆରି ପୋଷାକ । ମୁହଁଟି ଦେଖାଯାଉଥାଏ ଖୁବ୍ ଶୁଖିଲା । ସତେ ଯେପରି ସାରା ପୃଥିବୀର ସବୁ ଦୁଃଖ ବୋଲି ହୋଇରହିଛି ତାଙ୍କ ମୁଖମଣ୍ଡଳରେ । ଆମେରିକାର ମହିଳାମାନେ ତାଙ୍କ କାମରେ ଖୁବ୍ ଖୁସି ବୋଲି ମୁଁ କ୍ୟୁରୀଙ୍କୁ ଜଣେଇଲି । କ୍ୟୁରୀଙ୍କ ସଫଳତାରେ ସେମାନେ ଖୁବ୍ ଗର୍ବ ଅନୁଭବ କରୁଥିବା କଥା ମଧ୍ୟ କହିଲି । ତା' ପରେ ଆମ କଥାବାର୍ତ୍ତାର ମୋଡ଼ ବଦଳି ଗଲା । ଆମେ ରେଡିଅମ୍ ବିଷୟରେ ଆଲୋଚନା କଲୁ । ଆଲୋଚନା କାଳରେ କ୍ୟୁରୀ ମୋତେ କହିଲେ ଯେ ଆମେରିକାରେ ଅଛି ୫୦ ଗ୍ରାମ୍ ପରମାଣର ରେଡିଅମ୍ । ଆମେରିକାର କେଉଁ କେଉଁ ନଗରରେ କେତେକେତେ ପରିମାଣର ରେଡିଅମ୍ ଅଛି, ତାହା ସେ ମୋତେ ଜଣେଇଦେଲେ । ''

ମୁଁ ପଚାରିଲି, '' ଆମେରିକାରେ ସିନା ୫୦ ଗ୍ରାମ୍ ରେଡିଅମ୍ ଅଛି,ହେଲେ ପ୍ୟାରିସ୍‌ରେ ? ''

କ୍ୟୁରୀ ଉତ୍ତର ଦେଲେ, ''ମୋ' ଗବେଷଣାଗାରରେ ଏକ ଗ୍ରାମ୍ ରେଡିଅମ୍ ଥିବ କି ନା ସନ୍ଦେହ । ''

''ଆପଣଙ୍କ ପାଖରେ ପୁଣି ଗୋଟିଏ ଗ୍ରାମ୍ ? ଆପଣ ପରା ଏହାକୁ ଆବିଷ୍କାର କରିଛନ୍ତି ? '' – ମୁଁ ପଚାରି ଦେଲି ।

ହଠାତ୍ ସେ ଟିକିଏ ଥତମତ ହେଲେ । ତା' ପରେ କହିଲେ,

'' ମୋ' କଥା ପଚାରୁଛନ୍ତି ?, ଓ, ମୋ' ପାଖରେ ରେଡ଼ିଅମ୍ ଆସିବ କୁଆଡୁ ? ଯେଉଁ ଏକଗ୍ରାମ୍ କଥା କହିଲି, ସେତକ ତ ମୋ' ଗବେଷଣାଗାରର ସମ୍ପତ୍ତି । ''

ତା' ପରେ ଜଣେ ନିପଟ ବୋକାଙ୍କ ଭଳି ମୁଁ ପ୍ରଶ୍ନ କଲି, ''ମ୍ୟାଡାମ୍,ସାରା ପୃଥିବୀରୁ ମନ ମୁତାବକ ଏକ ଚିଜ ବାଛିନେବା ପାଇଁ ଯଦି ଆପଣଙ୍କୁ ଅଧିକାର ଦିଆଯାଏ, ତେବେ ଆପଣ କାହାକୁ ବାଛି ନେବେ ? ''

ମ୍ୟାଡାମ୍ କ୍ୟୁରୀ ସାମାନ୍ୟ ଡେରି ନ କରି ଉତ୍ତର ଦେଲେ, '' ଗବେଷଣା– ପାଇଁ ମୋର ଦରକାର ଗୋଟିଏ ଗ୍ରାମ୍ ରେଡିଅମ୍ । କିନ୍ତୁ ମୁଁ ସେତକ କିଣି ପାରିବାକୁ ଅକ୍ଷମ । କାରଣ ମୋ' ପାଖରେ ଏତେ ଟଙ୍କା ନାହିଁ । ତେଣୁ ମୁଁ ସେହି ରେଡିଅମ୍‌କୁ ହିଁ ବାଛି ନେବା ସ୍ୱାଭାବିକ । ''

ମ୍ୟାଡାମ୍ କ୍ୟୁରୀଙ୍କ ଠାରୁ ବିଦାୟ ନେଇ ଶ୍ରୀମତୀ ମେଲୋନି ଆମେରିକା ଫେରିଗଲେ । କିନ୍ତୁ ଗୋଟିଏ ମାତ୍ର ଚିନ୍ତା ସବୁବେଳେ ତାଙ୍କୁ ଘାରି ରଖିଲା । ସେ ଭାବିଲେ, ବର୍ଷ ବର୍ଷ ଧରି ଗବେଷଣା କଲାପରେ କ୍ୟୁରୀ ରେଡ଼ିଅମ୍ ଆବିଷ୍କାର କଲେ । ଆହୁରି ବେଶୀ ଗବେଷଣା କରିବା ନିମନ୍ତେ ତାଙ୍କର ଦରକାର କିଛି ରେଡିଅମ୍ । ପୃଥିବୀରେ ଏହା ମିଳୁଥିଲେ ମଧ୍ୟ ପାଖରେ ପଇସା ନ ଥିବାରୁ ସେ ଏହାକୁ କିଣିପାରୁନାହାନ୍ତି । ତେଣୁ ପୃଥିବୀ ହିଁ ରେଡିଅମ୍ କିଣି କ୍ୟୁରୀଙ୍କ ଆବିଷ୍କାର ଋଣ ପରିଶୋଧ କରିବା ଦରକାର ।

ମେଲୋନି କ୍ୟୁରୀଙ୍କ ସହ ନିଜର ଆଲୋଚନା କଥା ସମସ୍ତଙ୍କ ଆଗରେ ବଖାଣି ବସିଲେ । ଆମେରିକାବାସୀଙ୍କ ମନକୁ ଏହା ପାଇଲା । ସେମାନେ ବଡ଼ ଖୁସିରେ ଟଙ୍କା ଦେଲେ । ଦାନରୁ ଯେଉଁ ଅର୍ଥ ମିଳିଲା; ସେତକ ଖର୍ଚ୍ଚ କରି କିଣାହେଲା ରେଡିଅମ୍ ।

ଆମେରିକାବାସୀଙ୍କର ଏହି ମହାନ୍‌ଦାନ ଗ୍ରହଣ କରିବା ନିମନ୍ତେ ମ୍ୟାଡାମ୍ କ୍ୟୁରୀ ନିଜର ଦୁଇଝିଅ ଆଇରିନ୍ ଏବଂ ଇଭ୍‌ଙ୍କୁ ସାଙ୍ଗରେ ଆଣି ପହଞ୍ଚିଲେ ଆମେରିକାରେ ( ଆଇରିନ୍ ଓ ତାଙ୍କର ସ୍ୱାମୀ ମଧ୍ୟ ନୋବେଲ୍ ପୁରସ୍କାର ବିଜେତା । )

କ୍ୟୁରୀଙ୍କୁ ରେଡିଅମ୍ ଉପହାର ଦେବା ଉଦ୍ଦେଶ୍ୟରେ ୱାଶିଙ୍ଗ୍‌ଟନ୍‌ରେ ଆୟୋଜିତ ହେଲା ଏକ ଉତ୍ସବ । ଆମେରିକାର ରାଷ୍ଟ୍ରପତି ନିଜେ ଉପସ୍ଥିତ ହୋଇ ଉପହାରଟିକୁ କ୍ୟୁରୀଙ୍କୁ ପ୍ରଦାନ କଲେ । ଉକ୍ତ ଉତ୍ସବରେ ଆମେରିକାର ବହୁମାଣ୍ୟଗଣ୍ୟ ଲୋକ ମଧ୍ୟ ଉପସ୍ଥିତ ଥାଆନ୍ତି । କିନ୍ତୁ ରାଷ୍ଟ୍ରପତି ଏବଂ ଅନ୍ୟ ମାଣ୍ୟଗଣ୍ୟ ବ୍ୟକ୍ତି କେହି ସେତେବେଳକୁ ଜାଣି ନ

ଥିଲେ ଯେ ରେଡିଅମ୍–ଦାନ ଗ୍ରହଣ କରିବା ପୂର୍ବରୁ ମ୍ୟାଡାମ୍ କ୍ୟୁରୀ ରେଡିଅମ୍‌କୁ ଦାନ କରି ସାରିଥିଲେ ।

ଉପହାର ପ୍ରଦାନ ଉତ୍ସବର ପୂର୍ବଦିନ କଥା । ସେଦିନ ସଂଧ୍ୟାରେ କ୍ୟୁରୀ ଜାଣିବାକୁ ପାଇଲେ ଯେ ରେଡିଅମ୍ ବ୍ୟକ୍ତିଗତ ଭାବରେ ତାଙ୍କୁ ହିଁ ଉପହାର ରୂପେ ପ୍ରଦାନ କରାଯିବ । ଏ କଥା ଶୁଣି ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଲେ ସେ । ସେ ସର୍ତ୍ତ ରଖିଲେ ଯେ ଉପହାର ତାଙ୍କ ଉଦ୍ଦେଶ୍ୟରେ ଦିଆହେବ ନାହିଁ । ଏହା ଦିଆଯିବ ବିଜ୍ଞାନକୁ, ତାଙ୍କ ଗବେଷଣାଗାରକୁ । କାରଣ ଏହାକୁ ଯଦି ତାଙ୍କୁ ପ୍ରଦାନ କରାଯାଏ, ତେବେ ସେ ମରିଗଲା ପରେ ସେତକ ରେଡିଅମ୍‌ର ମାଲିକ ହୋଇଯିବେ ତାଙ୍କର ଦୁଇଝିଅ । ତେଣୁ ଉପହାର ଉଦ୍ଦେଶ୍ୟରେ ପ୍ରସ୍ତୁତ ମାନପତ୍ରରେ ସ୍ପଷ୍ଟ ଭାଷାରେ ଉଲ୍ଲେଖ ରହିବା ଦରକାର ଯେ ତାଙ୍କ ଗବେଷଣାଗାରହିଁ ଉପହାରରୂପେ ପ୍ରାପ୍ତ ରେଡିଅମ୍‌ର ପ୍ରକୃତ ଅଧିକାରୀ । ଭବିଷ୍ୟତରେ ଏଥିପାଇଁ କାଳେ କୌଣସି ଗଣ୍ଡଗୋଳ ଉପୁଜିବ, ତେଣୁ ସାଙ୍ଗେ ସାଙ୍ଗେ ଓକିଲ ଡାକି ଆବଶ୍ୟକ ପରିବର୍ତ୍ତନ କରିଦେବା ନିମନ୍ତେ ଜିଦ୍ ଧରିଲେ କ୍ୟୁରୀ ! ସେ କହିଲେ, '' ନା, ଆର ସପ୍ତାହ ଯାଏ ଅପେକ୍ଷା କରି ହେବନି । ଆସନ୍ତା କାଲି ପର୍ଯ୍ୟନ୍ତ ବି ନୁହେଁ ....... ଆଜି ରାତିରେ ହିଁ ସରିବ ସବୁକାମ....... କିଏ ଜାଣେ, ଆଉ କେଇ ଘଣ୍ଟା ଭିତରେ ମୁଁ ମରିଯାଇପାରେ ।''

କ୍ୟୁରୀଙ୍କ କଥା ରହିଲା । ସେହି ରାତିରେ ଯୋଗାଡ଼ କରାଗଲା ଓକିଲ । ସେ ନିଜେ ରେଡିଅମ୍ ଉପହାର ଗ୍ରହଣ କରିବା ପୂର୍ବରୁ ଏହା ପ୍ୟାରିସ୍ ସ୍ଥିତ ଗବେଷଣାଗାର ପାଇଁ ଉତ୍ସର୍ଗ ହୋଇ ସାରିଥିଲା ।

୧୯୩୪ ମସିହା ଜୁଲାଇ ମାସ ୪ ତାରିଖରେ ସେହି ମହାନ୍ ବୈଜ୍ଞାନିକ ମୃତ୍ୟୁବରଣ କରିଥିଲେ ।



# ଦେଶପ୍ରେମୀ ବୈଜ୍ଞାନିକ ଭାଇସେମାନ୍

ପ୍ରଥମ ଶତାବ୍ଦୀରେ ରୋମାନ୍‌ମାନେ ପାଲେଷ୍ଟାଇନକୁ ଅଧିକାର କରିନେଇ ତାକୁ ନାରଖାର କରିଦେଲେ । ଇହୁଦୀମାନଙ୍କୁ ନିଜ ଜନ୍ମ ଭୂମିରୁ ତଡ଼ିଦେଲେ ସେମାନେ । ନିଜ ଦେଶରୁ ତଡ଼ାଖାଇବାରୁ ବାଧ୍ୟ ହୋଇ ସେମାନେ ପୃଥିବୀର ନାନା ଦେଶକୁ ପଳେଇ ଗଲେ ଓ ସେଠାରେ ବସବାସ କଲେ ।

କିନ୍ତୁ ଇହୁଦୀମାନେ ସାଧାରଣତଃ ଖୁବ୍ କର୍ମଠ ଓ ଧର୍ମବିଶ୍ୱାସୀ । ଏହି ଗୁଣ ଯୋଗୁଁ ସେମାନେ ଯେଉଁ କାମରେ ହାତ ଦେଉଥିଲେ ସେଥିରେ ସଫଳତା ପାଉଥିଲେ । ସେମାନଙ୍କର ସାଧୁତା ମଧ୍ୟ ସେମାନଙ୍କୁ ଲୋକପ୍ରିୟ କରିବାରେ ଯଥେଷ୍ଟ ସାହାଯ୍ୟ କରିଥିଲା । କିନ୍ତୁ ଇହୁଦୀମାନେ ଯିଏ ଯେଉଁଠି ଥାଆନ୍ତୁ ପଛେ, ନିଜର ଜନ୍ମମାଟିକୁ ସବୁବେଳେ ଝୁରି ହେଉଥାନ୍ତି ।

ଇହୁଦୀମାନଙ୍କର ଦେବତା ହେଉଛନ୍ତି ଜେହୋବା । ନିଜ ଦେଶ ସେମାନଙ୍କୁ ଫେରେଇ ଦେବା ନିମନ୍ତେ ଇହୁଦୀମାନେ ସବୁବେଳେ ଜେହୋବାଙ୍କୁ ପ୍ରାର୍ଥନା ଜଣାଉଥାନ୍ତି । ଦେଶକୁ ବିଦେଶୀ କବଳରୁ ମୁକ୍ତ କରିବା ପାଇଁ ସେମାନେ ଗଢିଥିଲେ ବିଶ୍ୱ ଇହୁଦୀ ସଂଗଠନ । ଏହି ସଂଗଠନ ଜରିଆରେ ସେମାନେ ଅର୍ଥ ସଂଗ୍ରହ କରୁଥିଲେ । ଦେଶମୁକ୍ତି ଆନ୍ଦୋଳନ ପାଇଁ ବ୍ୟୟ କରିବା ଥିଲା ଅର୍ଥ ସଂଗ୍ରହର ଉଦ୍ଦେଶ୍ୟ ।

୧୯୧୬ ମସିହାର କଥା । ସେତେବେଳକୁ ଆରମ୍ଭ ହୋଇ ଯାଇଥାଏ ବିଶ୍ୱଯୁଦ୍ଧ ।ଏକ ପକ୍ଷରେ ବ୍ରିଟେନ୍, ଫ୍ରାନ୍‌ସ୍ ଏବଂ ରୁଷିଆ ଏବଂ ଅନ୍ୟ ପକ୍ଷରେ ଜର୍ମାନୀ, ଅଷ୍ଟ୍ରିଆ, ତୁର୍କୀ ଓ ଅନ୍ୟ କେତେକ କ୍ଷୁଦ୍ରରାଷ୍ଟ୍ର ଯୁଦ୍ଧରେ ଜଡ଼ିତ । ବ୍ରିଟେନ୍ ପାଇଁ ହଠାତ୍ ଦେଖାଦେଲା ଏକ ବିରାଟ ସମସ୍ୟା । ସେତେବେଳେ ଯୁଦ୍ଧାସ୍ତ୍ର ନିର୍ମାଣ ପାଇଁ ଆବଶ୍ୟକ ପଡୁଥିଲା 'ଆସିଟୋନ୍' ନାମକ ଏକ ରାସାୟନିକ ପଦାର୍ଥ । କିନ୍ତୁ ବ୍ରିଟେନ୍‌ର ଆସିଟୋନ୍ ଭଣ୍ଡାର କ୍ରମେ କମି କମି ଆସୁଥାଏ । ତେଣୁ ସଂକଟ ଦେଖାଦେଲା ଅସ୍ତ୍ର ତିଆରି କ୍ଷେତ୍ରରେ ।

ସେତେବେଳେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ଥାଆନ୍ତି ଲଏଡ୍ ଜର୍ଜ୍ । ଜର୍ଜ୍ ଘୋଷଣା କଲେ ଯେ ଯେଉଁ ବୈଜ୍ଞାନିକ ଅତିଶୀଘ୍ର ଶସ୍ତାରେ ଅଧିକ ପରିମାଣର ଆସିଟୋନ୍ ଉତ୍ପାଦନ କରିବାର ନୂତନ ପଦ୍ଧତି ଉଦ୍ଭାବନ କରିପାରିବେ, ତାଙ୍କୁ ଯଥୋଚିତ ପୁରସ୍କାର ପ୍ରଦାନ କରାଯିବ ।

ଏହି ଘୋଷଣା ଡକ୍ଟର ଭାଇସେମାନ୍ (Weizmann)ଙ୍କ କାନରେ ବାଜିଲା । ଭାଇସେମାନ୍ ଜନ୍ମ ହୋଇଥିଲେ ରୁଷିଆରେ । ସେ ଥିଲେ ଜଣେ ଇହୁଦୀ । ରୁଷିଆରେ ସେତେବେଳେ ଶାସନ କରୁଥିଲେ ଜାର୍ । ଜାର୍‌ଙ୍କର ଇହୁଦୀ ବିଦ୍ୱେଷ ମନୋଭାବ ଯୋଗୁ ଭାଇସେମାନ୍ ରୁଷିଆରେ ରହିବା ନିରାପଦ ମଣିଲେନି । ତେଣୁ ଯୁବାବସ୍ଥାରେ ସେ ପଳେଇଗଲେ ଜର୍ମାନୀ । ୧୯୦୦ ମସିହାରେ ଫ୍ରିବର୍ଗ୍ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ କରିସାରି ଜେନେଭା ବିଶ୍ୱବିଦ୍ୟାଳୟ ରସାୟନ ବିଭାଗରେ ଅଧ୍ୟାପକ ରୂପେ ଯୋଗ ଦେଲେ ଭାଇସେମାନ୍ । ୧୯୦୪ ମସିହାରେ ସେ ଇଂଲଣ୍ଡ ଚାଲିଯାଇ ମାଞ୍ଚେଷ୍ଟର୍ ବିଶ୍ୱବିଦ୍ୟାଳୟର ଜୀବରସାୟନ ବିଭାଗରେ ଯୋଗ ଦେଲେ ରିଡର୍ ପଦବୀରେ । ୧୯୧୦ ମସିହାରେ ଗ୍ରହଣ କଲେ ବ୍ରିଟିଶ୍ ନାଗରିକତ୍ୱ ।

ଲଏଡ୍ ଜର୍ଜ୍‌ଙ୍କର ଆହ୍ୱାନ ଶୁଣି ଦିନରାତି ଗବେଷଣାରେ ଲାଗି ପଡ଼ିଲେ ଭାଇସେମାନ୍ । ଏହା ପୂର୍ବରୁ ସେ ଏପରି ଏକ ଜୀବାଣୁ ଆବିଷ୍କାର କରିଥଲେ ଯେଉଁ ଜୀବାଣୁ ମକାର କିଣ୍ୱନ୍ ପ୍ରକ୍ରିୟାରେ ଆସିଟୋନ୍ ସଂଶ୍ଳେଷଣ କରିପାରୁଥିଲା । ତେବେ ଏହି କିଣ୍ୱନ୍ ପ୍ରକ୍ରିୟାରେ ସାମାନ୍ୟ ପରିବର୍ତ୍ତନ ଆଣି ଭାଇସେମାନ୍ ପ୍ରସ୍ତୁତ କରିପାରିଥିଲେ ବୁଟିଲ୍ ଆଲ୍‌କହଲ୍ । କିନ୍ତୁ ଯୁଦ୍ଧ ସମୟର ଆସିଟୋନ୍ ଆବଶ୍ୟକତା ପୂରଣ କରିବାପାଇଁ ଭାଇସେମାନ୍ ନିଜ ଉଦ୍ଭାବିତ ପଦ୍ଧତି ସଂପର୍କରେ ବୈଜ୍ଞାନିକ ଏବଂ ଇଂରେଜ ସରକାରଙ୍କର ଦୃଷ୍ଟି ଆକର୍ଷଣ କଲେ । ଆସିଟୋନ୍ ପ୍ରସ୍ତୁତି ପଦ୍ଧତି ସର୍ବ ସମକ୍ଷରେ ପ୍ରଦର୍ଶନ କଲେ ମଧ୍ୟ । ଭାଇସେମାନ୍‌ଙ୍କ ପଦ୍ଧତି ଅନୁସରଣ କରି ବ୍ରିଟେନ୍‌ରେ ପ୍ରସ୍ତୁତ ହୋଇ ଚାଲିଲା ଆସିଟୋନ୍ । ଆସିଟୋନ୍‌ର ଅଭାବ ନ ପଡ଼ିବାରୁ ବିସ୍ଫୋରକ ଏବଂ ଅନ୍ୟ ଯୁଦ୍ଧାସ୍ତ୍ର ନିର୍ମାଣର ପଥ ସୁଗମ ହୋଇଗଲା । ବ୍ରିଟେନ୍ ସଫଳତାର ସହ ମୁକାବିଲା କରିପାରିଲା ଜର୍ମାନୀର ।

ଲଏଡ୍ ଜର୍ଜ୍ ଆସିଟୋନ୍ ପ୍ରସ୍ତୁତି ପଦ୍ଧତି ଉଦ୍ଭାବନ ପାଇଁ ନିବେଦନ କରିଥିଲେ ବୈଜ୍ଞାନିକ ଗୋଷ୍ଠୀଙ୍କୁ । ଭାଇସେମାନ୍ ତାହା ସାକାର କରିଦେଲେ । ଏବେ ତାଙ୍କୁ ପୁରସ୍କୃତ କରିବାର ପାଳି ।

ଲଏଡ୍ ଜର୍ଜ୍ ନିଜ ଘୋଷଣା ପ୍ରତି ସଂପୂର୍ଣ୍ଣ ସତ୍ୟନିଷ୍ଠ ଥିଲେ । ସେ ଭାଇସେମାନ୍‌ଙ୍କୁ ନିମନ୍ତ୍ରଣ କଲେ । ତାଙ୍କ ସହ ଆଲୋଚନା କରି ବ୍ରିଟେନ୍‌ର କୃତଜ୍ଞତା ଜଣେଇଲେ ତାଙ୍କୁ । ତା'ପରେ ପଚାରିଲେ, ''କି' ପୁରସ୍କାର ଦେଇ ବ୍ରିଟେନ୍ ଆପଣଙ୍କର ଋଣ ପରିଶୋଧ କରିବ ଡକ୍ଟର ଭାଇସେମାନ୍ ?''

ଭାଇସେମାନ୍ ନମ୍ରତାର ସହ ଉତ୍ତର ଦେଲେ –

''ପ୍ରଧାନମନ୍ତ୍ରୀ ମହୋଦୟ, ମୋ'ର ସୁନାରୂପା ଦରକାର ନାହିଁ । ପଦପଦବୀ ମୋ' ପାଇଁ ତୁଚ୍ଛ ।

''ବିଶ୍ୱଯୁଦ୍ଧର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ମୋର ଯତ୍‌କିଞ୍ଚିତ୍ ସେବାର ପତିଦାନ ସ୍ୱରୂପ ପାଲେଷ୍ଟାଇନ୍‌ରେ ଇହୁଦୀମାନଙ୍କ ପାଇଁ ଏକ ଜାତୀୟ ସରକାର ପ୍ରତିଷ୍ଠା କରିବା ନିମନ୍ତେ ବ୍ରିଟିଶ୍ ସରକାର ଅଙ୍ଗୀକାର କଲେ ମୁଁ ଧନ୍ୟ ହୋଇଯିବି । ଇହୁଦୀଜାତି ଆପଣଙ୍କର ଏହି ଅବଦାନକୁ ଚିରଦିନ ସ୍ମରଣ କରୁଥିବ ।''

ଜନ୍ମମାଟିର ମୋହ କି ତୀବ୍ର, ତାହାର ଏକ ଝଲକ ଦେଖିଲେ ଲଏଡ୍ ଜର୍ଜ୍ । ଭାଇସେମାନ୍‌ଙ୍କ ପାଖରେ ଦେଶପ୍ରେମର ଏହି ବିରଳ ଦୃଷ୍ଟାନ୍ତରେ ସେ ଅଭିଭୂତ ହୋଇପଡ଼ିଲେ । ଭାଇସେମାନ୍‌ଙ୍କ ସର୍ତ୍ତ ପୂରଣ କରିବା ପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ ବ୍ରିଟେନ୍‌ର ପ୍ରଧାନମନ୍ତ୍ରୀ ଲଏଡ୍ ଜର୍ଜ୍ ।

୧୯୧୯ ସାଲରେ ଯୁଦ୍ଧ ସରିଗଲା । ବ୍ରିଟେନ୍ ଏବଂ ତା'ର ସହଯୋଗୀ ରାଷ୍ଟ୍ରମାନେ ଯୁଦ୍ଧରେ ଜୟଲାଭ କଲେ । ୧୯୨୦ରେ ସ୍ୱାକ୍ଷରିତ ଚୁକ୍ତି ଅନୁଯାୟୀ ତୁର୍କୀର ଓଟୋମାନ୍ ସାମ୍ରାଜ୍ୟରୁ ପାଲେଷ୍ଟାଇନ୍‌କୁ ମୁକ୍ତ କରି ବ୍ରିଟେନ ନିଜ ଅଧୀନକୁ ନେଇ ଆସିଲା । ପାଲେଷ୍ଟାଇନ୍‌ରେ ବସବାସ କରିବା ନିମନ୍ତେ ଅନୁମତି ଦେଇ ଦେଲା ଇହୁଦୀମାନଙ୍କୁ । ତେଣୁ ପୃଥିବୀର ବିଭିନ୍ନ ପ୍ରାନ୍ତରୁ ଇହୁଦୀମାନେ ଫେରି ଆସି ସେଠାରେ ବସତି ସ୍ଥାପନ କଲେ । ଦେଶ ବିଦେଶରୁ ପର୍ଯ୍ୟାପ୍ତ ଅର୍ଥ ସାହାଯ୍ୟ ମଧ ମିଳିଲା । ଭାଇସେମାନ୍‌ଙ୍କର ବିରଳ ଦେଶପ୍ରେମର ଫଳ ସ୍ୱରୂପ ଇହୁଦୀମାନେ ଫେରିପାଇଲେ ନିଜର ପ୍ରାଚୀନ ଜନ୍ମ ଭୂମି ।

୧୯୨୧ ମସିହାଠାରୁ ଭାଇସେମାନ୍ ରହି ଆସିଥିଲେ ବିଶ୍ୱ ଇହୁଦୀ ସଂଗଠନର ସଭାପତି । ଇହୁଦୀରାଷ୍ଟ୍ର ଗଠନରେ ତାଙ୍କର ଅବଦାନ ସର୍ବାଧିକ । ପରେ ଅବଶ୍ୟ ଇହୁଦୀରାଷ୍ଟ୍ରର ନାମକରଣ କରାଯାଇଛି 'ଇସ୍ରାଏଲ୍' ।

୧୯୩୨ ସାଲରେ ଜେରୁଜେଲମ୍‌ସ୍ଥିତ ହିବ୍ରୁ ବିଶ୍ୱବିଦ୍ୟାଳୟର ସଭାପତି ଆସନ ଅଳଙ୍କୃତ କରିଥିଲେ ଭାଇସେମାନ୍ । ୧୯୪୮ ମସିହାରେ ଇସ୍ରାଏଲ ରାଷ୍ଟ୍ର ପ୍ରତିଷ୍ଠା ହେଲାପରେ ତାଙ୍କୁ ଇସ୍ରାଏଲ୍‌ର ପ୍ରଥମ ରାଷ୍ଟ୍ରପତି ରୂପେ ନିର୍ବାଚନ କରି ଦେଶବାସୀ ତାଙ୍କ ପ୍ରତି ନିଜର କୃତଜ୍ଞତା ଜଣାଇଲେ । ସେତେବେଳକୁ ଭାଇସେମାନ୍‌ଙ୍କର ବୟସ ୭୦ ବର୍ଷରୁ ଅଧିକ । ବୃଦ୍ଧାବସ୍ଥା ସାଙ୍ଗକୁ ଭଗ୍ନସ୍ୱାସ୍ଥ୍ୟ । ତଥାପି ୧୯୫୨ ମସିହା ନଭେମ୍ବର ୯ ତାରିଖରେ ତାଙ୍କର ମୃତ୍ୟୁ ହେବା ପର୍ଯ୍ୟନ୍ତ ସେ ରହିଆସିଥିଲେ ଇସ୍ରାଏଲ୍‌ର ରାଷ୍ଟ୍ରପତି ।

ଗବେଷଣାରେ ସକ୍ରିୟ ଭାବରେ ସଂପୃକ୍ତ ଜଣେ ବୈଜ୍ଞାନିକ କୌଣସି ଏକ ରାଷ୍ଟ୍ରର ରାଷ୍ଟ୍ରମୁଖ୍ୟ ପଦବୀରେ ଅଧିଷ୍ଠିତ ହେବା ନିଶ୍ଚିତ ଭାବରେ ବିଜ୍ଞାନୀ ସମାଜ ପାଇଁ ଏକ ବିରଳ ସମ୍ମାନ । ଭାଇସେମାନ୍ ହୋଇପାରିଥିଲେ ଏଭଳି ଏକ ସମ୍ମାନର ଅଧିକାରୀ ।





# ଈଶ୍ୱରଙ୍କ ଚାବୁକ ପାଉଲି

ପାଉଲି ଉଲ୍‌ଫ୍‌ଗ୍ୟାଙ୍ଗ୍ ଥିଲେ ଅଷ୍ଟ୍ରିଆର ନାଗରିକ । କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନ ଶାଖାରେ ତାଙ୍କର ମୌଳିକ ଅବଦାନ ଯୋଗୁ ତାଙ୍କୁ ୧୯୪୫ ମସିହାରେ ପଦାର୍ଥ ବିଜ୍ଞାନ ନୋବେଲ୍ ପୁରସ୍କାର ମିଳିଥିଲା । ମ୍ୟୁନିକ୍ ବିଶ୍ୱବିଦ୍ୟାଳୟରେ ପଢୁଥିଲାବେଳେ ଆଇନ୍‌ଷ୍ଟାଇନ୍‌ଙ୍କ ଆପେକ୍ଷିକ ତତ୍ତ୍ୱ ସମ୍ବନ୍ଧରେ ସେ ପ୍ରସ୍ତୁତ କରିଥିଲେ ୨୫୦ ପୃଷ୍ଠା ବିଶିଷ୍ଟ ଏକ ପ୍ରସିଦ୍ଧ ପ୍ରବନ୍ଧ । ପରେ କୋପେନ୍‌ହେଗେନ୍‌ରେ ସେ କିଛିକାଳ ନିଲ୍‌ସ୍ ବୋହରଙ୍କ ଅଧୀନରେ ମଧ୍ୟ ଗବେଷଣା କରିଥିଲେ । କୌଣସି ଚାର୍ଜ୍ ବହନ କରି ନ ଥିବା ଏବଂ ନଗଣ୍ୟ ବସ୍ତୁତ୍ୱ ଥିବା ଏକ କଣିକାର ଉପସ୍ଥିତି ସମ୍ବନ୍ଧରେ ମଧ୍ୟ ପୂର୍ବ ସୂଚନା ପ୍ରଦାନ କରିଥିଲେ ପାଉଲି । ସେ ଏହାର ନାମକରଣ କରିଥିଲେ 'ନିଉଟ୍ରିନୋ' । ପରୀକ୍ଷାଦ୍ୱାରା 'ନିଉଟ୍ରିନୋର' ଉପସ୍ଥିତି ପ୍ରମାଣିତ ହେଲା ୧୯୫୬ ମସିହାରେ । ପରବର୍ତ୍ତୀ କାଳରେ ସେ ଦର୍ଶନ ଶାସ୍ତ୍ରପ୍ରତି ଆଗ୍ରହୀ ହୋଇପଡ଼ିଲେ । ପ୍ରଖ୍ୟାତ ମନସ୍ତତ୍ତ୍ୱବିଦ୍ କାର୍ଲ ଜଙ୍ଗ୍‌ଙ୍କ ସହ ମିଶି ବିଶ୍ଳେଷଣାତ୍ମକ ମନସ୍ତତ୍ତ୍ୱ ଏବଂ କ୍ୱାଣ୍ଟମ୍ ପଦାର୍ଥବିଜ୍ଞାନ ମଧ୍ୟରେ ସଂପର୍କ ସ୍ଥାପନ କରିବାପାଇଁ ଅନୁସନ୍ଧାନ ଚଳେଇଥିଲେ ସେ ।

ପଦାର୍ଥ ବିଜ୍ଞାନବିତ୍ ଇଉଜେନି ଉଇଗ୍‌ନର ପାଉଲିଙ୍କ ବିଷୟରେ ସ୍ମୃତିଚାରଣ କରି କହିଥିଲେ, ''ପଢ଼ା ପ୍ରସ୍ତୁତ କରି ଶ୍ରେଣୀ କକ୍ଷକୁ ଯାଇଥିଲେ ପାଉଲି ଖୁବ୍ କୁଶଳତାର ସହ ଶିକ୍ଷାଦାନ କରିପାରନ୍ତି । କିନ୍ତୁ ଆଗରୁ ପଢ଼ାପଢ଼ି ନ କରି ପଢ଼େଇବା ଆରମ୍ଭ କରିଦେଲେ ସବୁକିଛି ଗୋଳମାଳିଆ ହୋଇଯାଏ । ମୁଁ ଥରେ ତାଙ୍କୁ ବକ୍ତୃତା ଦେବାପାଇଁ ନିମନ୍ତ୍ରଣ କରିଥିଲି ପ୍ରିନ୍‌ସିଟନ୍‌କୁ । ସେ ଆସି ବକ୍ତୃତା ଆରମ୍ଭ କଲେ । ଆଗରୁ ପ୍ରସ୍ତୁତ ହୋଇ ନ ଥିବାରୁ ଯାହା ଆଶା କରାଯାଉଥିଲା, ତାହା ହିଁ ହେଲା । ଶ୍ରୋତାମାନେ କେହି କିଛି ବୁଝିପାରିଲେନି । ସେମାନଙ୍କଠାରେ ଅସ୍ୱସ୍ତିଭାବ ପ୍ରକାଶ ପାଇଲା । ମୁଁ ପାଉଲିଙ୍କୁ ନିମନ୍ତ୍ରଣ କରି ଆଣିଥିବାରୁ ବଡ଼ ଅନୁତପ୍ତ ବୋଧ କଲି । ତେଣୁ ମୁଁ ଭାବିଲି ଯେ ବକ୍ତୃତାକୁ ସରଳ କରାଇ ବୋଧଗମ୍ୟ ହେଲାଭଳି ଉପସ୍ଥାପନ କରିବାରେ ମୁଁ ପାଉଲିଙ୍କୁ ସାହାଯ୍ୟ ଦେବା ବୋଧହୁଏ ଉଚିତ ହେବ ।

ସେତେବେଳକୁ ସେ ଏକ ଗାଣିତିକ ସମସ୍ୟାର ସମାଧାନ ବିଷୟରେ କହୁଥାନ୍ତି । କିନ୍ତୁ ସେ ବ୍ୟବହାର କରୁଥବା ଗାଣିତିକ ସଙ୍କେତଗୁଡ଼ିକୁ ବ୍ୟାଖ୍ୟା ନ କରି ଅଙ୍କ କଷି ଚାଲିଥାଆନ୍ତି । ସେଇଥିପାଇଁ ତାହା ବୁଝି ହେଉ ନଥାଏ । ତାହା ସେ ଆଗରୁ ବୁଝେଇ ଦେଲେ ସମସ୍ତେ ଆଶ୍ୱସ୍ତ ହୁଅନ୍ତେ ବୋଲି ମନେ କଲି ମୁଁ । ତେଣୁ ବଡ଼ ବିନମ୍ର ସହକାରେ ମୁଁ କହିଲି, ''ପାଉଲି, 'a'ବୋଲି ଯେଉଁ ଗାଣିତିକ ସଂକେତ ଆପଣ ଏଠାରେ ବ୍ୟବହାର କରୁଛନ୍ତି । ସେହି 'a' କାହାର ପ୍ରତିନିଧିତ୍ୱ କରୁଛି, ତାକୁ 'ଆଉଥରେ' ଟିକେ କହିଦେବ କି ? ତାଙ୍କୁ ସମ୍ମାନ ଜଣେଇବା ଉଦ୍ଦେଶ୍ୟରେ ହିଁ ମୁଁ 'ଆଉଥରେ' ଶବ୍ଦ ବ୍ୟବହାର କରିଥିଲି । କାରଣ ସେ ଜମା ଏହାର ବ୍ୟାଖ୍ୟା କରି ନ ଥିଲେ । ମୋ କଥାଶୁଣି ପାଉଲି ସଂପୂର୍ଣ୍ଣ ହଡ଼ବଡ଼େଇ ଗଲେ । କିଛି ସେକେଣ୍ଡପାଇଁ ସେ ମୂକଭଳି ଠିଆହୋଇ ରହିଲେ । ନିଜର ବିସ୍ମୟ ଦୂର ହୋଇଗଲା ପରେ ସେ କହିଲେ, ''ଉଇଗ୍‌ନର, ସବୁକଥା କ'ଣ ଟିକିନିଖି କରି ତୁମକୁ କହିବାକୁ ପଡ଼ିବ !'' ତାଙ୍କ ଉତ୍ତର ଶୁଣି ଶ୍ରୋତାମାନେ ସନ୍ତୁଷ୍ଟ ହୋଇ ନ ପାରିଲେ ବି ଚୁପ୍ ରହିବା ଶ୍ରେୟସ୍କର ମଣିଲେ ।

କୁହାଯାଏ ଯେ ପଦାର୍ଥ ବିଜ୍ଞାନ ଶାଖାରେ ପାଉଲିଙ୍କର ରହିଥିଲା ଏକ ଅନ୍ତର୍ଦୃଷ୍ଟି । ଏହି ଅନ୍ତର୍ଜ୍ଞାନ ବଳରେ ସେ ଭୁଲଭଟକାମାନ ସହଜରେ ଧରି ପାରୁଥିଲେ । ତେଣୁ କୌଣସି ଏକ ବିଜ୍ଞାନ ସନ୍ଦର୍ଭର ଉପସ୍ଥାପନାବେଳେ ତାଙ୍କର ସମାଲୋଚନା ଥିଲା ଖୁବ୍ ଶାଣିତ । ଅନୁମାନ ଉପରେ ପର୍ଯ୍ୟବସିତ କୌଣସି ଯୁକ୍ତି ଶୁଣିଲେ କି ଗବେଷକ ନିଜ ଗବେଷଣା ସିଦ୍ଧାନ୍ତର ସାର୍ଥକତା ପ୍ରତିପାଦନ ପାଇଁ ମିଥ୍ୟାର ଆଶ୍ରୟ ନେଲେ ସେ ରାଗରେ ନିଆଁବାଣ ହୋଇଯାଉଥିଲେ । ତେଣୁ ପାଉଲିଙ୍କୁ ଅନ୍ୟ ଗବେଷକମାନେ ନାଁ ଦେଇଥିଲେ 'ଈଶ୍ୱରଙ୍କ ଚାବୁକ' । କେହି କେହି ତାଙ୍କୁ 'ଭୀତିପ୍ରଦ ପାଉଲି' ବୋଲି ମଧ୍ୟ ଅଭିହିତ କରୁଥିଲେ । ଏପରିକି ଆଇନ୍‌ଷ୍ଟାଇନ୍ ଏବଂ ହିଜେନ୍‌ବର୍ଗଙ୍କ ଭଳି ପ୍ରଖ୍ୟାତଯଶା ବୈଜ୍ଞାନିକମାନେ ବି ପାଉଲିଙ୍କ ସମାଲୋଚନାରୁ ତ୍ରାହି ପାଇ ପାରିନାହାନ୍ତି ।

ନିଜର ଅନୁଭୂତି ବର୍ଣ୍ଣନା କରିବାକୁ ଯାଇ ହିଜେନ୍‌ବର୍ଗ ଲେଖିଥିଲେ, ''ମ୍ୟୁନିକ୍ ବିଶ୍ୱବିଦ୍ୟାଳୟରେ ମୁଁ ଠାବକଲି ତାଙ୍କୁ । ମୁଣ୍ଡରେ ତାଙ୍କର ଘଞ୍ଚ କଳାବାଳ । ସେ ବସିଥାନ୍ତି ତୃତୀୟ ଧାଡ଼ିରେ । ମୋ'ର ପ୍ରଥମ ପରିଦର୍ଶନ କାଳରେ ସମରଫିଲ୍ଡ୍ ତାଙ୍କୁ ମୋ ସହିତ ପରିଚୟ କରେଇଥିଲେ । ସେତେବେଳେ ସମରଫିଲ୍ଡ୍ ମୋତେ କହିଥିଲେ ଯେ ତାଙ୍କର ଉକ୍ତ ଛାତ୍ରଜଣକ ଖୁବ୍ ମେଧାବୀ ଓ ତାଙ୍କଠାରୁ ମୋର ବହୁତ କିଛି ଶିକ୍ଷା କରିବାର ଅଛି । ସେହି ଛାତ୍ରଙ୍କ ନାଁ ଉଲଫ୍‌ଗ୍ୟାଙ୍ଗ୍ ପାଉଲି । ସେ ମୋତେ ଅତି ତୀବ୍ର ସମାଲୋଚନା କରୁଥିଲେ ମଧ୍ୟ ବଞ୍ଚିଥିବାଯାଏ ଆମେ ଦୁହେଁ ଘନିଷ୍ଠ ବନ୍ଧୁରୂପେ ରହି ଆସିଥିଲୁ ।''

ଆପେକ୍ଷିକ ତତ୍ତ୍ୱ ବିଷୟରେ ପାଉଲିଙ୍କ ଦ୍ୱାରା ପ୍ରସ୍ତୁତ ୨୫୦ ପୃଷ୍ଠାର ସେହି ଦୀର୍ଘ ପ୍ରବନ୍ଧଟିକୁ ପାଠକରି ନିଜେ ଆଇନ୍‌ଷ୍ଟାଇନ୍ ମତ ବ୍ୟକ୍ତ କରିଥିଲେ, ''ଏହି ପରିପକ୍ୱ, ଅତି ଉନ୍ନତ ଚିନ୍ତା ପ୍ରସୂତ ଏବଂ ସୁରଚିତ ପ୍ରବନ୍ଧଟିକୁ ଅନୁଧ୍ୟାନ କରିସାରିଲାପରେ କେହି ବିଶ୍ୱାସ କରିବେନି ଯେ ଏହାର ଲେଖକଙ୍କୁ ଜମା ୨୧ ବର୍ଷ ବୟସ । ଧାରଣାକୁ ବିକାଶ କରିବାରେ ନିଜର ମନସ୍ତାତ୍ତ୍ୱିକ ବିଚାର, ନା ଗାଣିତିକ ସିଦ୍ଧାନ୍ତର ନିଶ୍ଚୟତା, ନା ଅତି ଗଭୀର ପ୍ରାକୃତିକ ଅନ୍ତର୍ଦୃଷ୍ଟି ନା ଖୁବ୍ ସ୍ୱଚ୍ଛ ରୀତି ସଙ୍ଗତ ଉପସ୍ଥାପନା କ୍ଷମତା ନା ବିଷୟବସ୍ତୁର ସଂପୂର୍ଣ୍ଣ ସୁପରିଚାଳନା ନା ସମାଲୋଚନାମୂଳକ ମୂଲ୍ୟାୟନର ନିଶ୍ଚୟତା – ଏଗୁଡ଼ିକ ମଧ୍ୟରୁ କେଉଁ ବିଭାବଟି ସବୁଠାରୁ ଅଧିକ ପ୍ରଶଂସନୀୟ, ତା'ର ନିର୍ଦ୍ଧାରଣ ବାସ୍ତବ କ୍ଷେତ୍ରରେ ଖୁବ୍ କଠିନ ।''

କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନ କ୍ଷେତ୍ରରେ ଯୁଗାନ୍ତକାରୀ ଅବଦାନ ଦେବା ଏବଂ ବୈଜ୍ଞାନିକ ମେଧାରେ ଅଭୂତପୂର୍ବ ଉତ୍କର୍ଷ ପ୍ରତିପାଦନ କରିବା ସତ୍ତ୍ୱେ ପାଉଲିଙ୍କର ବ୍ୟକ୍ତିଗତ ଜୀବନ ଥିଲା ଅତ୍ୟନ୍ତ ଦୁଃଖାବହ । ଜୁରିଚ୍ ବିଶ୍ୱବିଦ୍ୟାଳୟରେ ତାଙ୍କର ଅଧ୍ୟାପନା ଥିଲା ଖୁବ୍ ନିମ୍ନମାନର । ତାଙ୍କର ଶାଣିତ ସମାଲୋଚନା ଥିଲା ଅନିୟନ୍ତ୍ରିତ ଭାବରେ ବିଦ୍ରୂପାତ୍ମକ ଏବଂ ଦୁଃସହ । ତାଙ୍କର ମାଆ ବିଷପାନ କରି ଆତ୍ମହତ୍ୟା କରିଥିଲେ । ଜଣେ ହୋଟେଲ୍ ନର୍ତ୍ତକୀଙ୍କ ସହ ତାଙ୍କର ବିବାହ ତିଷ୍ଠିରହି ପାରିଲାନି । ସବୁବେଳେ ସେ ମଦ୍ୟପାନରେ ବୁଡି ରହିଥିଲେ ।ଏପରିକି ମଦ୍ୟଶାଳାରୁ ଅନେକ ଥର ତାଙ୍କୁ ତଣ୍ଟିଆ ଦେଇ ବାହାର କରି ଦିଆ ହୋଇଥିଲା । ନିଜର ଏହି ଦୁଃସ୍ଥିତିରୁ ମୁକୁଳିବା ନିମନ୍ତେ ସେ ପ୍ରସିଦ୍ଧ ମନସ୍ତତ୍ତ୍ୱବିତ୍ କାର୍ଲଜଙ୍ଗ୍‌ଙ୍କର ସାହାଯ୍ୟପ୍ରାର୍ଥୀ ହୋଇଥିଲେ । ପାଉଲିଙ୍କ ବିଷୟରେ କାର୍ଲଜଙ୍ଗ୍ ଲେଖିଥିଲେ,......... ''ବିଶ୍ୱବିଦ୍ୟାଳୟର ଜଣେ ଶିକ୍ଷକ, ବଡ଼ ଏକ ପାଖିଆ ବୁଦ୍ଧିଜୀବୀଟିଏ । ତାଙ୍କର ଅବଚେତନ ମନ ସମସ୍ୟା ଜଡ଼ିତ ହୋଇପଡ଼ିଥିଲା । ବିକୃତ ହୋଇପଡ଼ିଥିଲା ସେହି ମନ । ଅନ୍ୟମାନଙ୍କୁ ସେ ନିଜର ଶତ୍ରୁବୋଲି ମନେ କରିଥିଲେ । ବଡ଼ ନିଃସଙ୍ଗ ଅନୁଭବ କରୁଥିଲେ ନିଜକୁ । ସେ ଭାବୁଥିଲେ ଯେ ପ୍ରତ୍ୟେକ ବ୍ୟକ୍ତି ତାଙ୍କ ବିରୁଦ୍ଧରେ ଚଳେଇଛନ୍ତି ଏକ ଭୀଷଣ ଚକ୍ରାନ୍ତ । ନାରୀମାନଙ୍କ ଗହଣରେ ମଧ୍ୟ ସେ ଗ୍ରହଣୀୟ ହୋଇ ପାରୁ ନ ଥିଲେ । ଅବଶ୍ୟ ପାଉଲିଙ୍କୁ ଠିକ୍ ଭାବରେ ବୁଝିବାପାଇଁ ସେମାନଙ୍କ ପାଖରେ ଧୈର୍ଯ୍ୟ ବି ନ ଥିଲା ।''

କ୍ୱାଣ୍ଟମ୍ ପଦାର୍ଥ ବିଜ୍ଞାନ କ୍ଷେତ୍ରକୁ ଛାଡ଼ିଦେଲେ ପାଉଲି ଅନ୍ୟ ଏକ ଦିଗରେ 'ବିଖ୍ୟାତ' ମଧ୍ୟ । ଏହାକୁ କୁହାଯାଏ 'ପାଉଲି ପ୍ରଭାବ' । ବିଜ୍ଞାନର ପୁରାଣରେ ଏହି 'ପାଉଲି ପ୍ରଭାବ' ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଛି । କୁହାଯାଏ ଯେ ଗବେଷଣାଗାରର ଉପକରଣ ଗୁଡିକ ପ୍ରତି ପାଉଲିଙ୍କର ବଡ଼ 'ଆଲର୍ଜି' ଥିଲା । କେହି କେହି ପରିହାସରେ ମଧ୍ୟ ମନ୍ତବ୍ୟ ଦେଇଥାନ୍ତି ଯେ 'ପାଉଲି' ପହଞ୍ଚିଲେ ଉପକରଣ ଗୁଡ଼ିକ ଆଲର୍ଜିଦ୍ୱାରା ଆକ୍ରାନ୍ତ ହୋଇପଡ଼ନ୍ତି !

ପାଉଲି କୁଆଡ଼େ ଗବେଷଣାଗାର ଭିତରେ ଚାଲିଗଲେ ବି କେଉଁ ଉପକରଣରେ ବିସ୍ଫୋରଣ ଘଟେ ତ ଆଉ କେଉଁ ଉପକରଣରେ ଫାଟ ଦେଖାଦିଏ !

କାଚ ନିର୍ମିତ ଉପକରଣ ଫାଟିଯାଏ । ଛୁରି କି ଅନ୍ୟ ଜିନିଷ ଟେବୁଲ୍ ଉପରୁ ତଳକୁ ଖସିପଡ଼େ । ବିଦ୍ୟୁତ୍ ତାରରେ ସ୍ଫୁଲିଙ୍ଗ ପ୍ରକାଶ ପାଏ । ଏଭଳି ମଜାଳିଆ ଘଟଣାଗୁଡ଼ିକୁ ବିଶ୍ୱବିଦ୍ୟାଳୟର ଜଣେ ଅଧକ୍ଷ ଆଦୌ ହାଲୁକା ଭାବରେ ନେଉ ନ ଥିଲେ । ତେଣୁ ପାଉଲି ତାଙ୍କ ବିଶ୍ୱବିଦ୍ୟାଳୟକୁ ଅତିଥି ଭାବରେ ଆସିଲେ ଅଧକ୍ଷ ଜଣକ ପାଉଲିଙ୍କୁ ନିଜ ଗବେଷଣାଗାର ଭିତରକୁ ପୂରେଇ ଦେଉ ନ ଥିଲେ ।

ତଥାକଥିତ ଉକ୍ତ 'ପାଉଲି ପ୍ରଭାବ'ର ଭୂରିଭୂରି ଉଦାହରଣ ଦେଇଥାନ୍ତି ସମକାଳୀନ ପଦାର୍ଥ ବିଜ୍ଞାନୀଗଣ । ପ୍ରଫେସର୍ ଜେ. ଫ୍ରାଙ୍କ୍ ମଧ ନିଜର ଏକ ମଜାଳିଆ ଅନୁଭୂତି ବିଷୟରେ ଉଲ୍ଲେଖ କରିଛନ୍ତି । ଥରେ ଗଟିନ୍‌ଜେନ୍ ଗବେଷଣାଗାରରେ ଗୋଟିଏ ଯନ୍ତ୍ର ହଠାତ୍ ଅଚଳ ହୋଇପଡ଼ିଲା । ଫ୍ରାଙ୍କ୍ ପାଉଲିଙ୍କୁ ଲେଖିଲେ ଯେ ଯେଣୁ ପାଉଲି ସେତେବେଳେ ଜୁରିଚ୍‌ରେ ଥିଲେ, ତେଣୁ ଯନ୍ତ୍ରଟି ଅଚଳ ହୋଇପଡ଼ିବା ନିମନ୍ତେ ତାଙ୍କୁ ଦାୟୀ କରିହେବ ନାହିଁ । ପାଉଲି ଚିଠିଟି ପାଇ ତତ୍‌କ୍ଷଣାତ୍ ଉତ୍ତର ଦେଲେ, ''କିଏ କହିଲା ମୁଁ ଜୁରିଚ୍‌ରେ ଥିଲି ? ମୁଁ ସେଦିନ ରେଲ୍‌ରେ ବସି ଯାତ୍ରା କରୁଥିଲି କୋପେନ୍‌ହେଗେନ୍ । ଯେଉଁ ମୁହୂର୍ତ୍ତରେ ଉକ୍ତ ଯନ୍ତ୍ରଟି ଅଚଳ ହୋଇପଡ଼ିଲା, ଠିକ୍ ସେହି ସମୟରେ ଆମର ଟ୍ରେନ୍ ଅଟକି ଥିଲା ଗଟିନ୍‌ଜେନ୍ ଷ୍ଟେସନ୍‌ରେ !''

ପାଉଲି ଏବଂ କାର୍ଲ୍‌ଜଙ୍ଗ୍ ଥିଲେ ଘନିଷ୍ଠବନ୍ଧୁ । ୧୯୫୮ ମସିହାରେ ମାତ୍ର ୫୮ ବର୍ଷ ବୟସରେ ପାଉଲି ପରଲୋକ ଗମନ କଲେ । ତାଙ୍କ ମୃତ୍ୟୁରେ ଶୋକ ପ୍ରକାଶ କରି ଜଙ୍ଗ୍ ଲେଖିଥିଲେ, ''ପାଉଲିଙ୍କର ଏହି ଅକାଳ ମୃତ୍ୟୁ ବିଜ୍ଞାନ ପାଇଁ ଏକ ଦାରୁଣ ବିପତ୍ତି । କାରଣ ସେ ସମୟରେ ପାଉଲି ଥିଲେ ବିଜ୍ଞାନର ଶ୍ରବଣେନ୍ଦ୍ରିୟ !''





# ଭଗବଦ୍ ଗୀତାର ସ୍ତାବକ ଓପେନ୍‌ହିମର୍

ରବର୍ଟ ଓପେନ୍‌ହିମର୍ ଥିଲେ ଜଣେ ପ୍ରସିଦ୍ଧ ପଦାର୍ଥ ବିଜ୍ଞାନୀ । ଆମେରିକାର ଏହି ବୈଜ୍ଞାନିକ ଜଣକ ପରମାଣୁ ପ୍ରସ୍ତୁତିରେ ପ୍ରମୁଖ ଭୂମିକା ଗ୍ରହଣ କରି ବିଶ୍ୱବିଖ୍ୟାତ ହୋଇ ପାରିଥିଲେ । ତାଙ୍କର ବାପାଥିଲେ ଜଣେ ଧନୀ ଲୁଗା ବ୍ୟବସାୟୀ । ହାର୍ଭାଡ୍‌ରୁ ସ୍ନାତକ ଶିକ୍ଷା ଲାଭ କରିସାରି ସେ ଇଂଲଣ୍ଡ ଚାଲିଗଲେ । ସେଠାରେ କ୍ୟାମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟରେ ଦୁଇବର୍ଷକାଳ ଗବେଷଣା କଲେ ଅନ୍ୟତମ ବିରାଟ ପଦାର୍ଥ ବିଜ୍ଞାନୀ ଅର୍ନେଷ୍ଟ୍ ରଥର୍‌ଫୋର୍ଡ଼ଙ୍କ ଅଧୀନରେ । ତା'ପରେ ଜର୍ମାନୀର ଗଟ୍ଟିନ୍‌ଜେନ୍‌ଠାରେ ଖ୍ୟାତିସଂପନ୍ନ ପଦାର୍ଥ ବିଜ୍ଞାନବିତ୍ ମ୍ୟାକ୍‌ସ୍ ବର୍ନ୍‌ଙ୍କ ତତ୍ତ୍ୱାବଧାନରେ ମଧ୍ୟ ଗବେଷଣା କାର୍ଯ୍ୟ କରିଥିଲେ । ଅତ୍ୟାଧୁନିକ ଗବେଷଣାରେ ନିଜେ ବ୍ରତୀ ରହିବା ସଙ୍ଗେ ସଙ୍ଗେ ବହୁ ଯୁବ ବୈଜ୍ଞାନିକଙ୍କୁ ମାର୍ଗ ଦର୍ଶନ କରାଇବାରେ ସେ ଥିଲେ ପ୍ରବୀଣ । ପରମାଣୁ ଯୁଗର ସମସ୍ୟା ଏବଂ ବିଜ୍ଞାନ ଓ ସଂସ୍କୃତି ମଧ୍ୟରେ ରହିଥିବା ସଂପର୍କ ବିଷୟରେ ମଧ୍ୟ ସେ ଅନେକ ପ୍ରବନ୍ଧ ରଚନା କରିଥିଲେ ।

ଓପେନ୍‌ହିମ୍‌ର ଥାଆନ୍ତି ବର୍କ୍‌ଲେସ୍ଥିତ କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ପ୍ରଫେସର୍ । 'ହିଚେକୋକ୍' ବକ୍ତୃତା' ଦେବା ନିମନ୍ତେ ୧୯୪୦ ମସିହାରେ ନିମନ୍ତ୍ରିତ ହୋଇ ଆସିଥାଆନ୍ତି ପ୍ରଖ୍ୟାତ ପଦାର୍ଥ ବିଜ୍ଞାନୀ ଏନ୍‌ରିକୋ ଫେର୍‌ମି । କଠିନ ବିଷୟକୁ ସରଳ ଭାଷାରେ ଉପସ୍ଥାପନ କରିବାରେ ଫେର୍‌ମି ଥିଲେ ସିଦ୍ଧହସ୍ତ । କିନ୍ତୁ ପଦାର୍ଥ ବିଜ୍ଞାନର ଜଟିଳ ତତ୍ତ୍ୱକୁ ବୁଝି ପାରିବା ଢଙ୍ଗରେ ପରିବେଷଣ କରିପାରନ୍ତିନି ଓପେନ୍‌ହିମର୍ ।

କାଲିଫର୍ଣ୍ଣିଆ ବିଶ୍ୱବିଦ୍ୟାଳୟରେ ରହଣି କାଳରେ ଫେର୍‌ମି ଓପେନ୍‌ହିମର୍‌ଙ୍କ ଛାତ୍ରମାନଙ୍କର କେତୋଟି ଭାଷଣ ଶୁଣିବାର ସୁଯୋଗ ପାଇଥିଲେ । ଭାଷଣର ପ୍ରସଙ୍ଗ ଥିଲା 'ବିଟା ଡିକେ' (ବିଟାକ୍ଷୟ) । ଭାଷଣ ଶୁଣିସାରି ଫେର୍‌ମି ଅନ୍ୟତମ ପଦାର୍ଥ ବିଜ୍ଞାନୀ ଏମିଲିଓ ସର୍ଗେଲ୍‌ଙ୍କୁ ବଡ଼ ମନ ଦୁଃଖରେ କହିଥିଲେ, ''ବୁଝିଲେ ଏମିଲିଓ, ମୁଁ ବୁଢ଼ାହୋଇ ଆସୁଛି । ମୋ ସ୍ମୃତିଶକ୍ତି ଏବଂ ମେଧାରେ ବୋଧହୁଏ କଳଙ୍କି ଧରିଗଲାଣି । କାରଣ ଓପେନ୍‌ହିମର୍‌ଙ୍କ ଛାତ୍ରମାନଙ୍କର ବକ୍ତୃତା ମୁଁ ଜମା ବୁଝିପାରିଲିନି । ଏତେ ସମୟ କଟେଇଲି ସେଠି । ହେଲେ କେବଳ ଶେଷ ବାକ୍ୟଟି ହିଁ ମୋ ମଗଜରେ ପଶିଲା । ତାକୁ ଶୁଣି ମୁଁ ଉତ୍‌ଫୁଲ୍ଲିତ ହୋଇ ଉଠିଲି । ସେ ବାକ୍ୟଟି କଅଣ ଥିଲା ଜାଣିଛ? ବାକ୍ୟଟି ଥିଲା, ''ଏହା ହିଁ ହେଉଛି ଫେର୍‌ମିଙ୍କ ଦ୍ୱାରା ପ୍ରସାରିତ 'ବିଟାକ୍ଷୟ ତତ୍ତ୍ୱ !''

ଥରେ ମେଲ୍‌ବା ଫିଲିପ୍‌ସ୍ ନାମ୍ନୀ ତାଙ୍କର ଗବେଷଣା ସହକାରୀଙ୍କୁ କାର୍‌ରେ ବସେଇ ଓପେନ୍‌ହିମର୍ ବୁଲି ଯାଉଥାନ୍ତି 'ବର୍କଲେ ହିଲ୍' ଆଡ଼େ । ଗୋଟିଏ ଅତି ମନୋହର ସ୍ଥାନରେ ସେ କାର୍‌ରୁ ଓହ୍ଲେଇ ପଡ଼ିଲେ । ସେଇଠି କାର୍‌ଟିକୁ ରଖିଦେଲେ । ଶୀତରୁ ରକ୍ଷା କରିବା ନିମନ୍ତେ ମିସ୍ ଫିଲିପ୍‌ସ୍‌ଙ୍କ ଉପରେ ପକେଇଦେଲେ ମୋଟା କମ୍ବଳଟିଏ । କାର୍‌ରେ ବସି ରହିଲେ ଫିଲିପ୍‌ସ ।ଓପେନ୍‌ହିମର୍ ବାହାରିଗଲେ ସେଠାକାର ଦୃଶ୍ୟ ଉପଭୋଗ କରିବା ପାଇଁ । ଫିଲିପ୍‌ସଙ୍କୁ କହିଗଲେ ଯେ ସେ ଅଳ୍ପ ସମୟ ଭିତରେ ଫେରି ଆସିବେ । ସମୟ ଗଡ଼ି ଚାଲିଲା । ଓପେନ୍‌ହିମର୍‌ଙ୍କର ଦେଖା ନାହିଁ । ତାଙ୍କ ବାଟ ଚାହିଁ ଫିଲିପ୍‌ସ୍‌ଙ୍କ ଆଖିରୁ ପାଣି ମଲାଣି । ସେଇବାଟେ ଯାଉଥିଲେ ପୋଲିସ୍ ଅଫିସର ଆଲବର୍ଟ୍ ନେଭିନ୍ । ଆର୍ଲବର୍ଟ୍‌ଙ୍କୁ ଦେଖି ଫିଲିପ୍‌ସ୍ ତାଙ୍କୁ ଡାକ ପକେଇଲେ । ସେ ପାଖକୁ ଆସିବାରୁ ତାଙ୍କୁ କହିଲେ,''ମୁଁ ଓପେନ୍‌ହିମର୍‌ଙ୍କ ସାଙ୍ଗରେ ଆସିଥିଲି । ସେ ଟିକିଏ ବୁଲିବାକୁ ବାହାରି ଗଲେ । ଏହା ଭିତରେ କେତେ ଘଣ୍ଟା ବିତିଗଲାଣି । ହେଲେ ତାଙ୍କ ଫେରିବାର ନାମଗନ୍ଧ ନାହିଁ'' – ଏଇଆ କହି କାନ୍ଦି ପକେଇଲେ ମିସ୍ ଫିଲିପ୍‌ସ୍ ।

ଆଲବର୍ଟ୍ ନେଭିନ୍ ଚାରିଆଡ଼ ଖୋଜାଖୋଜି ଆରମ୍ଭ କରିଦେଲେ । କିନ୍ତୁ ଓପେନ୍‌ହିମର୍‌ଙ୍କୁ କେଉଁଠି ପାଇଲେନି । ହଠାତ୍ ତାଙ୍କ ମନକୁ ଢୁକିଲା, ''ଓପେନ୍‌ହିମର୍ ବୈଜ୍ଞାନିକମାନଙ୍କ କ୍ଲବ୍‌କୁ ଚାଲିଯାଇ ନାହାନ୍ତି ତ !'' ସେ ଧାଇଁଲେ କ୍ଲବ୍‌କୁ । ସତକୁ ସତ ସେଇଠି ଗୋଟିଏ ଖଟ ଉପରେ ଶୋଇ ଯାଇଥିଲେ ଓପେନ୍‌ହିମର୍ । ହଠାତ୍ ଜଣେ ପୋଲିସ୍ କର୍ମଚାରୀଙ୍କୁ ଦେଖି ସେ ବିସ୍ମୟରେ ଚିତ୍କାର କରି ଉଠିଲେ, ''ମେଲ୍‌ବା !'' ବଡ଼ ଅନୁତପ୍ତ ହୋଇ ସେ କହିଲେ ''ହେ ଭଗବାନ୍, ମୁଁ ମେଲବା କଥା ପୂରାପୂରି ଭୁଲି ଯାଇଛି । ପାହାଡ଼ ପାଖର ଦୃଶ୍ୟରେ ମୁଁ ବଡ଼ ମଜି ଯାଇଥିଲି । ଦୃଶ୍ୟ ଦେଖି ଦେଖି ଚାଲିଛି ତ ଚାଲିଛି । କେତେବେଳେ ଏଠାକୁ ଆସି ମୁଁ ଶୋଇ ପଡ଼ିଛି, ମୋର କିଛି ଖିଆଲ ନାହିଁ ।''

ଓପେନ୍‌ହିମର୍‌ଙ୍କ ବିଷୟରେ ନିଜର ମତାମତ ଦେବାକୁ ଯାଇ ପ୍ରଫେସର୍ କୋନିଗ୍ କହିଛନ୍ତି, ''ସେ ଭାରି ମେଧାବୀ, ଭାରି ଅଭିମାନୀ ମଧ୍ୟ । ସେ ସବୁବେଳେ ନିଜର ଭାବନା ଆଉ ଆଚରଣର ସଂଘର୍ଷରେ କ୍ଷତବିକ୍ଷତ । ଗେଟେ ଥରେ କହିଥିଲେ, 'ଭାବନା ପ୍ରସାରିତ କରେ ସତ, କିନ୍ତୁ ଅଚଳ କରିପକାଏ, ଆଚରଣ ବା କାର୍ଯ୍ୟ ସଚଳ ରଖେ, ହେଲେ କରିପକାଏ ସଂକୁଚିତ । ଓପେନ୍ ହିମର୍‌ଙ୍କ ପ୍ରତି ଗେଟେଙ୍କ ଉକ୍ତି ସଂପୂର୍ଣ୍ଣ ପ୍ରଯୁଜ୍ୟ ।''

ପଲ୍ ଡିରାକ୍‌ଙ୍କ ସହ ତାଙ୍କର କଥାବାର୍ତ୍ତାକୁ ମନେ ପକେଇ ଓପେନ୍‌ହିମର୍ ଖୁବ୍ ଆନନ୍ଦ ପାଇଥାନ୍ତି । ଥରେ କୁଆଡ଼େ ତାଙ୍କୁ ନିରୋଳାକୁ ଡାକିନେଇ ଡିରାକ୍ କହିଥିଲେ, ''ତମେ ଯାହା ସବୁ କହ, ଆଲୋଚନା କର, ମୁଁ ବିନ୍ଦୁ ବିସର୍ଗ କିଛି ବୁଝି ପାରେନି । ଆମେ ବିଜ୍ଞାନୀମାନେ ଯାହା କିଛି ଆବିଷ୍କାର କି ଉଦ୍ଭାବନ କରିଥାଉ, ତାକୁ ଅନ୍ୟ କେହି ଏହା ପୂର୍ବରୁ ସାକାର କରିପାରି ନ ଥାଏ । ହେଲେ ସମସ୍ତେ ବୁଝି ପାରିବା ଢଙ୍ଗରେ ହିଁ ଆମେ

ତାଙ୍କୁ ଭଲ ଭାବରେ ପରିବେଷଣ କରିଥାଉ । କିନ୍ତୁ କବିତା କଥା ଅଲଗା । କବିତାକୁ ଏପରି ଭାବରେ ପରିବେଷଣ କରାଯାଏ ଯେ ତାକୁ ବୁଝିପାରିବା କାଠିକର ପାଠ ।''

ପରବର୍ତ୍ତୀ କାଳରେ ବିମାନ ବାହିନୀର ଅଫିସରମାନେ ଓପେନ୍‌ହିମରଙ୍କର ଶତ୍ରୁ ହୋଇ ଉଠିଲେ । ପରମାଣୁ ଶକ୍ତିକୁ କେବଳ ଆତ୍ମରକ୍ଷା ପାଇଁ ବ୍ୟବହାର କରିବା ନିମନ୍ତେ ସେ ଯୁକ୍ତି ଦେଖାଉଥିଲେ । କିନ୍ତୁ ବିମାନ ବାହିନୀ ପରମାଣୁ ଅସ୍ତ୍ରକୁ ଶତ୍ରୁ ଇଲାକା ଧ୍ୱଂସ କରିବା ନିମନ୍ତେ ବ୍ୟବହାର କରିବା ପାଇଁ ଆଗ୍ରହୀ ଥିଲା । ସେମାନେ ସୁଯୋଗ ଉଣ୍ଡି ତାଙ୍କ ବିରୁଦ୍ଧରେ ଅଭିଯୋଗ ଆଣିଲେ । କମ୍ୟୁନିଷ୍ଟ୍ ମତବାଦୀ ବୋଲି କହି ତାଙ୍କର ବିଚାର ଚାଲିଲା । ସେଥିରେ ତାଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ତେଣୁ ତାଙ୍କ ଗତିବିଧି ଉପରେ ଜାରି କରାଗଲା କଟକଣା । ପରେ କେନେଡିଙ୍କ ରାଷ୍ଟ୍ରପତିତ୍ୱ କାଳରେ ଓପେନ୍‌ହିମରଙ୍କ ପ୍ରତି କରାଯାଇଥିବା ଅନ୍ୟାୟର ସୁବିଚାର ହୋଇଥିଲେ ମଧ୍ୟ ତାଙ୍କୁ ରଖାଯାଇଥିଲା ସନ୍ଦେହର ବଳୟରେ ।

ବର୍କଲେରେ ଥିବା ସମୟରେ ତାଙ୍କର ସାକ୍ଷାତ ଘଟିଥିଲା ଆରଥର୍ ରାଇଡର୍‌ଙ୍କ ସହ । ରାଇଡର୍ ଥିଲେ ଜଣେ ସଂସ୍କୃତ ଭାଷା ବିଶାରଦ । ସେମାନଙ୍କ ମଧ୍ୟରେ ସ୍ଥାପିତ ହୋଇଉଠିଲା ଘନିଷ୍ଠ ବନ୍ଧୁତା । ଆର୍‌ଥର୍ ତାଙ୍କୁ ସଂସ୍କୃତ ଲେଖିବା ପଢ଼ିବା ଶିଖେଇ ଦେଲେ । ଖୁବ୍ ଶୀଘ୍ର ଓପେନ୍‌ହିମର୍ ସଂସ୍କୃତ ଭାଷାକୁ ଆୟତ୍ତ କରିନେଲେ । ସାବଲୀଳ ଭାବରେ ପଢ଼ିଚାଲିଲେ  ଭଗବତ୍ ଗୀତା । ଗୀତା ବିଷୟରେ ନିଜର  ମତାମତ ଦେବାକୁ ଯାଇ ସେ କହିଥିଲେ, ''ବିଭିନ୍ନ ଭାଷାରେ ରଚନା କରାଯାଇଥିବା ଦାର୍ଶନିକ କାବ୍ୟଗୁଡ଼ିକ ମଧ୍ୟରେ ଭଗବଦ୍ ଗୀତା ହିଁ ସର୍ବୋତ୍କୃଷ୍ଟ ଏବଂ ସବୁଠାରୁ ଅଧିକ ରସାଳ ।'' ଏପରିକି ସେ ନିଜର ନୂଆ କାର୍‌ର ନାମ ରଖିଥିଲେ 'ଗରୁଡ଼' । ନିଜର ବନ୍ଧୁମାନଙ୍କୁ କହୁଥିଲେ, 'ଗରୁଡ଼ ହେଉଛନ୍ତି 'ମହାବିଷ୍ଣୁଙ୍କ ବାହନ' ।''

ପ୍ରଥମ ପରମାଣୁ ପରୀକ୍ଷଣ କାଳରେ ଉଦ୍ଭୁତ ଅଶୁଭ ନୀଳ-ଲୋହିତ ବର୍ଣ୍ଣ ଅପସାରିତ ହୋଇ ଯେତେବେଳେ ବାଳ ସୂର୍ଯ୍ୟର ଉଜ୍ଜ୍ୱଳ ସ୍ୱର୍ଣ୍ଣଆଭା ଧୂସର ଧୂମରେ ଆଚ୍ଛାଦିତ ହୋଇଉଠିଲା,  ସେତେବେଳେ ଆତଙ୍କରେ ଶିହରି ଉଠି ଓପେନ୍‌ହିମ୍‌ର ମନେମନେ ଆବୃତ୍ତି କରିଥିଲେ ଗୀତାର ସେହି ପଂକ୍ତି—

''ମୃତ୍ୟୁଃ ସର୍ବହରଶ୍ଚାହମ୍ '' — ଅର୍ଥାତ୍<br>
ମୁଁ ହିଁ ସମସ୍ତଙ୍କର ସଂହାରକାରୀ ମୃତ୍ୟୁ ।''

ସିନେଟ୍ କମିଟି ଆଗରେ ସାକ୍ଷ୍ୟ ଦେଲାବେଳେ ଓପେନ୍ ହିମର୍‌ଙ୍କୁ ପଚରାଗଲା, ''ଡକ୍ଟର, ପରମାଣୁ ବୋମା ବିରୋଧରେ କୌଣସି ପ୍ରତିରକ୍ଷା ବ୍ୟବସ୍ଥା ଅଛିକି ?'' ଓପେନ୍-ହିମ୍‌ର ଉତ୍ତର ଦେଲେ, ''ହଁ, ଅଛି ।''

''କଅଣ ତେବେ ସେ ପ୍ରତିରକ୍ଷା ବ୍ୟବସ୍ଥା ?'' – ପୁଣି ପ୍ରଶ୍ନ କଲେ କମିଟିର ସଦସ୍ୟମାନେ । ଓପେନ୍‌ହିମ୍‌ର ଗମ୍ଭୀର ତଥା ଦୃଢ଼ କଣ୍ଠରେ ଜବାବ ଦେଲେ – ''ଶାନ୍ତି ।''





# ସାମ୍ବାଦିକତା, ସାମ୍ବାଦିକ ସମ୍ମିଳନୀ ଏବଂ ବୈଜ୍ଞାନିକ

ବିଶ୍ୱର ବହୁ ପ୍ରଖ୍ୟାତ ରାଜନୀତିଜ୍ଞ ନିଜ ଜୀବନର କୌଣସି ନା କୌଣସି ସମୟରେ ସମ୍ବାଦପତ୍ର ପ୍ରକାଶନ ସହ ସଂପୃକ୍ତ ରହିଥିବାର ଜଣାଯାଏ । ପୁଣି କିଏ ଥାଏ ଖବର କାଗଜ ବିକାଳି ତ ଆଉ କିଏ ସାମ୍ବାଦିକ । ଅନେକ ତ ପ୍ରତିଷ୍ଠାତା ସମ୍ପାଦକ କିମ୍ବା ସମ୍ପାଦକ ହିସାବରେ ଦାୟିତ୍ୱ ନିର୍ବାହ କରିଥିବାର ପ୍ରମାଣ ରହିଛି । ତେବେ ସେମାନେ ସାମ୍ବାଦିକ ଏବଂ ସମ୍ବାଦପତ୍ର ସହ ସଂପର୍କ ରଖିବାରେ ବିଶେଷ ଅସ୍ୱାଭାବିକତା କିଛି ନାହିଁ । କିନ୍ତୁ ପୃଥିବୀର କେତେକ ପ୍ରତିଷ୍ଠିତ ବୈଜ୍ଞାନିକ ମଧ୍ୟ ସାମ୍ବାଦିକତା ଏବଂ ସମ୍ବାଦପତ୍ର ପ୍ରକାଶନରେ ରୁଚି ରଖିଥିବାର ଦୃଷ୍ଟାନ୍ତ ଦେଖିବାକୁ ମିଳେ । ଏହାଛଡ଼ା ବୈଜ୍ଞାନିକ ମାନଙ୍କର ସାମ୍ବାଦିକ ମାନଙ୍କ ସହ ସାକ୍ଷାତକାର ମଧ୍ୟ ବେଶ୍ କୌତୂହଳୋଦ୍ଦୀପକ ।

ଏଇ ଆଲ୍‌ଭା ଥୋମାସ୍ ଏଡିସନ୍‌ଙ୍କ କଥା ଶୁଣନ୍ତୁ । ସେ ହେଉଛନ୍ତି ବିଜୁଳିବତିର ଉଦ୍ଭାବକ । ଛୋଟବଡ଼ ଅନେକ ଉଦ୍ଭାବନ ସହ ତାଙ୍କର ନାଁ ଜଡ଼ିତ । ସେ ନିଜର ଜୀବନ ଆରମ୍ଭ କରିଥିଲେ ଜଣେ ସମ୍ବାଦପତ୍ର ବିକ୍ରେତା ହିସାବରେ । ବାରବର୍ଷ ବୟସବେଳୁ ଆମେରିକାର ଗ୍ରାଣ୍ଡଟ୍ରଙ୍କ ରେଲ୍‌ୱେରେ ସେ ବିକୁଥିଲେ ଖବରକାଗଜ । ଜଣେ ରେଳବାଇ ଅଫିସରଙ୍କ କୃପାରୁ ରେଳଯାତ୍ରୀମାନଙ୍କ ଜିନିଷପତ୍ର ବୋଝେଇ ହେଉଥିବା କମ୍ପାର୍ଟମେଣ୍ଟ୍ ଭିତରେ ହିଁ ସେ ସ୍ଥାପନ କରିଥିଲେ ନିଜର ଛୋଟିଆ ଛାପାଖାନାଟିଏ । ସହଜରେ ନେବା ଆଣିବା କରିହେଉଥିବା ସେହି ଛାପାଖାନାରେ ମୁଦ୍ରିତ ହେଉଥିଲା 'ହେରାଲ୍‌ଡ୍' ନାମକ କ୍ଷୁଦ୍ର ସମ୍ବାଦପତ୍ର ।

ଏଡିସନ୍ ଥିଲେ ଉକ୍ତ ସମ୍ବାଦପତ୍ରର ସାମ୍ବାଦିକ, ସ୍ତମ୍ଭକାର, ଅକ୍ଷର ଖଞ୍ଜାଳି, ସମ୍ପାଦକ, ମୁଦ୍ରାକର, ପ୍ରକାଶକ ଏବଂ ବିକ୍ରେତା । ବିଭିନ୍ନ ଷ୍ଟେସନରେ ନିଯୁକ୍ତ ଥିବା ଟେଲିଗ୍ରାଫ୍ ଅପରେଟରମାନଙ୍କଠାରୁ ତାଜା ଖବରସବୁ ସଂଗ୍ରହ କରି ସେ ସାଙ୍ଗେ ସାଙ୍ଗେ ସେଗୁଡ଼ିକୁ ନିଜ ଖବରକାଗଜରେ ଛାପି ଦେଉଥିଲେ । ଟଟକା ସମ୍ବାଦ ପରିବେଷଣ କରୁଥିବାରୁ 'ହେରାଲ୍‌ଡ୍'ର ଆଦର ଏବଂ କାଟ୍‌ତି ଥିଲା ଖୁବ୍ ବେଶୀ । ଖବର କାଗଜଟି ବିଷୟରେ ଲଣ୍ଡନ୍‌ର 'ଟାଇମ୍‌ସ୍' ପତ୍ରିକା ମତ ଦେଇଥିଲା – 'ହେରାଲ୍‌ଡ୍' ହେଉଛି ଚଳନ୍ତା ରେଳଗାଡ଼ି ଭିତରେ ମୁଦ୍ରିତ ହେଉଥିବା ବିଶ୍ୱର ସର୍ବପ୍ରଥମ ସମ୍ବାଦପତ୍ର ।

ଦିନେ ଦୁଇକାଖ ସନ୍ଧିରେ ଦୁଇଗୋଛା 'ହେରାଲ୍ଡ଼' ଚାପି ଟ୍ରେନ୍ ଭିତରକୁ ଉଠିବାବେଳେ ଏଡିସନ୍ ଦୁର୍ଘଟଣାଗ୍ରସ୍ତ ହେଲେ ଓ ତାଙ୍କ ମୁଣ୍ଡରେ ମାଡ଼ ବାଜି ସେ ସବୁଦିନ ପାଇଁ କାଲ ହୋଇଗଲେ । ଏ' ବିଷୟରେ ଏଡିସନ୍‌ଙ୍କର ମନ୍ତବ୍ୟ ଥିଲା, ''ବଧିର ହୋଇଯିବା ମୋ ପାଇଁ ଥିଲା ଏକ ଆଶୀର୍ବାଦ । କାରଣ ଶୁଣିପାରୁ ନଥିବାରୁ ବାହାରର ଶବ୍ଦ ମୋ' ଗବେଷଣା କାର୍ଯ୍ୟରେ ଅନ୍ତରାୟ ହୋଇପାରୁ ନ ଥିଲା । ''

ଆମେରିକାର ଅର୍‌ଭିଲ୍ ରାଇଟ୍ ଏବଂ ଉଇଲ୍‌ବର୍ ରାଇଟ୍ ନାମକ ଦୁଇଭାଇ ନିଜର ତଥା ବିଶ୍ୱର ପ୍ରଥମ ଉଡ଼ାଜାହାଜ ତିଆରିକରି ଆକାଶରେ ଉଡ଼ିବାରେ ସଫଳତା ହାସଲ କରିଥିଲେ । ସ୍କୁଲ୍‌ରେ ଛାତ୍ର ଥିବାବେଳେ ଅର୍‌ଭିଲ୍ ରାଇଟ୍ ନିଜ ହାତ ତିଆରି ଛାପାଖାନା ସାହାଯ୍ୟରେ ପ୍ରକାଶ କରିଥିଲେ ସାପ୍ତାହିକ ସମ୍ବାଦପତ୍ରଟିଏ । ପରେ ପରେ ଏହି ପ୍ରକାଶନରେ ସାମିଲ୍ ହୋଇଥିଲେ ତାଙ୍କର ଭାଇ ଉଇଲ୍‌ବର୍ ।



ଜୀବନରେ ମାତ୍ର ଦୁଇବର୍ଷ ପାଇଁ ପାରମ୍ପରିକ ବିଦ୍ୟାଳୟଶିକ୍ଷା ପ୍ରାପ୍ତ ହେବାର ସୁଯୋଗ ମିଳିଥିଲା ବିଶିଷ୍ଟ ରାଷ୍ଟ୍ରନୀତିଜ୍ଞ ବେଞ୍ଜାମିନ୍ ଫ୍ରାଙ୍କ୍‌ଲିନ୍‌ଙ୍କୁ । କିନ୍ତୁ ନିଜର ଆନ୍ତରିକ ପ୍ରଚେଷ୍ଟା ଏବଂ ଅଧ୍ୟବସାୟଦ୍ୱାରା ଜଣେ ମୁଦ୍ରାକର, ସ୍ତମ୍ଭକାର, ଲେଖକ, କୂଟନୀତିଜ୍ଞ, ଦାର୍ଶନିକ ତଥା ବୈଜ୍ଞାନିକ ହିସାବରେ ଅଶେଷ କୃତିତ୍ୱ ଅର୍ଜନ କରିପାରିଥିଲେ ସେ । ସେ ଥିଲେ ବାଇଫୋକାଲ୍ ଚଷମା, ଉନ୍ନତ ଧରଣର ଷ୍ଟୋଭ୍ ଆଦି ଅନେକ ଉଦ୍ଭାବନର ଜନକ । ତେବେ ବିଦ୍ୟୁତ୍‌ଶକ୍ତି ସଂପର୍କିତ ଗବେଷଣା କ୍ଷେତ୍ରରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ । ପରିବାରର ଉତ୍କଟ ଦାରିଦ୍ର୍ୟ ଯୋଗୁ ପଢ଼ାପଢ଼ି କରି ନ ପାରି ବୋଷ୍ଟନ୍ ସହରରୁ ପ୍ରକାଶ ପାଉଥିବା 'ନିୟୁ ଇଂଲଣ୍ଡ୍ କୁରାଣ୍ଟ୍ ' ନାମକ ସମ୍ବାଦପତ୍ର ପ୍ରକାଶନ ସଂସ୍ଥାରେ ଜଣେ ମୁଦ୍ରାକର—ଶିକ୍ଷାନବିସ ଭାବରେ ଯୋଗଦେଲେ ଫ୍ରାଙ୍କ୍‌ଲିନ୍ ।

ଫ୍ରାଙ୍କ୍‌ଲିନ୍‌ଙ୍କର ତ ବିଶେଷ ଶିକ୍ଷାଦୀକ୍ଷା ନ ଥିଲା । ତେଣୁ ପ୍ରଥମେ ପ୍ରଥମେ ସେହି ସମ୍ବାଦପତ୍ର ଅଫିସ୍‌ରେ ହିଁ ସେ ବିଭିନ୍ନ ଶବ୍ଦ ସହ ପରିଚିତ ହେଲେ । ନିଜ ଦାୟିତ୍ୱ ନିର୍ବାହ କରିବା ସଙ୍ଗେ ସଙ୍ଗେ ପ୍ରତିଦିନ କିଛି ସମୟ ବ୍ୟୟ କରୁଥିଲେ ପଢ଼ାପଢ଼ିରେ । ଆସ୍ତେ ଆସ୍ତେ ଲେଖାଲେଖି କରିବାରେ ତାଙ୍କର ରୁଚି ବଢ଼ିଲା । ତାଙ୍କ ଲେଖାମାନ ମଧ ପ୍ରକାଶ ପାଇଲା

ଉକ୍ତ ସମ୍ବାଦପତ୍ରରେ । ଲେଖାଗୁଡ଼ିକ ଥିଲା ମୁଖ୍ୟତଃ ବ୍ୟଙ୍ଗାତ୍ମକ । କିନ୍ତୁ ସେଥିରେ ଭରି ରହିଥିଲା ସ୍ୱତନ୍ତ୍ର ଚାତୁର୍ଯ୍ୟ ଓ ଶାଣିତ ସମାଲୋଚନା । ସେ ନିଜଦ୍ୱାରା ଲିଖିତ ସ୍ତମ୍ଭଟିର ଶିରୋନାମା ରଖିଥିଲେ 'ବୋଷ୍ଟନ୍ ଏଷ୍ଟାବ୍ଲିସ୍‌ମେଣ୍ଟ୍' । ସ୍ତମ୍ଭର ଶେଷରେ ନିଜର ନାମ ଉଲ୍ଲେଖ ନ କରି 'ସାଇଲେନ୍‌ସ୍ ଡୁ'ଗୁଡ୍' (Silence Dogood) — ଏହି ଛଦ୍ମ ନାମଟିକୁ ବ୍ୟବହାର କରୁଥିଲେ ।

'ଆପେକ୍ଷିକ ତତ୍ତ୍ୱ'ର ଆବିଷ୍କାରକ ଥିଲେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଲବର୍ଟ୍ ଆଇନ୍‌ଷ୍ଟାଇନ୍ । ଆଇନ୍‌ଷ୍ଟାଇନ୍ ନାଜି ଅତ୍ୟାଚାରରୁ ରକ୍ଷା ପାଇବା ନିମନ୍ତେ ବର୍ଲିନ୍‌ରୁ ପଳେଇ ଆସିଲେ ଆମେରିକାକୁ । ଆମେରିକା ଭୂଇଁରେ ପାଦ ଦେବାକ୍ଷଣି ତାଙ୍କୁ ଘେରିଗଲେ ସାମ୍ବାଦିକମାନେ । ପ୍ରଶ୍ନ ପଚାରି ଚାଲିଲେ ସେମାନେ । ସାମ୍ବାଦିକଙ୍କର ପ୍ରଶ୍ନ ଏବଂ ଆଇନ୍‌ଷ୍ଟାଇନ୍‌ଙ୍କ ପ୍ରଦତ୍ତ ଉତ୍ତରର କିୟଦଂଶ ନିମ୍ନରେ ଉଦ୍ଧୃତ ହୋଇଛି ।

ପ୍ରଶ୍ନ — ଆମେରିକା ଆପଣଙ୍କୁ କେମିତି ଲାଗୁଛି ?

ଉତ୍ତର — ମୁଁ ତ ଏ' ଯାବତ୍ ଦେଖିବାକୁ ପାଇନି ଆମେରିକାକୁ ।

ପ୍ର — ଆପଣ ଏଠାରେ କେତେଦିନ ପାଇଁ ରହିବେ ?

ଉ — ତା'ତ ମୁଁ ଏ ପର୍ଯ୍ୟନ୍ତ ଜାଣିନି ।

ପ୍ର — ମାତ୍ର ଗୋଟିଏ ବାକ୍ୟରେ ଆପେକ୍ଷିକ ତତ୍ତ୍ୱକୁ ଆପଣ ବିଶ୍ଳେଷଣ କରି ପାରିବେ ?

ଉ — ନା ।

ପ୍ର — ଏବେ ମହିଳାମାନେ ଆପେକ୍ଷିକ ତତ୍ତ୍ୱ ବିଷୟରେ ଖୁବ୍ ଆଗ୍ରହୀ ହୋଇ ଉଠିଛନ୍ତି । କଅଣ ଏହାର ରହସ୍ୟ ? (ବେଶ୍ ହାସ୍ୟରୋଳ ସୃଷ୍ଟି ହେଲା ଏ' ପ୍ରଶ୍ନଟିରେ )

ଉ— ଅତି ସହଜ । ଆପଣମାନେ ତ ଜାଣନ୍ତି ଯେ ମହିଳାମାନେ ପ୍ରତିବର୍ଷ ନୂଆ ନୂଆ ଫେସନ୍ ପ୍ରତି ଆଗ୍ରହ ଦେଖାଇଥାନ୍ତି । ହୁଏତ ସେମାନଙ୍କ ଦୃଷ୍ଟିରେ ଏ ବର୍ଷର ଫେସନ୍‌ଟା ହେଉଛି ଆପେକ୍ଷିକ ତତ୍ତ୍ୱ !

ଶ୍ରୀମତୀ ବାରବରା ମ୍ୟାକ୍‌କ୍ଲିନ୍‌ଟକ୍ ଥିଲେ ଆମେରିକାର ଜଣେ ଆନୁବଂଶ ବିଜ୍ଞାନୀ । ୧୯୮୩ ମସିହାରେ ତାଙ୍କୁ ଚିକିତ୍ସା ବିଜ୍ଞାନର ନୋବେଲ୍ ପୁରସ୍କାର ମିଳିଥିଲା । ନୋବେଲ୍ ପୁରସ୍କାର ପାଇବା ବେଳକୁ ମ୍ୟାକ୍‌କ୍ଲିନଟକ୍‌ଙ୍କୁ ହୋଇଥିଲା ୭୯ ବର୍ଷ ବୟସ । ଉକ୍ତ ପୁରସ୍କାର ପାଇବା ପରେ ପରେ ଅନୁଷ୍ଠିତ ହୋଇଥିବା ଏକ ସାମ୍ବାଦିକ ସମ୍ମିଳନୀରେ ତାଙ୍କୁ ଜଣେ ସାମ୍ବାଦିକ ପ୍ରଶ୍ନକଲେ, ''ମହାଶୟା, ନୋବେଲ୍ ପୁରସ୍କାରରୁ ପ୍ରାପ୍ତ ବିପୁଳ ପରିମାଣର ଅର୍ଥକୁ ଆପଣ ବ୍ୟୟ କରିବେ କିପରି ?''

ଟିକିଏ ଗମ୍ଭୀର ହୋଇଯାଇ ମ୍ୟାକ୍କ୍ଲିନ୍‌ଟକ୍ ଉତ୍ତର ଦେଇଥିଲେ, ''ମୁଁ ଯେତେବେଳେ ପିଲାଥିଲି, ସେତେବେଳେ ପ୍ରାୟତଃ କହୁଥିଲି, ''ମୋର ଲୋଡ଼ା ଦୁଇଟି ମାତ୍ର ଜିନିଷ – ଗୋଟିଏ ହେଲା ମୋଟରକାର ଏବଂ ଅନ୍ୟଟି ହଲେ ଚଷମା । ଏ' ବୟସରେ ମୋଟର ଗାଡ଼ି ପ୍ରତି ମୋର ଆଉ ମୋହ ନାହିଁ । କିନ୍ତୁ ଚଷମାକୁ ଛାଡ଼ି ତ ଚଳିପାରିବିନି । ତେଣୁ ପୁରସ୍କାର ଅର୍ଥରୁ ଆଗେ କିଣି ପକେଇବି ଭଲ ଚଷମା ହଲେ !''



ସାର୍ ଆଲେକ୍‌ଜାଣ୍ଡାର ଫ୍ଲେମିଙ୍ଗ୍ ଆବିଷ୍କାର କରିଥିଲେ ପେନିସିଲିନ୍ ନାମକ ଆଣ୍ଟିବାୟୋଟିକ୍ ଔଷଧ । ସେଥିପାଇଁ ତାଙ୍କୁ ନୋବେଲ ପୁରସ୍କାର ମିଳିଥିଲା । ଫ୍ଲେମିଙ୍ଗ୍ ଥରେ ବୁଲିଯାଇଥାନ୍ତି ନିୟୁୟର୍କ । ଏ ଖବର କୌଣସି ପ୍ରକାରେ ମିଳିଗଲା ଦୁଇଜଣ ସାମ୍ବାଦିକଙ୍କୁ । ଫ୍ଲେମିଙ୍ଗ୍‌ଙ୍କର ଏକ ସାକ୍ଷାତ୍‌କାର ଲିପିବଦ୍ଧ କରିବା ଉଦ୍ଦେଶ୍ୟରେ ସେ ଦୁଇଜଣ ଫ୍ଲେମିଙ୍ଗ୍‌ଙ୍କ ନିକଟରେ ପହଞ୍ଚିଗଲେ । ସେତେବେଳକୁ ସକାଳ ଜଳଖିଆ ଖାଇବା ନିମନ୍ତେ ତରତର ହେଉଥାନ୍ତି ସେ । ଜଣେ ଖୁବ୍ କୌତୂହଳୀ ହୋଇ ପଚାରି ଦେଲେ, ''ଆଜ୍ଞା, ଠିକ୍ ଏଇ ମୁହୂର୍ତ୍ତରେ ଆପଣଙ୍କ ମନକୁ କି' ଭାବନା ଆସୁଛି ? ଅର୍ଥାତ୍ ଆମେ ଜାଣିବାକୁ ଚାହୁଁଛୁ ଯେ ପ୍ରାତଃ ଭୋଜନ କରିବାକୁ ପ୍ରସ୍ତୁତ ହେଉଥିବାବେଳେ ଆନ୍ତର୍ଜାତିକ ଖ୍ୟାତି ସଂପନ୍ନ ଜଣେ ବିଜ୍ଞାନୀ କେଉଁ ବିଷୟରେ ଚିନ୍ତା କରୁଛନ୍ତି ।''

ପ୍ରଶ୍ନଟି ଶୁଣି ବେଶ୍ ଉଲ୍ଲସିତ ହୋଇ ଉଠିଲେ ଫ୍ଲେମିଙ୍ଗ୍ । କିଛି ସମୟପାଇଁ ସେ ନିରବ ରହିଗଲେ । ତା'ପରେ ଉତ୍ତର ଦେଲେ, ''ଓଃ, ଖୁବ୍ ଏକ ଗୁରୁତ୍ୱପୂର୍ଣ୍ଣ ଚିନ୍ତା ଏବେ ଆବୋରି ବସିଛି ମୋ ମୁଣ୍ଡକୁ ।''

ସେହି ଗୁରୁତ୍ୱପୂର୍ଣ୍ଣ ବିଷୟଟି କ'ଣ, ତାହା ଜାଣିବା ନିମନ୍ତେ ଆହୁରି ପାଖକୁ କାନ ନେଇ ଆସିଲେ ସାମ୍ବାଦିକ ବନ୍ଧୁଦ୍ୱୟ । ମୁରୁକିହସାଟିଏ ଦେଇ ଫ୍ଲେମିଙ୍ଗ୍ କହିଲେ, ''ମୁଁ ଏବେ ଭାବୁଛି ଯେ-ଆଜିର ଏହି ସକାଳ ଜଳଖିଆରେ ମୋ ପକ୍ଷେ ଗୋଟିଏ ଅଣ୍ଡା ଖାଇବା ଠିକ୍ ହେବ, ନା ଖାଇନେବି ଯୋଡ଼ିଏ ଅଣ୍ଡା !''

ରେଡିଓରେ ବ୍ୟବହୃତ ହେଉଥିବା 'ଥର୍ମଆୟୋନିକ୍ ଭାଲ୍‌ଭ୍'ର ଉଦ୍ଭାବକ ଥିଲେ ଇଂରେଜ ପଦାର୍ଥବିଜ୍ଞାନବିତ୍ ତଥା ଇଞ୍ଜିନିୟର୍ ସାର୍ ଜନ୍ ଆମ୍ବ୍ରୋଜ୍ ଫ୍ଲେମିଙ୍ଗ୍ । ଅକ୍‌ସଫୋର୍ଡ୍

ୟୁନିଭରସିଟି ପ୍ରେସ୍ ପ୍ରକାଶନ ତରଫରୁ ତାଙ୍କର ଏକ ସାକ୍ଷାତ୍‌କାର ଲିପିବଦ୍ଧ କରିବା ନିମନ୍ତେ ନୋଟ୍ ବୁକ୍ ଏବଂ କଲମ ଖୋଲିଲେ ସାମ୍ବାଦିକ ଜଣକ । ସେ ପ୍ରଶ୍ନ ପଚାରିବାକୁ ଉଦ୍ୟତ ହେବାକ୍ଷଣି ହଠାତ୍ ତାଙ୍କୁ ସେଥିରୁ ବିରତ କରେଇ ଫ୍ଲେମିଙ୍ଗ୍ ନିଜ ଆଡୁ ପ୍ରଶ୍ନ କଲେ, ''ବନ୍ଧୁ, ସାକ୍ଷାତ୍‌କାର ତ ଦେବି । ତେବେ ସାକ୍ଷାତକାରରେ ମୁଁ ଯେଉଁ ସବୁ ପରାମର୍ଶ ଦେବି ସେ ବାବଦକୁ ତୁମେ ମୋତେ କେତେ ପାରିଶ୍ରମିକ ଦେବ ?''

ପାରିଶ୍ରମିକର ସର୍ତ୍ତ ଶୁଣି ବଡ଼ ହତ୍‌ବଡ଼େଇଗଲେ ସେ । କଅଣ ଉତ୍ତର ଦେବେ ସେକଥା ଭାବୁ ଭାବୁ ଆଖି ନଚେଇ ଦୁଷ୍ଟାମିର ହସ ହସି ଫ୍ଲେମିଂ କହିଲେ, ''ଶୁଣ । ଆମେ ବୈଜ୍ଞାନିକମାନେ କ'ଣ ବେଠିଆ ? ସବୁବେଳେ ଖାଲି ବିନାସ୍ୱାର୍ଥରେ କାମ କରିଚାଲୁଥିବୁ ? ମୁଁ ଯଦି ଓକିଲଟିଏ ହୋଇଥାନ୍ତି, ମୋ'ଠାରୁ ପରାମର୍ଶ ନେବାପାଇଁ ତୁମକୁ ଫିସ୍ ଦେବାକୁ ପଡ଼ି ନ ଥାନ୍ତା ? କ'ଣ ? ମୁଁ ଠିକ୍ କହୁଛି ନା ଭୁଲ୍ କହୁଛି ?''

ରେଡିଅମ୍ ଆବିଷ୍କାର କରିଥିବାରୁ ଫ୍ରାନ୍‌ସର ମେରୀ କ୍ୟୁରୀ ଓ ତାଙ୍କର ସ୍ୱାମୀ ପେରୀ କ୍ୟୁରୀଙ୍କୁ ୧୯୦୩ ମସିହାରେ ପଦାର୍ଥବିଜ୍ଞାନ ପାଇଁ ନୋବେଲ ପୁରସ୍କାର ମିଳିଥିଲା ।ଏହାର ଆଠବର୍ଷ ପରେ ୧୯୧୧ ମସିହାରେ ମ୍ୟାଡାମ୍ କ୍ୟୁରୀ ପୁନର୍ବାର ନୋବେଲ ପୁରସ୍କାର ପାଇଲେ ରସାୟନ ବିଜ୍ଞାନରେ । ଦୁଇଥର ନେବେଲ୍ ପୁରସ୍କାର ପାଇବାରେ ସେ ହେଉଛନ୍ତି ବିଶ୍ୱର ପ୍ରଥମ ଏବଂ ଏକମାତ୍ର ମହିଳା । ତାଙ୍କ ବିଷୟରେ ନିଜର ମତାମତ ଦେବାକୁ ଯାଇ ଅନ୍ୟତମ ନୋବେଲ ବିଜେତା ଆଇନ୍‌ଷ୍ଟାଇନ୍ କହିଥିଲେ, ''ମେରୀ ହେଉଛନ୍ତି ଏକମାତ୍ର ପ୍ରଖ୍ୟାତଯଶା ବ୍ୟକ୍ତିତ୍ୱ ଯାହାଙ୍କୁ ଯଶ କଳଙ୍କିତ କରିପାରିବନି ।''

ମ୍ୟାଡାମ୍ କ୍ୟୁରୀ ଲୋକ ଲୋଚନର ଅନ୍ତରାଳରେ ରହିବାକୁ ବେଶୀ ପସନ୍ଦ କରୁଥିଲେ । ଏପରିକି ଅଧିକାଂଶ ସମୟରେ ସେ ନିଜକୁ ଅନ୍ୟମାନଙ୍କଠାରୁ ଲୁଚେଇ ରଖୁଥିଲେ ।

ଥରେ ଛୁଟି କଟେଇବା ନିମନ୍ତେ ସହର ବାହାରକୁ ଯାଇଥାନ୍ତି କ୍ୟୁରୀ । ବ୍ରିଟାନିଠାରୁ କିଛି ଦୂରରେ ଥିବା ଏକ ଅଖ୍ୟାତ କେଉଟ ବସ୍ତିରେ ରହୁଥାନ୍ତି ସେ । କିନ୍ତୁ ତାଙ୍କର ଗୋପନ ରହଣି ସ୍ଥାନ ବିଷୟରେ କୌଣସି ସୂତ୍ରରୁ ଖବର ପାଇଗଲେ ଜଣେ ସାମ୍ବାଦିକ । କାଳ ବିଳମ୍ବ ନ କରି ସେହି ଆମେରିକୀୟ ସାମ୍ବାଦିକ ଜଣକ ଛୁଟିଲେ ଉକ୍ତ କେଉଟ ବସ୍ତିକୁ । କ୍ୟୁରୀ ରହୁଥିବା କୁଡ଼ିଆକୁ ଠାବ କରି ପହଞ୍ଚିଗଲେ କୁଡ଼ିଆ ଦ୍ୱାରରେ ।

କୁଡ଼ିଆ ସାମନା ପାହାଚ ଉପରେ ଫୁଙ୍ଗୁଳା ପାଦରେ ବସିଥିଲେ ଜଣେ ଅନାକର୍ଷଣୀୟା ମହିଳା । ଦେହରେ ତାଙ୍କର ଲୋଚାକୋଚା ହୋଇଯାଇଥିବା ମଇଳା ପୋଷାକ । ତାଙ୍କୁ ଦେଖି ସାମ୍ବାଦିକ ଜଣକ ପ୍ରଶ୍ନ କଲେ –

''ତୁମେ କ'ଣ ଏ' ଘରର ଚାକରାଣୀ ?''

''ଆଜ୍ଞା, ହଁ,'' ଉତ୍ତର ଦେଲେ ମହିଳା ଜଣକ ।''

''ମାଆ ଘରେ ଅଛନ୍ତି ?

''ନା, ଘରେ ନାହାନ୍ତି । ଯାଇଛନ୍ତି ବାହାରକୁ ।''

''ଆଚ୍ଛା, ତାଙ୍କ ବିଷୟରେ ତୁମେ ଯାହା ଯାହା ସବୁ ଜାଣିଛ, ମୋତ ଟିକିଏ କହିଦେବ ?'' – ଏତିକି ପଚାରି ଦେଇ ସାମ୍ବାଦିକ ବାହାର କଲେ ତାଙ୍କର ଟିପାଖାତା ଏବଂ କଲମ ।

ମହିଳା ଜଣକ ଉତ୍ତର ଦେଲେ, ''ନା, ତାଙ୍କ ବିଷୟରେ ମୁଁ ବିଶେଷ କିଛି ଜାଣିନି । ତେବେ ମାଆ କହିଯାଇଛନ୍ତି ଯେ ଯଦି କୌଣସି ସାମ୍ବାଦିକ କେବେ କଛି ପଚାରନ୍ତି ତେବେ ତାଙ୍କୁ କହିଦେବୁ –

''ଲୋକଙ୍କ ବ୍ୟକ୍ତିଗତ ଜୀବନ ବିଷୟରେ କମ୍ କୌତୂହଳୀ ହୋଇ ସେମାନଙ୍କ କାର୍ଯ୍ୟଧାରା ଓ ଧାରଣା ପ୍ରତି ବେଶୀ କୌତୂହଳୀ ହେବା ଅଧିକ ସ୍ପୃହଣୀୟ ।''

ଦାଣ୍ଡ ପାହାଚ ଉପରେ ବସିଥିବା ମଳିନ ବସନା ମହିଳା ଜଣକ ଥିଲେ ନିଜେ ମ୍ୟାଡାମ୍ କ୍ୟୁରୀ ।

ଲାଭୋୟସିଅର୍ ଥିଲେ ଜଣେ ଫରାସୀ ରସାୟନବିତ୍ । ଦହନ କାର୍ଯ୍ୟରେ ଅମ୍ଳଜାନ ଲୋଡ଼ା ବୋଲି ସେ ହିଁ ପ୍ରଥମେ ଆବିଷ୍କାର କରିଥିଲେ । ସେ ମଧ୍ୟ ଦର୍ଶାଇଥିଲେ ଯେ ଶ୍ୱାସକ୍ରିୟା ଦ୍ୱାରା ହିଁ ଶରୀର ଅମ୍ଳଜାନ ଗ୍ରହଣ କରି ଅଙ୍ଗାରକାମ୍ଳ ନିଷ୍କାସନ କରିଥାଏ । ପୁଷ୍ଟିବିଜ୍ଞାନର ଜନକ ରୂପେ ମଧ୍ୟ ମାନ୍ୟତା ଦିଆଯାଏ ଲାଭୋୟସିୟର୍‌ଙ୍କୁ ।

୧୭୯୧ ମସିହା ଜାନୁଆରୀ ୨୭ ତାରିଖ । ଫ୍ରାନ୍ସର ଏକ ଖବର କାଗଜ ସେଦିନ ଲାଭୋୟସିଅର୍‌ଙ୍କୁ ଅତି କଟୁଭାଷାରେ ସମାଲୋଚନା କରି ସମ୍ବାଦ ପ୍ରକାଶ କରିଥାଏ । ଉକ୍ତ ସମ୍ବାଦଟି ତାଙ୍କ ପ୍ରତି ଖୁବ୍ ମର୍ଯାଦାହାନିକର ହୋଇଥିଲେ ମଧ୍ୟ ସେ ଏଥିପାଇଁ ଆଦୌ ବିବ୍ରତ ହୋଇ ନ ଥିଲେ । ବରଂ ''ଆହତ ଅହଙ୍କାରର ସଶବ୍ଦ ବିଦାରଣ'' ବୋଲି ବ୍ୟକ୍ତ କରି ଉପେକ୍ଷା କରିଥିଲେ ଉକ୍ତ ସମ୍ବାଦକୁ । ସେତେବେଳେ ଉକ୍ତ ସମ୍ବାଦପତ୍ରର ସମ୍ପାଦକ ଥିଲେ ଜିନ୍ ପଲ୍ ମାରଟ୍ ନାମକ ଜଣେ ବ୍ୟକ୍ତି ।

ଫ୍ରାନ୍ସର ଖ୍ୟାତନାମା ' ଏକାଡେମୀ ଅଫ୍ ସାଇନ୍ସ୍'ର ସଦସ୍ୟଭୁକ୍ତ ହେବା ନିମନ୍ତେ ଏକଦା ଆବେଦନ କରିଥିଲେ ମାରଟ୍ । କିନ୍ତୁ ଯୋଗ୍ୟ ବିବେଚିତ ନ ହେବାରୁ ତାଙ୍କର ଆବେଦନ ପ୍ରତ୍ୟାଖ୍ୟାନ କରିଦେଇଥିଲେ ଲାଭୋୟସିଅର୍ । ସେତେବେଳକୁ ଲାଭୋୟସିଅର୍ ଥାଆନ୍ତି ଉକ୍ତ ବିଜ୍ଞାନ ଏକାଡେମୀର ନିର୍ଦ୍ଦେଶକ । ସମ୍ବାଦପତ୍ରର ସମ୍ପାଦକ

ହୋଇଯିବାରୁ ପୂର୍ବ ପ୍ରତିହିଂସାର ପ୍ରତିଶୋଧ ନେବାପାଇଁ ସୁଯୋଗ ମିଳିଗଲା ମାରଟ୍‌ଙ୍କୁ ।

ମାରଟ୍‌ଙ୍କ ପ୍ରରୋଚନାରେ ତାଙ୍କର ସମ୍ବାଦପତ୍ର ଲାଭୋୟସିଅର୍‌ଙ୍କର କ୍ରମାଗତ କୁତ୍ସାରଟନା କରି ଚାଲିଲା । ତାଙ୍କ ଇଙ୍ଗିତରେ ଏକାଡେମୀକୁ ନିଷିଦ୍ଧ କରିବା ନିମନ୍ତେ ସରକାରଙ୍କ ତରଫରୁ ନିର୍ଦ୍ଦେଶ ଜାରି କରାଗଲା । ନିର୍ଦ୍ଦେଶନାମାକୁ ଅବଜ୍ଞା କରିବାରୁ ଦେଶଦ୍ରୋହୀ ବୋଲି ମିଥ୍ୟା ଅଭିଯୋଗ ଆଣି ବନ୍ଦୀ କରାଗଲା ଲାଭୋୟସିଅର୍‌ଙ୍କୁ ।

ଅଦାଲତରେ ଲାଭୋୟସିୟର୍‌ଙ୍କର ବିଚାର ଚାଲିଲା । ତାହା ତ ବିଚାର ନ ଥିଲା; ଥିଲା ବିଚାରର ଏକ ବାହାନା ମାତ୍ର । ବିଚାରରେ ପ୍ରାଣଦଣ୍ଡର ଆଦେଶ ମିଳିଲା ତାଙ୍କୁ । ଏଥିରେ ବିଚଳିତ ନ ହୋଇ ନିଜର ଅସମ୍ପୂର୍ଣ୍ଣ ବୈଜ୍ଞାନିକ ଗବେଷଣାକୁ ସଂପୂର୍ଣ୍ଣ କରିବା ନିମନ୍ତେ ପ୍ରାଣଦଣ୍ଡାଦେଶକୁ ଅନ୍ତତଃ କିଛିଦିନ ସ୍ଥଗିତ ରଖିବାପାଇଁ ବିଚାରପତିଙ୍କ ନିକଟରେ ଆବେଦନ ପେଶ୍ କଲେ ସେ । କିନ୍ତୁ ଉକ୍ତ ଆବେଦନକୁ ନାମଞ୍ଜୁର କରିଦେଇ ବିଚାରପତି ରାୟ ଦେଲେ, ''ଫ୍ରାନ୍‌ସ୍ ପାଇଁ ବୈଜ୍ଞାନିକମାନଙ୍କର କୌଣସି ଆବଶ୍ୟକତା ନାହିଁ ।''

୧୭୯୪ ମସିହା ମେ' ମାସ ୮ ତାରିଖରେ ଗିଲୋଟିନ୍ ଦ୍ୱାରା ହତ୍ୟା କରାଗଲା ଲାଭୋୟସିୟର୍‌ଙ୍କୁ ।

ତାଙ୍କ ମୃତ୍ୟୁରେ ପ୍ରତିକ୍ରିୟା ପ୍ରକାଶ କରି ଜୋସେଫ୍ ଲୁଇ ଲାଗ୍ରାଞ୍ଜେ କହିଥିଲେ, ''ଲାଭୋୟସିୟର୍‌ଙ୍କର ମସ୍ତକକୁ ସ୍କନ୍ଧଚ୍ୟୁତ କରିବାପାଇଁ ମୁହୂର୍ତ୍ତମାତ୍ର ସମୟ ଲାଗିଲାନାହିଁ ସିନା, କିନ୍ତୁ ତାଙ୍କରି ଭଳି ଆଉ ଏକ ସନ୍ତାନ ଜନ୍ମ କରିବାପାଇଁ ଫ୍ରାନ୍‌ସ୍‌ମାତାକୁ ଅପେକ୍ଷା କରିବାକୁ ପଡ଼ିପାରେ ହୁଏତ ଶହେବର୍ଷରୁ ଅଧିକକାଳ !''

ଲାଭୋୟସିୟର୍‌ଙ୍କ ମୃତ୍ୟୁର ପଶ୍ଚାତ୍‌ରେ ଥିଲା ଜଣେ ସମ୍ବାଦପତ୍ର ସମ୍ପାଦକଙ୍କର ହୀନ ଚକ୍ରାନ୍ତ !

❑❑❑



# ବିଜ୍ଞାନର ପ୍ରଗତି ପଥେ ଭୁଲ୍ ଭଟକା

ବିଜ୍ଞାନୀମାନେ ସତ୍ୟସନ୍ଧାନୀ ଏବଂ ବିଜ୍ଞାନ ହେଉଛି ସତ୍ୟାନୁସନ୍ଧାନର ଧାରା । ସତ୍ୟର ଅନୁସନ୍ଧାନ କଲାବେଳେ ଅତିକ୍ରମ କରିବାକୁ ହୁଏ ବହୁ ଦୁର୍ଗମ ବନ୍ଧୁର ପଥ । ଏହି ପଥରେ ବିଫଳତା ହିଁ ହୋଇଥାଏ ଚିର ସହଚର । ସଫଳତା ଧରାଦେବା ପୂର୍ବରୁ ଅନେକ ବିଫଳତାର ମୁକାବିଲା କରିବାକୁ ପଡ଼ିଥାଏ ବୈଜ୍ଞାନିକମାନଙ୍କୁ । ଗବେଷଣା କାର୍ଯ୍ୟରେ ରହିଯାଇଥାଏ ବହୁ ଅଜଣା ଭୁଲଭଟକା । ବରଂ ପ୍ରତି ସଫଳତାର ପଶ୍ଚାତ୍‌ରେ ରହିଥିବା ସଂଖ୍ୟାଧିକ ତ୍ରୁଟି ବୈଜ୍ଞାନିକମାଙ୍କୁ ଭୁଲ୍ ରାସ୍ତାରେ ଭର୍ତ୍ତି କରିଦେଇଥିବାର ଦୃଷ୍ଟାନ୍ତ ବିରଳ ନୁହେଁ । ସାମାଜିକ ଚଳଣି, ପୁରାଣ ଗାଥା, ପ୍ରାକ୍ ଅନୁମାନ, ଜନିଶ୍ରୁତି, ସାଧାରଣ ବିଶ୍ୱାସ ଆଦି ବିଭାବମାନ ବୈଜ୍ଞାନିକର ଚିନ୍ତାଧାରାକୁ ନାନା ଭାବରେ ପ୍ରଭାବିତ କରି ତାର ଗବେଷଣାକାର୍ଯ୍ୟକୁ ବିପଥଗାମୀ କରାଇବାର ସମ୍ଭାବନା ଥାଏ । ତେଣୁ ତ୍ରୁଟିରୁ ତ୍ରୁଟିଶୂନ୍ୟତା ବା ଯଥାର୍ଥତା ଦିଗରେ ଯାତ୍ରାକରିବାର ଏହି ପଥ ବେଶ୍ ଦୀର୍ଘ, ବନ୍ଧୁର ଏବଂ ପ୍ରତାରଣା ପୂର୍ଣ୍ଣ । କୌଣସି ଏକ ପରିଣାମର କାରଣ ନିର୍ଦ୍ଧାରଣ ଏବଂ ଏପରିକି କେତେକ ଗବେଷଣାର ଫଳାଫଳ ବୈଜ୍ଞାନିକମାନଙ୍କୁ ବେଶ୍ କିଛି ଭୁଆଁ ବୁଲେଇଥିବାର ଅନେକ ଉଦାହରଣ ବିଜ୍ଞାନ ଇତିହାସରୁ ଦେଖିବାକୁ ମିଳେ । ସ୍ତନ୍ୟପାୟୀ ପ୍ରାଣୀ ମେଣ୍ଢାର କ୍ଲୋନିଂକରି 'ଡଲି'କୁ ଜନ୍ମ ଦେବା ପ୍ରକଳ୍ପରେ ୨୭୭ଟି ପରୀକ୍ଷାରେ ବିଫଳତାର ସ୍ୱାଦ ଚାଖିବାକୁ ପଡ଼ିଛି ଆୟାନ୍ ଉଇଲ୍‌ମଟ୍ ଓ ତାଙ୍କର ସହକର୍ମୀମାନଙ୍କୁ ।

ଭାଷଣ ପ୍ରସଙ୍ଗରେ ସ୍ୱାମୀ ରାମତୀର୍ଥ ଥରେ ଜଣେ ଗାଁ କବିରାଜଙ୍କ ଉଦାହରଣ ଦେଇଥିଲେ । ଚର୍ମରେ ଦେଖାଦେଇଥିବା ଘାଆ ଭଲ କରିବାରେ କବିରାଜଙ୍କର ବେଶ୍ ନାଁ ଥିଲା । ସେ ପ୍ରଥମେ ଘାଆକୁ ସଫାକରିଦେଇ ତା'ଉପରେ ପଟି ବାନ୍ଧିଦେଉଥିଲେ । ପଟି ବାନ୍ଧିସାରି ତା'ଉପରେ ଛୁଆଁଇ ଦେଉଥିଲେ ତାଙ୍କ ବାଡ଼ିଟିକୁ । ଘାଆ ହୁଏତ ପଟିଭିଡ଼ିବା ଯୋଗୁ ଆରୋଗ୍ୟ ହୋଇଯାଉଥିଲା, କିନ୍ତୁ ଲୋକେ ଧରିନେଉଥିଲେ ଯେ ଏହା ହେଉଛି ବାଡ଼ି ଛୁଆଁଇବାର ଯାଦୁ । ତେଣୁ ଏଭଳି ବିଭ୍ରାନ୍ତି ବିଜ୍ଞାନୀର ଭାବନାକୁ ବିପର୍ଯ୍ୟସ୍ତ କରିଦେବାରେ ବି ଅସ୍ୱାଭାବିକତା କିଛିନାହିଁ ।

ଏହି ଆଲ୍‌ଭା ଏଡିସନ୍‌ଙ୍କ କଥା ଶୁଣନ୍ତୁ । ସେ' ତ ଉଦ୍ଭାବନର ଯାଦୁକର ରୂପେ ପ୍ରଖ୍ୟାତ । ସେତେବେଳକୁ ତାଙ୍କର ଯୁବାବୟସ । ପକ୍ଷୀମାନେ ଆକାଶରେ ଉଡ଼ି ପାରୁଛନ୍ତି

କିପରି ଏହି ଚିନ୍ତା ତାଙ୍କ ମନକୁ ଆବୋରି ବସିଲା । ତେଣୁ ସେ ପକ୍ଷୀ ପର୍ଯ୍ୟବେକ୍ଷଣରେ ଲାଗିପଡ଼ିଲେ । ପକ୍ଷୀମାନଙ୍କ ବିଷୟରେ ଅନ୍ୟ କୌଣସି ପର୍ଯ୍ୟବେକ୍ଷଣ ତାଙ୍କୁ ଗୁରୁତ୍ୱପୂର୍ଣ୍ଣ ମନେ ହେଲାନାହିଁ । କେବଳ ଦୁଇଟି କଥା ପ୍ରତି ସେ ଆକୃଷ୍ଟ ହୋଇପଡ଼ିଲେ । ତାହା ହେଲା – ପକ୍ଷୀ ଉଡ଼ିପାରେ ଓ ସେ ପୋକ ଜୋକ ଖାଏ । ଏହି ପର୍ଯ୍ୟବେକ୍ଷଣରୁ ଏଡିସନ୍ ସିଦ୍ଧାନ୍ତ ନେଲେ ଯେ ପୋକଜୋକ ଖାଉଥିବାରୁ ହିଁ ପକ୍ଷୀମାନେ ଉଡ଼ିପାରିବାକୁ ସକ୍ଷମ ହେଉଛନ୍ତି । ଏହି ଉପକଳ୍ପନାକୁ ପରୀକ୍ଷା କରିବାକୁ ଚାହିଁଲେ ସେ । ସେ ଯୁକ୍ତି କଲେ ଯେ ପୋକଜୋକ ଖାଇବା ଯୋଗୁ ଚଢ଼େଇ ଉଡ଼ିପାରିବାକୁ ସକ୍ଷମ ହେଉଥିବାରୁ ତାଙ୍କ ଘରର ଚାକରାଣୀକୁ ପୋକର ପାଚନ ପିଆଇ ଦେଲେ ସେ ମଧ୍ୟ ଚଢ଼େଇଭଳି ଆକାଶରେ ଉଡ଼ିବୁଲିବ । ଭାବନା ସଙ୍ଗେ ସଙ୍ଗେ କାମ । ବଣବୁଦା ବୁଲି ଏଡ଼ିସନ୍ ମେଞ୍ଚାଏ ପୋକଜୋକ ସଂଗ୍ରହ କଲେ । ଚାକରାଣୀର ଅଜାଣତରେ ତାକୁ ଛେଚି ସେଥିରେ ଜଳ ମିଶେଇ ପାଚନ ତିଆରି କଲେ । ଚାକରାଣୀକୁ ଫୁସୁଲାଫୁସୁଲି କରି ପିଆଇଦେଲେ ସେ ପାଚନ । ଆକାଶରେ ଉଡ଼ିବ କଅଣ, ପେଟ କାମୁଡ଼ିବାରୁ ଭୂଇଁରେ ଗଡ଼ିବାରେ ଲାଗିଲା ବିଚରା ଚାକରାଣୀ । ପରୀକ୍ଷା ତ ବିଫଳ ହେଲା । ତାହା ସାଙ୍ଗକୁ ବେଶ୍ କିଛି ଗାଳି ଶୁଣିବାକୁ ପଡ଼ିଲା ଏଡ଼ିସନ୍‌ଙ୍କୁ । ଏ ଘଟଣାରେ ଏଡ଼ିସନ୍‌ଙ୍କ ବୋକାମି ହେଉଛି ଗୌଣ, ମୁଖ୍ୟ ହେଉଛି ତାଙ୍କର ଅନୁସନ୍ଧିତ୍ସୁ ମନୋଭାବ ।

ଅନ୍ୟଜଣେ ଗବେଷକଙ୍କ ବିଷୟରେ ମଧ୍ୟ ଏକ କୌତୂହଳପ୍ରଦ କଥାଶୁଣିବାକୁ ମିଳେ । ଯେଉଁ ପିଲାମାନଙ୍କର ପାଦ ଦୁଇଟି ବଡ଼, ସେମାନେ ଗାଣିତିକ ସମସ୍ୟା ସମାଧାନ କରିବାରେ ଖୁବ୍ ପାରଙ୍ଗମ ବୋଲି ପ୍ରମାଣ କରିଥିବାର ଦାବି ଜଣେଇଥିଲେ ଗବେଷକ ଜଣକ । ଗଣିତବିଦ୍ୟାରେ କୃତିତ୍ୱ ଓ ତାଙ୍କ ଜୋତାର ମାପକୁ ତୁଳନାକରି ସେ ଉପରୋକ୍ତ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ବଡ଼ ମଜାର କଥା ଯେ କୃତିତ୍ୱ କି ଜୋତାର ବଡ଼ସାନ ଆକାର ସହ ଯେ ବୟସର ସଂପର୍କ ଅତି ଘନିଷ୍ଠ, ତାହା ତାଙ୍କର ମୁଣ୍ଡକୁ ଢୁକିପାରିଲାନି । ଗଣିତ ବିଦ୍ୟାରେ ପରାକାଷ୍ଠା ପାଇଁ ଜୋତାର ଆକାରକୁ ବିଚାରକୁ ନ ନେଇ ପିଲାଙ୍କର ମୁଣ୍ଡର ପରିଧିକୁ ଗବେଷକଜଣକ ମାପିଥାନ୍ତେ ହେଲେ !



ଗାଲ୍‌ଭାନି ଏବଂ ଭୋଲ୍‌ଟା- ଏହି ଦୁଇ ଇଟାଲୀୟ ବୈଜ୍ଞାନିକଙ୍କ ପ୍ରଚେଷ୍ଟାରେ ଆବିଷ୍କୃତ ହେଲା ବିଦ୍ୟୁତ୍ ସ୍ରୋତ ସଂପର୍କିତ ତଥ୍ୟ । ୧୭୮୬ ମସିହାରେ ଲୁଇଗି ଗାଲ୍‌ଭାନି ତିଆରି କରିଥିଲେ ଧାତୁର ଏକ 'ଆର୍କ୍' । ସେଥିରେ ବ୍ୟବହୃତ ହୋଇଥିଲା ଲୌହ ଏବଂ ପିତ୍ତଳ କିମ୍ବା ରୂପା । ଯେତେବେଳେ ଆର୍କଟିର ଗୋଟିଏ ମୁଣ୍ଡ ଏକ ବେଙ୍ଗର ସ୍ନାୟୁ ସଂସ୍ପର୍ଶରେ

ଓ ଆର୍କର ଅନ୍ୟମୁଣ୍ଡଟି ବେଙ୍ଗର ମାଂସପେଶୀ ସଂସ୍ପର୍ଶରେ ଆସୁଥିଲା, ସେତେବେଳେ ମାଂସପେଶୀ ସଂକୁଚିତ ହୋଇଯାଉଥିଲା ବା ଥରି ଉଠୁଥିଲା । ଏହି ପର୍ଯ୍ୟବେକ୍ଷଣରୁ ଗାଲ୍‌ଭାନି ଧାରଣା କରିନେଲେ ଯେ ବେଙ୍ଗଠାରେ ଥିବା ପ୍ରାଣୀଜ ବିଦ୍ୟୁତ୍ ଶକ୍ତି ହିଁ ମାଂସପେଶୀର ସଂକୁଚନ ପାଇଁ ଦାୟୀ । ଗାଲ୍‌ଭାନିଙ୍କର ଏହି ପରୀକ୍ଷାକୁ ଦୋହରାଇଲେ ଆଲେକ୍ସାଣ୍ଡ୍ରୋ ଭୋଲ୍‌ଟା । ଭୋଲ୍‌ଟା ଥିଲେ ପାଭିଆ ବିଶ୍ୱବିଦ୍ୟାଳୟର ପଦାର୍ଥ ବିଜ୍ଞାନ ପ୍ରଫେସର୍ । ପ୍ରଥମେ ସେ ଗାଲ୍‌ଭାନିଙ୍କ ତଥ୍ୟକୁ ଗ୍ରହଣ କରିନେଇଥିଲେ ଯେ ବେଙ୍ଗର ଶରୀର ବିଦ୍ୟୁତ୍ ସ୍ରୋତରେ ଗଢ଼ା ଓ ସେହି ବିଦ୍ୟୁତ୍ ସ୍ରୋତ ମାଂସପେଶୀକୁ ସଂକୁଚିତ କରିଥାଏ । ତଥାପି ସେ ତାଙ୍କର ପରୀକ୍ଷା ଚାଲୁ ରଖିଲେ । ଅଧିକ ପରୀକ୍ଷା ଫଳରେ ସେ ଗାଲ୍‌ଭାନିଙ୍କ ଦ୍ୱାରା ପ୍ରଦତ୍ତ ତଥ୍ୟକୁ ସଂପୂର୍ଣ୍ଣ ଅସ୍ୱୀକାର କରିଦେଲେ । ସେ ଦର୍ଶାଇଲେ ଯେ ବିଦ୍ୟୁତ୍ ସ୍ରୋତ ସୃଷ୍ଟିପାଇଁ ଯେ କୌଣସି ଆର୍ଦ୍ର ବସ୍ତୁ ଯଥା – ଓଦା କାଗଜ, ଓଦା କନା, ଏପରିକି ମଣିଷର ଜିଭ ମଧ ସୁପରିବାହୀ ମାଧମରୂପେ କାର୍ଯ୍ୟ କରିପାରେ । ଏକ ରୂପାଚାମଚ, ଖଣ୍ଡେ ତମ୍ବାତାର କିମ୍ବା ଟିଣ ପାତିଆ ବ୍ୟବହାର କରି ସେ ଜିଭରେ ବିଦ୍ୟୁତ୍ ପ୍ରଭାବ ଜାତ କରିବାକୁ ସକ୍ଷମ ହୋଇପାରିଥିଲେ । ତାଙ୍କଠାରେ ଜିଭ ଝିମ୍‌ଝିମି ହୋଇ ଖଟାଳିଆ ସ୍ୱାଦ ଅନୁଭୂତ ହେବାଥିଲା ବିଦ୍ୟୁତ୍‌ର ପ୍ରଭାବ ।

ଭୋଲ୍‌ଟା ଏହି ଧରଣର ଅନେକ ପରୀକ୍ଷା ଚଳେଇଲେ । ନିଜ ପରୀକ୍ଷାରେ ଭିନ୍ନ ଭିନ୍ନ ପ୍ରକାରର ଧାତୁ ବ୍ୟବହାର କଲେ । ବେଙ୍ଗ ମାଂସପେଶୀ ବଦଳରେ ବ୍ୟବହାର କଲେ ଅନ୍ୟ ପଦାର୍ଥମାନ । ଏହି ସବୁ ପରୀକ୍ଷାରୁ ସେ ସିଦ୍ଧାନ୍ତ ଗ୍ରହଣ କଲେ ଯେ ସୃଷ୍ଟି ହେଉଥିବା ବିଦ୍ୟୁତ୍ ସ୍ରୋତର ଉତ୍ସ ବେଙ୍ଗର ଶରୀର ନୁହେଁ । ବରଂ ଆର୍ଦ୍ର ମାଧମରେ ରହିଥିବା ଦୁଇ ଭିନ୍ନଭିନ୍ନ ଧରଣର ଧାତୁ ହିଁ ବିଦ୍ୟୁତ୍ ସ୍ରୋତ ସୃଷ୍ଟିପାଇଁ ଦାୟୀ । ଗାଲ୍‌ଭାନିଙ୍କ ଭୁଲ୍ ପ୍ରମାଣିତ ହୋଇଗଲା ପରେ ସେ ଦୁଃଖରେ ଖୁବ୍ ଭାଙ୍ଗି ପଡ଼ିଥିଲେ ।

ଏହି ପରୀକ୍ଷାର ଫଳାଫଳ ପରିପ୍ରେକ୍ଷୀରେ ପୂର୍ବ ବର୍ଣ୍ଣିତ ସେହି ଗାଁ କବିରାଜଙ୍କ କାହାଣୀ ପୁଣି ମନେ ପଡ଼ିଯାଏ । ଗାଲ୍‌ଭାନିଙ୍କ ପରୀକ୍ଷାରେ ବିଦ୍ୟୁତ୍‌ସ୍ରୋତ ସୃଷ୍ଟିରେ ଜଡ଼ିତ ହୋଇଥିଲା ଦୁଇଟି ଉପାଦାନ ବା ସାମଗ୍ରୀ -ବେଙ୍ଗର ଶରୀର ଏବଂ ଦୁଇପ୍ରକାରର ଧାତୁ । ବିଦ୍ୟୁତ୍ ସ୍ରୋତ ସୃଷ୍ଟିରେ ଗାଲ୍‌ଭାନି ବେଙ୍ଗର ଶରୀରକୁ ଦାୟୀ କରିଥିବାବେଳେ ଭୋଲ୍‌ଟା ସାବ୍ୟସ୍ତ କରିଥିଲେ ଯେ ଦୁଇ ଅଲଗା ଅଲଗା ପ୍ରକାରର ଧାତୁ ହିଁ ବିଦ୍ୟୁତ୍ ସ୍ରୋତର ଉତ୍ସ ଏବଂ ବେଙ୍ଗର ଶରୀର କାର୍ଯ୍ୟକରିଥିଲା ବିଦ୍ୟୁତ୍ ସ୍ରୋତ ପରିବହନର ମାଧମ ରୂପେ । କବିରାଜଙ୍କ ଦ୍ୱାରା ଘାଆରେ ପଟି ବାନ୍ଧିବାର ପ୍ରଭାବ ପ୍ରତି ଧ୍ୟାନ ନ ଦେଇ ଘାଆ ଶୁଖିଯିବାପାଇଁ କବିରାଜଙ୍କ ବାଡ଼ି ଛୁଆଁଇବା ଉପରେ ଏକାଗ୍ର ହେବାଭଳି କଥା ଏ' । ଗାଲ୍‌ଭାନି ଥିଲେ ଜଣେ ଡାକ୍ତର । ତେଣୁ ସେ ଏକାଗ୍ର ହୋଇଗଲେ ମାଂସପେଶୀ ଉପରେ । ଭୋଲ୍‌ଟା ଥିଲେ ପଦାର୍ଥ ବିଜ୍ଞାନୀ, ତେଣୁ ସେ ଧାତୁ ପ୍ରତି ଆକର୍ଷିତ ହେବାସ୍ୱାଭାବିକ ।



ଆରିଷ୍ଟୋଟଲ୍ (ଖ୍ରୀଷ୍ଟପୂର୍ବ ୩୮୪ - ୩୨୨) ଥିଲେ ଜଣେ ପ୍ରଖ୍ୟାତ ଗ୍ରୀକ୍ ଦାର୍ଶନିକ । ବିଜ୍ଞାନ -ଜ୍ଞାନକୁ ସମୃଦ୍ଧ କରିବାରେ ତାଙ୍କର ଅବଦାନ ସୁଦୂର ପ୍ରସାରୀ । ବିଜ୍ଞାନକ୍ଷେତ୍ରରେ ତାଙ୍କୁ ଜଣେ ପଥପ୍ରଦର୍ଶକ ରୂପେ ସ୍ୱୀକୃତି ମିଳିଛି । କୌଣସି ଏକ ଘଟଣା ପଛରେ ରହିଥିବା କାରଣ ଜାଣିବା ନିମନ୍ତେ ପ୍ରଶ୍ନ ପଚାରିବା ଓ କାରଣ ସାବ୍ୟସ୍ତ କରିବା ପାଇଁ ପୁଙ୍ଖାନୁପୁଙ୍ଖ ଅନ୍ୱେଷଣର ସାହାଯ୍ୟନେବା ଉପରେ ଗୁରୁତ୍ୱ ଆରୋପ କରିଥିଲେ ଆରିଷ୍ଟୋଟଲ୍ । ଏପରିକି ତାଙ୍କ ମୃତ୍ୟୁର ଦୁଇହଜାର ବର୍ଷ ଅତୀତ ହୋଇଯାଇଥିଲେ ମଧ୍ୟ ବିଜ୍ଞାନ ଇତିହାସରେ ନିଷ୍କଳଙ୍କ ରହି ଆସିଥିଲା ଆରିଷ୍ଟୋଟଲଙ୍କର ନାମ । ତଥାପି ତାଙ୍କ ଦ୍ୱାରା ପ୍ରସାରିତ କେତେକ ତଥ୍ୟ ପରେ ଭ୍ରାନ୍ତ ପ୍ରମାଣିତ ହୋଇଛି ।

ସେ ମତ ଦେଇଥିଲେ ଯେ ପ୍ରତ୍ୟେକ ସଜୀବ ଏବଂ ନିର୍ଜୀବ ବସ୍ତୁ ମୃତ୍ତିକା, ବାୟୁ, ଅଗ୍ନି ଏବଂ ଜଳ – ଏହିଚାରିଟି ଉପାଦାନକୁ ନେଇ ଗଠିତ । ସେ ପୁଣି କହୁଥିଲେ ଯେ ସମଗ୍ର ବିଶ୍ୱ ହେଉଛି ପର୍ଯ୍ୟାୟକ୍ରମେ ସ୍ଥାନିତ କେତେକ ସ୍ଫଟିକ ଗୋଲକ ! ଗୋଲକ ଗୁଡ଼ିକ ଗୋଟିକ ଭିତରେ ଗୋଟିଏ ଅନୁକ୍ରମରେ ସଜ୍ଜିତ । ସେମାନେ ପୃଥିବୀକୁ କେନ୍ଦ୍ରକରି ପୃଥିବୀ ଚତୁର୍ଦ୍ଦିଗରେ ଘୂରି ବୁଲୁଛନ୍ତି । ତାଙ୍କ ଧାରଣାରେ ବାୟୁ ଭାରହୀନତା ବା ଓଜନ ହ୍ରାସ ପାଇଁ ଦାୟୀ । ମାଧ୍ୟାକର୍ଷଣ ବା ଓଜନ ସହିତ ଏହାର ବିଶେଷ ସଂପର୍କ ନାହିଁ । ତେଣୁ ଅଳ୍ପ ପରିମାଣର ବାୟୁ ଅପେକ୍ଷା ଅଧିକ ପରିମାଣ ବାୟୁର ଓଜନ କମ୍ । ସେ ମଧ୍ୟ ଧାରଣା ପୋଷଣ କରୁଥିଲେ ଯେ ପୃଥିବୀ ପୃଷ୍ଠରେ ବସ୍ତୁଗୁଡ଼ିକର ଚଳନ ପାଇଁ ଦାୟୀ ବଳ ଓ ଆକାଶରେ ବସ୍ତୁଗୁଡ଼ିକୁ ଚଳମାନ କରିବାପାଇଁ ଦାୟୀ ବଳ ଭିନ୍ନ ଭିନ୍ନ । ଆରିଷ୍ଟୋଟଲ୍‌ଙ୍କର ସିଦ୍ଧାନ୍ତ କିମ୍ୱା ଅପସିଦ୍ଧାନ୍ତ ଶହ ଶହ ବର୍ଷଧରି ବିଜ୍ଞାନବିକାଶକୁ ପଙ୍ଗୁ କରି ରଖିଦେଲା ।

ସପ୍ତଦଶ ଶତାବ୍ଦୀ ଉପନୀତ ହେବାବେଳକୁ ବିଜ୍ଞାନ ଯୁଗର ଆରମ୍ଭ ହେଲାବୋଲି କୁହାଯାଇପାରେ । ଏହି ସମୟରେ ବିଜ୍ଞାନ ରାଜ୍ୟରେ ସୃଷ୍ଟି ହେଲା ଏକ ଆଲୋଡ଼ନ । ଏକ ନୂତନ ପରୀକ୍ଷାତ୍ମକ ଦର୍ଶନ ଅନେକ ମେଧାବୀ ବ୍ୟକ୍ତିଙ୍କ କଳ୍ପନାକୁ ଉଜ୍ଜୀବିତ କରିଦେଲା । ସେମାନେ ସିଦ୍ଧାନ୍ତ ନେଲେ, ''ଯାହା ନ ଦେଖିବ ବେନି ନୟନେ, ପରତେ ନ ଯିବ ଗୁରୁବଚନେ । କେବଳ ଆଖି ଦେଖା ଘଟଣାକୁ ଆମେ ବିଶ୍ୱାସ କରିବୁ । ସେହି ସମାନ ଘଟଣାକୁ ବାରମ୍ବାର ମଧ୍ୟ ଦେଖିହେଉଥିବ । କେବଳ ପରୀକ୍ଷାସିଦ୍ଧ ସମାଧାନ ବ୍ୟତୀତ ଅନ୍ୟ କିଛିକୁ ଆମେ ଗ୍ରହଣ କରିବୁନି ।'' ଏହିପରି ଭାବରେ ବିଜ୍ଞାନ ଜଗତରେ ସୃଷ୍ଟିହେଲେ ଏକ ବିପ୍ଳବୀ ଗୋଷ୍ଠୀ ।

ଉକ୍ତ ସଂଗ୍ରାମୀମାନଙ୍କ ମଧ୍ୟରୁ କେତେଜଣ ମିଶି ଇଂଲଣ୍ଡରେ ଗଠନ କଲେ ଏକ ସଂସ୍ଥା । ତାର ନାମକରଣ କରାଗଲା ଅଦୃଶ୍ୟ ଅନୁଷ୍ଠାନ ବା 'ଇନଭିଜିବ୍‌ଲ୍ କଲେଜ୍' । ଅକ୍ସଫୋର୍ଡ଼, ଲଣ୍ଡନ୍ ଆଦି ଶିକ୍ଷାକ୍ଷେତ୍ରରେ ବ୍ୟୁତ୍ପତ୍ତି ଅର୍ଜନ କରିଥିବା କେନ୍ଦ୍ରମାନଙ୍କରେ ଉକ୍ତ ଅନୁଷ୍ଠାନର ଶାଖାମାନ ଗଠିତ ହେଲା । ରବର୍ଟ ବୟଲେ ଏବଂ ଆଇଜାକ୍ ନିଉଟନ୍‌ଙ୍କ ଭଳି ପ୍ରଖ୍ୟାତଯଶା ବୈଜ୍ଞାନିକମାନେ ଏହାର ସଦସ୍ୟପଦ ଗ୍ରହଣ କରିଥିଲେ । ତତ୍‌କାଳୀନ ଶାସକ ଏବଂ ଧର୍ମଯାଜକମାନଙ୍କର ଦୃଷ୍ଟି ଅନ୍ତରାଳରେ ଅତି ଗୋପନୀୟତାର ସହ 'ଅଦୃଶ୍ୟ ଅନୁଷ୍ଠାନ' କାର୍ଯ୍ୟନିର୍ବାହ କରିବାରେ ଲାଗିଲା । ଗୋପନତା ଅବଲମ୍ବନ କରି ନ ଥିଲେ ସେମାନଙ୍କ କ୍ରୋଧର ଶିକାର ହୋଇ ଅପମୃତ୍ୟୁ ବରଣ କରିଥାନ୍ତା ଅନୁଷ୍ଠାନଟି । ସେତେବେଳେ ବିଶ୍ୱାସ କରାଯାଉଥିଲା ଯେ 'ୟୁନିକର୍ନ୍' ନାମକ ଏକଶିଙ୍ଗିଆ ପ୍ରାଣୀର ଶିଙ୍ଗକୁ ଚୂରି ପ୍ରସ୍ତୁତ ହୋଇଥିବା ଗୁଣ୍ଡରେ ବୃତ୍ତଟିଏ ଆଙ୍କି ତା ଭିତରେ ବୁଢ଼ିଆଣୀଟିଏ ଛାଡ଼ିଦେଲେ ବୁଢ଼ିଆଣୀଟି ବୃତ୍ତ ଅତିକ୍ରମ କରି ବାହାରକୁ ଆସିପାରିବନି । 'ଅଦୃଶ୍ୟ ଅନୁଷ୍ଠାନ'ର ସଦସ୍ୟମାନେ ଯୋଗାଡ଼ କଲେ ୟୁନିକର୍ନ୍ ପ୍ରାଣୀଠାରୁ ସଂଗୃହୀତ ଶିଙ୍ଗର ଚୂର୍ଣ୍ଣ । ଚୂର୍ଣ୍ଣକୁ ବ୍ୟବହାର କରି ଆଙ୍କିଲେ ବୃତ୍ତଟିଏ । କେହି ଜଣେ ମାଇ ନେଇ ଆସିଲେ ଗୋଟିଏ ଜିଅନ୍ତା ବୁଢ଼ିଆଣୀ । ବୁଢ଼ିଆଣୀଟିକୁ ବୃତ୍ତର ମଝିଆମଝି ସ୍ଥାନରେ ଛାଡ଼ିଦିଆଗଲା । ଏହି ପରୀକ୍ଷା ଦେଖିବାକୁ ଜମା ହୋଇଥାନ୍ତି ଅନେକ ଲୋକ । ସମସ୍ତଙ୍କ ଆଖି ଆଗରେ ବୁଢ଼ିଆଣୀଟି ଡଗ ଡଗ ହୋଇ ବୃତ୍ତର ପରିଧି ଡେଇଁ ବାହାରକୁ ପଳେଇଗଲା । ଅନେକବର୍ଷ ଧରି ଲୋକଙ୍କ ମନରେ ରହି ଆସିଥିବା ଭ୍ରାନ୍ତ ଧାରଣା ଉକ୍ତ ପରୀକ୍ଷାଦ୍ୱାରା ମୁହୂର୍ତ୍ତକ ଭିତରେ ମିଳେଇଗଲା ।

ଆରିଷ୍ଟୋଟଲ୍ କହିଥିଲେ ଯେ କୌଣସି ବସ୍ତୁ ତଳକୁ ଖସିବାର ପରିବେଶ ତା'ର ଓଜନସହ ସମାନୁପାତିକ । ଗାଲିଲିଓ କିନ୍ତୁ ପ୍ରମାଣଦ୍ୱାରା ସାବ୍ୟସ୍ତ କରିଦେଲେ ଯେ ମାଧ୍ୟାକର୍ଷଣ ପ୍ରଭାବିତ ପରିବେଗ ଓଜନ-ସ୍ୱତନ୍ତ୍ର । କେବଳ ବାୟୁର ପ୍ରତିରୋଧ ଯୋଗୁ ଏଥିରେ ସାମାନ୍ୟ ପରିବର୍ତ୍ତନ ସମ୍ଭବ ହୋଇଥାଏ ।

ପ୍ରିଜମ୍‌ଟିଏ ବ୍ୟବହାର କରି ନିଉଟନ୍ ଦର୍ଶାଇଦେଲେ ଯେ ସୂର୍ଯ୍ୟାଲୋକ ଭିନ୍ନ ଭିନ୍ନ ରଙ୍ଗରେ ବିଭକ୍ତ ହୋଇପାରିବ । ଆଜି ଏହା ଅତି ଜଣାଶୁଣା କଥା ଯେ ଶୁଭ୍ର ଆଲୋକ ଅନେକ ରଙ୍ଗର ସମାହାର । କିନ୍ତୁ ନିଉଟନ୍‌ଙ୍କର ଉପରୋକ୍ତ ପରୀକ୍ଷାସିଦ୍ଧ ତଥ୍ୟକୁ ଗ୍ରହଣ କରିନେବାରେ ଉପୁଜିଥିଲା ତିକ୍ତ ଦ୍ୱନ୍ଦ୍ୱ । ଶହେବର୍ଷରୁ ଉର୍ଦ୍ଧ୍ୱକାଳ ଧରି ଏହା ବିବାଦର ଘେର ଭିତରେ ରହି ଆସିଥିଲା । ସେତେବେଳେ ଯୁକ୍ତି କରାଗଲା ଯେ ଶୁଭ୍ର ଆଲୋକ ଅମିଶ୍ରିତ ତଥା ପବିତ୍ର । ତେଣୁ ତାହା ଅବିଭାଜିତ । ବିଶିଷ୍ଟ ଜର୍ମାନ୍ କବି ଗେଟେ ମଧ୍ୟ ଏହିମତର ପୃଷ୍ଠପୋଷକତା କରିଥିଲେ । ଯାହାକିଛି ବିଶୁଦ୍ଧ ଏବଂ ନିର୍ମଳ, ତାହା ଅପରିହାର୍ଯ୍ୟ ଭାବରେ ଅବିଭାଜିତ ହୋଇଥିବାରୁ ଶୁଭ୍ର ଆଲୋକର ବିଭକ୍ତିକରଣର ପ୍ରଶ୍ନ ଉଠୁନାହିଁ ବୋଲି ସିଦ୍ଧାନ୍ତ ଗ୍ରହଣ କରିବା ସଂପୂର୍ଣ୍ଣ ଯୁକ୍ତିଯୁକ୍ତ – ଏହାହିଁ ଥିଲା ଗେଟେଙ୍କର ବ୍ୟାଖ୍ୟା । ଆଜି ପର୍ଯ୍ୟନ୍ତ

ଶୁଭ୍ରତା ପବିତ୍ରତାର ପ୍ରତୀକରୂପେ ସ୍ୱୀକୃତି ପାଇଚାଲିଛି । ବିବାହ ଆଦି ଶୁଭକାର୍ଯ୍ୟରେ ଶୁଭ୍ରବସ୍ତ୍ର ପରିଧାନ ଉପରେ ଗୁରୁତ୍ୱ ପ୍ରଦାନ କରାଯାଉଛି ।

ଫ୍ଲୋଜିଷ୍ଟନ୍ ତତ୍ତ୍ୱର ବର୍ଜନ ସତ୍ୟତା ପ୍ରତି ବିଜ୍ଞାନର ଅଙ୍ଗୀକାରବଦ୍ଧତାର ଆଉ ଏକ ପ୍ରମାଣ ।ଯେ କୌଣସି ଦହନଶୀଳ ବସ୍ତୁରେ ଅଗ୍ନି ସଂଯୋଗକଲେ ତାହା ଶିଖା ସୃଷ୍ଟିକରି ଦଗ୍‌ଧ ହୋଇଥାଏ । ଏହି ପର୍ଯ୍ୟବେକ୍ଷଣରୁ ଧରିନିଆଗଲା ପ୍ରତ୍ୟେକ ଜ୍ୱଳନଶୀଳ ବସ୍ତୁରେ ରହିଛି ଫ୍ଲୋଜିଷ୍ଟନ୍ ନାମକ ଉପାଦାନ । ବସ୍ତୁଟି ଦଗ୍‌ଧୀଭୂତ ହେଲାବେଳେ ତଥାକଥିତ ସେହି ଫ୍ଲୋଜିଷ୍ଟନ୍ ବସ୍ତୁରୁ ପରିତ୍ୟକ୍ତ ହୋଇଯାଏ ଓ ରହିଯାଏ ଫ୍ଲୋଜିଷ୍ଟନ୍‌ବିହୀନ ଅବଶେଷ ବା ଭସ୍ମ । ମୁକ୍ତ ଫ୍ଲୋଜିଷ୍ଟନ୍ ଶୋଷିତ ହୋଇଯାଏ ବାୟୁଦ୍ୱାରା ।





ଫ୍ଲୋଜିଷ୍ଟନ୍ ସଂପର୍କିତ ବିଶ୍ୱାସ ବଳବତ୍ତର ହୋଇ ରହିଲା ପ୍ରାୟ ଶହେବର୍ଷଧରି । କ୍ୟାଭେଣ୍ଡିସ୍, ବ୍ଲାକ୍, ସେଲି ଏବଂ ପ୍ରିଷ୍ଟଲିଙ୍କ ଭଳି ଖ୍ୟାତନାମା ବୈଜ୍ଞାନିକମାନେ ମଧ୍ୟ ଫ୍ଲୋଜିଷ୍ଟନ୍‌ବାଦ ପ୍ରତି ନିଜର ସମର୍ଥନ ଜଣାଇଥିଲେ । ଆମେ ଜାଣୁ ଯେ ସୀସାକୁ ବାୟୁ ରହିଥିବା ପରିବେଶରେ ଦହନ କଲେ ସୀସାର ଅକ୍‌ସାଇଡ୍ ଅବଶେଷରୂପେ ପ୍ରାପ୍ତ ହୁଏ । କିନ୍ତୁ ଏହି ଅବଶେଷର ଓଜନ ଯେ ଦଗ୍‌ଧିଭୂତ ସୀସାର ଓଜନଠାରୁ ଅଧିକ, ସେଥିପ୍ରତି କେହି ଗୁରୁତ୍ୱ ଦେଲେ ନାହିଁ । ପରେ ଫରାସୀ ବୈଜ୍ଞାନିକ ଲାଭୋୟସିଅର୍ ଦହନ ପ୍ରକ୍ରିୟା ସଂପର୍କରେ ଅବତାରଣା କଲେ ଏକ ନୂତନ ତଥ୍ୟ । ଲାଭୋୟସିୟର୍‌ଙ୍କ ଦ୍ୱାରା ପ୍ରସାରିତ ତଥ୍ୟ ଏବେ ସାର୍ବଜନୀନ ସ୍ୱୀକୃତି ପାଇଛି ଏବଂ ସ୍ଥାନଚ୍ୟୁତ ହୋଇପଡ଼ିଛି ଫ୍ଲୋଜିଷ୍ଟନ୍ ମତବାଦ । ଲାଭୋୟସିୟର୍ ଦର୍ଶାଇଲେ ଯେ ଦହନ ସମୟରେ ଜ୍ୱଳନଶୀଳ ବସ୍ତୁସହ ଅମ୍ଳଜାନର ରାସାୟନିକ ସଂଯୋଗ ଘଟେ । ଫଳରେ ଉକ୍ତ ବସ୍ତୁର ଓଜନ ଅପେକ୍ଷା ଦହନରୁ ଜାତ ଉପାଦାନଗୁଡ଼ିକର ସମ୍ମିଳିତ ଓଜନ ଅଧିକ ହୋଇଯାଏ ।

ସେ ଯାହାହେଉ, ବିଜ୍ଞାନର ବିଭିନ୍ନ ଶାଖାର ବିକାଶ ଇତିହାସ ବହୁ ବିଭ୍ରାନ୍ତ ଏବଂ ଅଭ୍ରାନ୍ତ କାହାଣୀରେ ଭରପୂର । ଗଭୀର ଚିନ୍ତନ, ନିରବଚ୍ଛିନ୍ନ ଅନ୍ୱେଷଣ ଏବଂ ପୁଙ୍ଖାନୁପୁଙ୍ଖ ବିଶ୍ଳେଷଣ ଫଳରେ ହିଁ ବିଲୁପ୍ତ ହୋଇଛି ବିଭ୍ରାନ୍ତି । ଭ୍ରାନ୍ତିମୁକ୍ତ ତଥ୍ୟ ପାଇଛି ସାର୍ବଜନୀନ ସ୍ୱୀକୃତି ବିଜ୍ଞାନ ଜଗତରେ । ଏହି ଭୁଲ୍‌ରୁ ଠିକ୍ ଆଡ଼କୁ ଅଗ୍ରଗତି କରିବାର ପ୍ରକ୍ରିୟା ଅତୀତରେ ଥିଲା, ବର୍ତ୍ତମାନ ମଧ୍ୟ ପରିଦୃଷ୍ଟ ହେଉଛି, ଭବିଷ୍ୟତରେ ବି ତିଷ୍ଠି ରହିଥିବ ।

❑❑❑



# ଲୁଇପାଶ୍ଚର୍‌ଙ୍କ ରୋଗୀ ଚିକିତ୍ସା

ତୁମେମାନେ ଲୁଇପାଶ୍ଚର୍‌ଙ୍କ ନାଁ ଶୁଣିଥିବ । ସେ ଜଳାତଙ୍କ ରୋଗର ପ୍ରତିଷେଧକ ଟିକା ଉଦ୍ଭାବନ କରିଥିଲେ । ପାଗଳା କୁକୁର, ବିଲୁଆ ଇତ୍ୟାଦି କାମୁଡ଼ିଲେ ଜଳାତଙ୍କ ରୋଗ ହୋଇଥାଏ । ଏହି ରୋଗରେ ରୋଗୀ କିଛି ଖାଇପିଇ ପାରେନି । ପାଣିକୁ ଦେଖିଲାମାତ୍ରେ ତା'ର ବାତ ମାରିବା ଆରମ୍ଭ ହୋଇଯାଏ । ଏଥିପାଇଁ ସେହି ରୋଗକୁ ଜଳାତଙ୍କ, (ଜଳପ୍ରତି ଭୟ) ରୋଗ କୁହାଯାଏ । ଜଳାତଙ୍କ ରୋଗ ନ ହେବାପାଇଁ ସିନା ଟିକା ବାହାରିଛି, କିନ୍ତୁ ଜଳାତଙ୍କ ରୋଗ ହେଲେ ରୋଗୀକୁ ପ୍ରାୟ ବଞ୍ଚାଇ ହେବନାହିଁ । କାରଣ ଜଳାତଙ୍କ ରୋଗର ଚିକିତ୍ସା ପାଇଁ ଏ ପର୍ଯ୍ୟନ୍ତ ଔଷଧ ବାହାରିନାହିଁ ।୧୮୮୬ ମସିହା ମାର୍ଚ୍ଚ ମାସ ଏକ ତାରିଖ । ସେହିଦିନ ଲୁଇ ପାଶ୍ଚର୍ ଗୋଟିଏ ଟେଲିଗ୍ରାମ୍ ପାଇଲେ । ଟେଲିଗ୍ରାମ୍ ଆସିଥିଲା ରୁଷିଆର ସ୍ମୋଲେନ୍‌ସ୍କ୍ ଅନ୍ତର୍ଗତ ବେଲି ସହରରୁ । ସେଥିରେ ଲେଖାଥିଲା, ''ଏଠାରେ କୋଡ଼ିଏ ଜଣ ଲୋକ ପାଗଳା ହେଟାକାମୁଡ଼ାଦ୍ୱାରା ଆକ୍ରାନ୍ତ ହୋଇଛନ୍ତି । ଆମେ ସେମାନଙ୍କର ଚିକିତ୍ସା ନିମନ୍ତେ ସେମାନଙ୍କୁ ଆପଣଙ୍କ ନିକଟକୁ ପଠାଇପାରିବୁ କି ?'' ଲୁଇ ପାଶ୍ଚର ଫେରନ୍ତା ଟେଲିଗ୍ରାମ୍ ଦ୍ୱାରା ଜଣାଇଦେଲେ, ''ତୁରନ୍ତ ପଠାଇ ଦିଅ ।''

ସେହି ମାର୍ଚ୍ଚ ମାସ ଏକ ତାରିଖ ମଧ୍ୟ ଏକ ସ୍ମରଣୀୟ ଦିବସ । କାରଣ ସେହିଦିନ ଲୁଇ ପାଶ୍ଚର୍ ଫରାସୀ ଏକାଡେମୀକୁ ଜଣାଇଦେଇଥିଲେ ଯେ, ପାଗଳା କୁକୁର କାମୁଡ଼ିଥିବା ୩୫୦ ଜଣ ଲୋକଙ୍କୁ ଜଳାତଙ୍କ ରୋଗର ଟିକା ଦେଇ ସେ ଭଲ ଫଳ ପାଇଛନ୍ତି । ଏହି ସମ୍ବାଦ ପାଇ ସାରିବା ପରେ ପାଶ୍ଚର୍‌ଙ୍କ ନାମରେ ଫ୍ରାନ୍‌ସରେ ଏକ ଅନୁଷ୍ଠାନ ପ୍ରତିଷ୍ଠା କରିବା ପାଇଁ ନିଷ୍ପତ୍ତି ନିଆଯାଇଥିଲା ଓ ପୃଥିବୀର ବିଭିନ୍ନ ଦେଶର ଜଳାତଙ୍କ ରୋଗୀମାନଙ୍କର ଚିକିତ୍ସା ପାଇ ଉକ୍ତ ଅନୁଷ୍ଠାନରେ ବ୍ୟବସ୍ଥା ଗ୍ରହଣ କରାଯାଇଥିଲା ।

ରୋଗୀମାନଙ୍କୁ ଚଞ୍ଚଳ ତାଙ୍କ ପାଖକୁ ପଠାଇଦେବା ବିଷୟରେ ଲୁଇ ପାଶ୍ଚର୍ ଦେଇଥିବା ଟେଲିଗ୍ରାମ୍‌ଟି ସ୍ମୋଲେନ୍‌ସ୍କର ଗଭର୍ଣ୍ଣରଙ୍କ ପାଖରେ ପହଞ୍ଚିଲା । ସେ ସାଙ୍ଗେ ସାଙ୍ଗେ ପାଶ୍ଚର୍‌ଙ୍କ ଟେଲିଗ୍ରାମ୍ କଥା ଘରୋଇ ମନ୍ତ୍ରୀଙ୍କୁ ଜଣାଇଦେଲେ । କିନ୍ତୁ ମନ୍ତ୍ରୀ ମନ୍ତବ୍ୟ ଦେଲେ, ''ହେଟାବାଘ କାମୁଡ଼ାଦ୍ୱରା ଆକ୍ରାନ୍ତ ରୋଗୀମାନଙ୍କର ଚିକିତ୍ସା ପାଇଁ ସେମାନଙ୍କୁ ପାଶ୍ଚର୍‌ଙ୍କ ପାଖକୁ ପଠାଇବା ଅବଶ୍ୟ ଯୁକ୍ତିଯୁକ୍ତ । ହେଲେ ସେମାନଙ୍କର ଚିକିତ୍ସା ଖର୍ଚ୍ଚ ସମ୍ଭାଳିବାପାଇଁ ଆମ ପାଖରେ ଏତେ ସମ୍ବଳ ନାହିଁ ।''ରୋଗୀମାନଙ୍କର ଚିକିତ୍ସା ଖର୍ଚ୍ଚ ବହନ କରିବା ପାଇଁ ଅନ୍ୟ କୌଣସି ସଂସ୍ଥା ସହ ଯୋଗାଯୋଗ କରିବା ପାଇଁ ଚେଷ୍ଟା କରାଗଲା ।

ଏଥି ମଧ୍ୟରେ ଦିନ ଗଡ଼ି ଚାଲିଥାଏ । ରୋଗୀମାନଙ୍କ ଅବସ୍ଥା ବେଶ ବେଶୀ ଖରାପ ହୋଇ ପଡୁଥାଏ । ପାଶ୍ଚର୍‌ଙ୍କ ପାଖକୁ ସେମାନଙ୍କୁ ପଠାଇବା ନିମନ୍ତେ ସରକାରୀ କଳ କୌଣସି ତତ୍ପରତା ପ୍ରକାଶ କରୁ ନ ଥାନ୍ତି । ହେଟା କାମୁଡ଼ିବାର ସପ୍ତମ ଦିନ ରୋଗୀମାନଙ୍କୁ ଚିକିତ୍ସା କରୁଥିବା ଡାକ୍ତର ଡ଼ାଭିଡୋଭ୍ ସରକାରୀ ନିର୍ଦ୍ଦେଶକୁ ଅପେକ୍ଷା ନ କରି ସ୍ଲେଜ୍‌ଗାଡ଼ିରେ ରୋଗୀମାନଙ୍କୁ ଶୁଆଇ ସ୍ମୋଲେନ୍‌ସ୍କର ଗଭର୍ଣ୍ଣରଙ୍କ କୋଠିରେ ପହଞ୍ଚିଲେ ଓ ସାଙ୍ଗେ ସାଙ୍ଗେ ରୋଗୀମାନଙ୍କୁ ପାଶ୍ଚରଙ୍କ ପାଖକୁ ପଠାବାର ବ୍ୟବସ୍ଥା କରିବାକୁ ଦାବି କଲେ ।

ଶେଷରେ ରୋଗୀମାନଙ୍କୁ ଲୁଇ ପାଶ୍ଚର୍‌ଙ୍କ ପାଖକୁ ପଠାଗଲା । ସେମାନେ ସେଠାରେ ପହଞ୍ଚିବାକୁ ଆହୁରି ଏକ ସପ୍ତାହ ଲାଗିଲା । ହୁଏତ ଆଉ କେଇ ଘଣ୍ଟା ଭିତରେ ଯେ ସେମାନଙ୍କର ମୃତ୍ୟୁ ନ ହେବ କିଏ ଜାଣେ ? ଲୁଇ ପାଶ୍ଚର୍ ସାଙ୍ଗେ ସାଙ୍ଗେ ଚିକିତ୍ସା ଆରମ୍ଭ କରିଦେଲେ । ସବୁ ରୋଗୀଙ୍କୁ ଜଳାତଙ୍କ ରୋଗର ଟିକା ଦେଇଦେଲେ ।

ପାଶ୍ଚର୍‌ଙ୍କ ପାଇଁ ମଧ୍ୟ ଏହା ଥିଲା ଏକ ନୂତନ ପରୀକ୍ଷା । ଏଥି ପୂର୍ବରୁ ପାଗଳା ହେଟାବାଘ କାମୁଡ଼ିଥିବା କୌଣସି ରୋଗୀର ସେ ଚିକିତ୍ସା କରି ନ ଥିଲେ । ତେଣୁ ସେ ମଧ୍ୟ ଏହି ରୋଗୀମାନଙ୍କ ଉପରେ ଟିକାର ପ୍ରଭାବ ଜାଣିବାପାଇଁ ବିଶେଷ ଆଗ୍ରହୀ ଥିଲେ । ନିଜେ ରୁଷଭାଷା ଜାଣି ନ ଥିବାରୁ ନିକୋଲାଇ ଗାମାଲେୟା ନାମକ ଜଣେ ରୁଷଦେଶର ଡାକ୍ତରଙ୍କ ସହାୟତାରେ ପାଶ୍ଚର୍ ରୋଗୀମାନଙ୍କର ଭଲମନ୍ଦ ପଚାରି ବୁଝୁଥିଲେ ।

ତିନିଜଣ ରୋଗୀଙ୍କୁ ବଂଚାଇ ହେଲାନାହିଁ । ସେମାନଙ୍କୁ ପାଶ୍ଚର୍‌ଙ୍କ ପାଖକୁ ପଠାଇବାରେ ଡେରି ହୋଇ ନ ଥିଲେ ସମସ୍ତଙ୍କୁ ହୁଏତ ପାଶ୍ଚର୍ ଆରୋଗ୍ୟ କରି ଦେଇ ପାରିଥାନ୍ତେ । ଅବଶ୍ୟ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କଲେ ଏହି ପରୀକ୍ଷାରୁ ଆଉ ଏକ ଲାଭ ମିଳିଲା । ଏହାଦ୍ୱାରା ପାଶ୍ଚର୍ ପ୍ରମାଣ କରିଦେଲେ ଯେ ପାଗଳାକୁକୁର କି ବିଲୁଆ କାମୁଡ଼ିଲେ ଯେତେ ଚଞ୍ଚଳ ପ୍ରତିଷେଧକ ଟିକା ନିଆଯାଏ, ତାହା ରୋଗୀପାଇଁ ସେତେମଙ୍ଗଳ ।

ସେହି ରୋଗୀମାନେ ପାଶ୍ଚର୍‌ଙ୍କ ଚିକିତ୍ସାରେ ଦେଢ଼ମାସ ରହିଲେ । ସମ୍ପୂର୍ଣ୍ଣ ଆରୋଗ୍ୟ ହୋଇଗଲା ପରେ ସେମାନଙ୍କୁ ସ୍ମୋଲେନ୍‌ସ୍କ ପଠାଇ ଦିଆଗଲା । ସ୍ମୋଲେନ୍‌ସ୍କରୁ ଆସିଥିବା ଯେଉଁ ରୋଗୀମାଙ୍କର ସେ ଜୀବନ ରକ୍ଷା କରିଥିଲେ, ସେମାନଙ୍କର ଏକ ଫଟୋ ଉଠାଇ ନିଜ ପାଖରେ ରଖିଥିଲେ ପାଶ୍ଚର୍ । ମୃତ୍ୟୁର ଅଳ୍ପଦିନ ପୂର୍ବରୁ ଯତ୍ନରେ ସାଇତି ରଖିଥିବା ସେହି ଫଟୋଟିକୁ ପାଶ୍ଚର୍ ନିଜର ଅଲିଅଳି ନାତୁଣୀଙ୍କୁ ଉପହାର ଦେଇଥିଲେ ।

ଫ୍ରାନ୍‌ସ୍‌ରେ ଅବସ୍ଥିତ ପାଶ୍ଚର୍ ଇନ୍‌ଷ୍ଟିଚିଉଟ୍‌ରେ ସୁରକ୍ଷିତ ହୋଇ ରହିଛି ସୋଭିଏତ୍‌ବାସୀଙ୍କଦ୍ୱାରା ପ୍ରଦତ୍ତ ହୋଇଥିବା ପାଶ୍ଚର୍‌ସ୍ମୃତି ପଦକ । ପଦକଟିରେ ଖୋଦିତ ହୋଇଛି ଲୁଇପାଶ୍ଚରଙ୍କର ଏହି ଅମରବାଣୀ – ''ମୋର ଦୃଢ଼ ବିଶ୍ୱାସ ଯେ ଅଜ୍ଞତା ବିରୁଦ୍ଧରେ ଜ୍ଞାନ ଓ ଯୁଦ୍ଧ ବିରୁଦ୍ଧରେ ଶାନ୍ତିର ବିଜୟ ଅବଶ୍ୟମ୍ଭାବୀ ।''



# ଗାରିବାଲ୍ଡ଼ିଙ୍କ ଗୋଡ଼ର ଚିକିତ୍ସା

[ଇଟାଲୀର ଅଧିବାସୀମାନେ ଗାରିବାଲଡ଼ିଙ୍କୁ ଇଟାଲୀର ନିର୍ମାତା ଭାବରେ ସମ୍ମାନ ଦେଇଥାନ୍ତି । ଖଣ୍ଡ ଖଣ୍ଡ ହୋଇ ରହିଥିବା ରାଜ୍ୟଗୁଡ଼ିକୁ ଏକତ୍ର କରିବା ଏବଂ ଅଷ୍ଟ୍ରିଆ କବଳରୁ ଇଟାଲୀକୁ ମୁକ୍ତ କରିବାପାଇଁ ସେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ତାଙ୍କୁ ପ୍ରାଣଦଣ୍ଡର ଆଦେଶ ଦିଆଯାଇଥିଲା । ମାତ୍ର ସେ ଆମେରିକାକୁ ପଳାଇଯାଇ ସେଠାରେ ୧୪ ବର୍ଷ ରହିଲେ ଏବଂ ପୁଣି ସ୍ୱଦେଶକୁ ଫେରି ଇଟାଲିର ମୁକ୍ତିସଂଗ୍ରାମ ଚଳାଇଥିଲେ । ଚତୁର୍ଥ ଥର ସେ ସଫଳ ହେଲେ ଏବଂ ଇଟାଲୀ ସ୍ୱାଧୀନ ହେଲା । ଏହି ସଂଗ୍ରାମ ବେଳର ଏକ ଘଟଣା ।]

ଇଟାଲୀର ଏକତ୍ରୀକରଣ ପାଇଁ ଗାରିବାଲ୍ଡ଼ିଙ୍କ ନେତୃତ୍ୱରେ ଆନ୍ଦୋଳନ ଚାଲିଥାଏ । ୧୮୬୨ ମସିହାରେ ମାଉଣ୍ଟ ମୋଣ୍ଟାଲ୍‌ଟୋର ଯୁଦ୍ଧକ୍ଷେତ୍ରରେ ଗାରିବାଲ୍ଡ଼ି ଗୁରୁତର ଭାବରେ ଆହତ ହେଲେ । ତାଙ୍କୁ ବନ୍ଦୀ କରି ନିଆଗଲା । ସାଙ୍ଗେ ସାଙ୍ଗେ ତାଙ୍କର ଚିକିତ୍ସା କରିବା ଦୂରେଥାଉ, ତାଙ୍କୁ ଏକ ଯୁଦ୍ଧ ଜାହାଜରେ ବସାଇ ଲା' ସ୍ପେଜିଆ ନାମକ ଜାଗାକୁ ପଠାଇ ଦିଆଗଲା । ଗାରିବାଲଡି ଯନ୍ତ୍ରଣାରେ ଚିତ୍କାର କରୁଥାନ୍ତି । ତାଙ୍କ ଡାହାଣ ଗୋଡ଼ରେ ଗୋଟିଏ ଗୁଳି ଲାଖି ରହିଯାଇଥାଏ । ଲା' ସ୍ପେଜିଆରେ ତାଙ୍କୁ ବହୁତ ଡାକ୍ତର ଆସି ପରୀକ୍ଷା କଲେ । ଗୁଳି ପଶିଥିବା କଣାଟିକୁ ବହୁତ କେଞ୍ଚାକେଞ୍ଚି କଲେ । କିନ୍ତୁ ଗୁଳିକୁ ବାହାର କରି ପାରିଲେନି । ତେଣୁ ଅଧିକାଂଶ ଡାକ୍ତରଙ୍କର ମତ ଥିଲା ଯେ ଗାରିବାଲ୍ଡ଼ିଙ୍କର ଡାହାଣ ଗୋଡକୁ କାଟି ନ ପକାଇଲେ ତାଙ୍କୁ ବଞ୍ଚେଇ ହେବନାହିଁ ।

ସେହି ସମୟରେ ରୁଷିଆରେ ଥାଆନ୍ତି ନିକୋଲାଇ ପିରୋଗୋଭ୍ ନାମକ ଜଣେ ଡାକ୍ତର । ସଫଳ ଅପରେସନ୍ କରିବାରେ ତାଙ୍କର ଭଲ ନାଆଁ ଥିଲା । ଅର୍ଥ ଉପାର୍ଜନ କରିବା ଅପେକ୍ଷା ରୋଗୀ ସେବା କରିବାରେ ତାଙ୍କର ଆନନ୍ଦ ଥିଲା ବେଶୀ । ସ୍ୱାର୍ଥ ତାଙ୍କର ପାଖ ପଶୁ ନ ଥିଲା । ସତ କଥା କହିଲେ ସେ ଥିଲେ ଜଣେ ସଚ୍ଚା ସମାଜସେବୀ । ଗାରିବାଲଡ଼ିଙ୍କର ଆନ୍ଦୋଳନକୁ ସେ ପୁରା ସମର୍ଥନ କରୁଥିଲେ ।

ଗାରିବାଲଡ଼ି ଯୁଦ୍ଧକ୍ଷେତ୍ରରେ ସଂଘାତିକ ଭାବରେ ଆହତ ହୋଇଥିବା ଓ ତାଙ୍କର ଜୀବନ ସଂକଟାପନ୍ନ ହୋଇପଡ଼ିଥିବା ଖବର ପାଇଲେ ପିରୋଗୋଭ୍ । ପିରୋଗୋଭଲା' ସ୍ପେଜିଆ ଯିବାପାଇଁ ମନସ୍ଥ କଲେ । ଯିବା ଆସିବା ଖର୍ଚ୍ଚ ତୁଲେଇବାପାଇଁ ତାଙ୍କ ପାଖରେ ପଇସା ନ ଥାଏ । ପଇସା ଯୋଗାଡ଼ କରୁ କରୁ ଟିକିଏ ଡେରି ହୋଇଗଲା । ପିରୋଗୋଭ୍

ଲା' ଷ୍ଟେଜିଆରେ ପହଞ୍ଚିଲା ବେଳକୁ ସତରଜଣ ବିଶେଷଜ୍ଞ ଡାକ୍ତର ଗାରିବାଲ୍‌ଡିଙ୍କ ଚିକିତ୍ସା ଖବର ବୁଝୁଥାନ୍ତି ଓ ତାଙ୍କର ଗୋଡ଼ଟିକୁ କାଟିଦେବା ପାଇଁ ସ୍ଥିର ହୋଇ ସାରିଥାଏ ।

ପିରୋଗୋଭ୍ ଗାରିବାଲ୍‌ଡିଙ୍କର ଗୁଳିବିଦ୍ଧ କ୍ଷତ ସ୍ଥାନଟିକୁ ପରୀକ୍ଷାକଲେ । ଖଣ୍ଡିଆ ଜାଗା ପୂରାପୂରି ପଚିଯାଇଥାଏ । ଦୁଇମାସ ଧରି ଗାରିବାଲ୍‌ଡ଼ି ଅସହ୍ୟ କଷ୍ଟ ପାଉଥାଆନ୍ତି । ଗାରିବାଲ୍‌ଡ଼ିଙ୍କୁ ପରୀକ୍ଷା କରିସାରି ପିରୋଗୋଭ୍ କହିଥିଲେ, ''ଗାରିବାଲ୍‌ଡ଼ିଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଛି ବୋଲି ମୁଁ ଭାବୁନାହିଁ । ତାଙ୍କର ଶାରୀରିକ ସ୍ୱାସ୍ଥ୍ୟର ଅବନତି ହୋଇଛି ସିନା, କିନ୍ତୁ ତାଙ୍କର ମାନସିକ ସ୍ୱାସ୍ଥ୍ୟ ଖୁବ୍ ସନ୍ତୋଷଜନକ । ତାଙ୍କଠାରେ ଯଥେଷ୍ଟ ଆତ୍ମବିଶ୍ୱାସ ରହିଛି । ତାଙ୍କ ଆଖିରୁ ଆଶାର ଆଲୋକ ବାହାରୁଛି । ତାଙ୍କ ହାତକୁ ଛୁଇଁଲେ ଏକ ମଉଜିଆ ଉଷୁମ ଅନୁଭବ କରି ହେଉଛି । ତେଣୁ ତାଙ୍କର ଗୋଡ଼ କି ତାଙ୍କର ଜୀବନ ପ୍ରତି ଆଦୌ ଆଶଙ୍କା ନାହିଁ ।'' ପିରୋଗୋଭ୍ ଅପରେସନ୍ ନ କରିବା ସପକ୍ଷରେ ମତଦେଲେ ।

ପିରୋଗୋଭ୍‌ଙ୍କର ମତ ହେଲା ''ଜୀବନ ପ୍ରତି ହଠାତ୍ କୌଣସି ସଙ୍କଟ ସୃଷ୍ଟି କରୁ ନ ଥିଲେ ଦେହରେ ରହିଯାଇଥିବା ଗୁଳିକୁ ବାହାର କରିଦେବା ନିମନ୍ତେ ବିଶେଷ ତତ୍ପର ହୋଇ ଉଠିବାର ଯୁକ୍ତିଯୁକ୍ତ କାରଣ ନାହିଁ । ବରଂ ଏଥିରେ ଲାଭ ଅପେକ୍ଷା କ୍ଷତି ବେଶି । ତେଣୁ ଧୈର୍ଯ୍ୟ ଧରି ଅପେକ୍ଷା କରିବା ଓ କ୍ଷତସ୍ଥାନକୁ ବାରମ୍ବାର କେଞ୍ଚା କେଞ୍ଚି ନ କରିବାରେ ରୋଗୀର ଅଧିକ ଉପକାର ହୋଇଥାଏ । ଅଧିକାଂଶ କ୍ଷେତ୍ରରେ ଗୁଳି ମନକୁ ମନ ବାହାରି ଆସିବାର ପ୍ରକ୍ରିୟା ଆରମ୍ଭ ହୋଇଯାଏ ଓ ସେତେବେଳେ ଉଚିତ ପଦକ୍ଷେପ ନେଇ ଗୁଳିକୁ ବାହାର କରିଦେବା ସୁବିଧା ହୁଏ ।''

ତାଙ୍କରି ଉପଦେଶ ଅନୁସାରେ ଗାରିବାଲ୍‌ଡିଙ୍କୁ ଏକ ଖୋଲା ଓ ପ୍ରଶସ୍ତ ଜାଗାକୁ ନିଆଗଲା । ପିରୋଗୋଭ୍ ଗାରିବାଲଡିଙ୍କ ପାଖରେ ସପ୍ତାହେ କାଳ ରହିଲେ । ପିରୋଗୋଭ୍ ଯେପରି ଭାବିଥିଲେ ସେଇଆ ହେଲା । ପ୍ରାୟ ପନ୍ଦର ଦିନ ପରେ ଗୁଳିଟି ମନକୁ ମନ ଲାଖିଥିବା ସ୍ଥାନରୁ କ୍ଷତର ମୁହଁ ଆଡ଼କୁ ଆସିଗଲା ଓ ତାକୁ ସହଜରେ ବାହାର କରି ନିଆଗଲା । ଗାରିବାଲ୍‌ଡିଙ୍କର ଗୋଡଟାକୁ କାଟିବା ଦରକାର ପଡ଼ିଲାନାହିଁ ।

ଗାରିବାଲ୍‌ଡି ସଂପୂର୍ଣ୍ଣ ସୁସ୍ଥ ହୋଇଗଲାପରେ ଡାକ୍ତର ପିରୋଗୋଭ୍‌ଙ୍କ ପାଖକୁ ଲେଖିଥିଲେ -

ପ୍ରିୟ ଡାକ୍ତର ପିରୋଗୋଭ୍,

ମୋ ଗୋଡ଼ର ଘା' ଶୁଖିଗଲାଣି । ତୁମର ସଫଳ ଚିକିତ୍ସା ବ୍ୟବସ୍ଥା ଓ ମୋର ଶୁଭ ମନାସିବାରେ ତୁମର ଆନ୍ତରିକତା ପାଇଁ ମୁଁ ସର୍ବଦା ଋଣୀ ରହିବି ।

ଧନ୍ୟବାଦ ସହ, ଗାରିବାଲ୍‌ଡ଼ି



ମୂଲ୍ୟବୋଧ, ନିଷ୍ଠା, ଅଧ୍ୟବସାୟ, ଏକାଗ୍ରତା, ଐକାନ୍ତିକତା ଇତ୍ୟାଦି ବିଭାବକୁ ବିଜ୍ଞାନ ଚର୍ଯ୍ୟାରେ ବିନିଯୋଗ କରିଥାଏ ବିଜ୍ଞାନୀ ; ଏହି ପୁଞ୍ଜି ବିନିଯୋଗର ପରିଣତି ଅନିଶ୍ଚିତ ଜାଣି ସୁଦ୍ଧା ସେ ନିଜର ନିରବଚ୍ଛିନ୍ନ ଉଦ୍ୟମରେ ଅବିଚଳିତ ରହିଥାଏ । ଆମଭଳି ସାଧାରଣ ଲୋକଙ୍କଠାରେ ଏ' ଧରଣର ପ୍ରବୃତ୍ତି ପରିଲକ୍ଷିତ ହେବା ବିରଳ । ତେଣୁ ବୈଜ୍ଞାନିକମାନଙ୍କ ବିଷୟରେ ଉଲ୍ଲେଖ କଲାବେଳେ ସେମାନଙ୍କର ବିଜ୍ଞାନ-କୃତି ଅଗ୍ରାଧିକାରପାଇଁ ଅବହେଳିତ୍ ହୋଇ ରହିଯାଏ ସେମାନଙ୍କର ମାନବୀୟ ସ୍ୱଭାବ ।

'ବିଜ୍ଞାନୀର ବିଶ୍ୱ' ବୈଜ୍ଞାନିକମାନଙ୍କର ଏକ ଜୀବନୀ ପୁସ୍ତକ ନୁହେଁ । ସେମାନେ ଆମରିଭଳି ଦେହଧାରୀ ହୋଇଥିବାରୁ ସେମାନଙ୍କର ମଧ୍ୟ ପ୍ରକାଶ ପାଇଥାଏ କୌତୁହଳୋଦ୍ଦୀପକ ବହୁ ଚାରିତ୍ରିକ ଲକ୍ଷଣ । କତିପୟ ବୈଜ୍ଞାନିକଙ୍କର ସେହି ମାନୁଷିକ ଚରିତ୍ର ସଂପର୍କିତ ଘଟଣାମାନ ଅବତାରଣା କରାଯାଇଛି ଏହି ପୁସ୍ତକଟିରେ । ସାଧାରଣ ଦୃଷ୍ଟିରେ 'ସଂସାର ବିରାଗୀ'ର ପରିଚିତି ବହନ କରି ଚାଲିଥିଲେ ମଧ୍ୟ ସେମାନଙ୍କଠାରେ ପ୍ରକାଶ ପାଇଥିବା ସଂସାରୀ ଲକ୍ଷଣର କିଞ୍ଚିତ୍ ଆଭାସ ଏହି ପୁସ୍ତକରେ ସ୍ଥାନ ପାଇଛି । ଏହି ପୁସ୍ତକଟିରୁ ବୈଜ୍ଞାନିକମାନଙ୍କ ବିଷୟରେ ବହୁ କୌତୁକପୂର୍ଣ୍ଣ ଘଟଣାର ସୂଚନା ମିଳିପାରିବ ।

ISBN81-86354-78-6